ଶୂଦ୍ରମୁନି ସାରଳାଦାସଙ୍କ ରଚିତ ମହାଭାରତର ଶୁଦ୍ଧ ଗଦ୍ୟାନୁବାଦ ।

# ସାରଳା ମହାଭାରତ

ପ୍ରଥମ ଭାଗ

ଲେଖକ
ଶ୍ରୀ ହରେକୃଷ୍ଣ ମହାନ୍ତି



ଓଡ଼ିଶା ବୁକ୍ ଷ୍ଟୋର
ବିନୋଦବିହାରୀ, କଟକ—୭୫୩୦୦୨

# ସାରଳା ମହାଭାରତ

ଲେଖକ—ଶ୍ରୀ ହରେକୃଷ୍ଣ ମହାନ୍ତି

ପ୍ରକାଶକ—

ଶ୍ରୀ ଗୋବିନ୍ଦ ଚରଣ ପାତ୍ର
ଓଡ଼ିଶା ବୁକ୍‌ଷ୍ଟୋର, କଟକ ୭୫୩୦୦୨

ପ୍ରଥମ ସଂସ୍କରଣ—୧୯୭୮

ମୁଦ୍ରଣ:—
ସପ୍ତର୍ଷି ପ୍ରିଣ୍ଟର୍ସ, ମଧୁପାଟଣା, କଟକ-୭୫୩୦୧୦

ମୂଲ୍ୟ :—

ସାଧାରଣ ଟ ୧୨-୫୦
ବନ୍ଧାଇ ସହ ଟ ୧୫-୦୦

= ଉତ୍ସର୍ଗ =

ପିତା ଧର୍ମଃ ପିତା ସ୍ୱର୍ଗଃ ପିତାହି ପରମଂ ତପଃ,
ପିତରି ପ୍ରୀତିମାପନ୍ନେ ପ୍ରୀୟନ୍ତେ ସର୍ବ ଦେବତାଃ ।

ମୋର ପରମାରାଧ୍ୟ ପିତୃଦେବ ଶ୍ରୀଯୁକ୍ତ ବରବର ମହାନ୍ତଙ୍କର କରକମଳରେ ଏହି ଗ୍ରନ୍ଥ ଉତ୍ସର୍ଗ କଲି । ଇତି ।

ଭକ୍ତି
ହରେକୃଷ୍ଣ ।

# ମୁଖବନ୍ଧ

ସାରଳା ମହାଭାରତ ଯେ ମୂଳ ମହାଭାରତର ଆକ୍ଷରିକ ଅନୁବାଦ ନୁହେଁ, ଏହା ଜଣା ଶୁଣା କଥା । ଏଥିରେ ଯେଉଁ ଅତୁଳନୀୟ ଗଳ୍ପବିଭବ ପରିପୂର୍ଣ୍ଣ ହୋଇ ରହିଛି, ତାହା ଯେତିକି ଚିତ୍ତାକର୍ଷକ ତତୋଽଧିକ ଶିକ୍ଷାପ୍ରଦ । ମୁଖ୍ୟତଃ ଏହି ଗଳ୍ପ ବିଭବହିଁ ସାରଳା ମହାଭାରତର ବିଶେଷତ୍ୱ ।

ଏହି ଗଳ୍ପ ସମ୍ଭାର ମଧ୍ୟରେ ପୂରିରହିଛି ମାନବ ସମାଜ, ମାନବ ପ୍ରକୃତିର ଏକ ସୁନ୍ଦର, ପରିପୂର୍ଣ୍ଣ ଚିତ୍ର । ଏ ଗୁଡ଼ିକ ସରଳ ଗଦ୍ୟ ଆକାରରେ ସୀମିତ ପରିସର ମଧ୍ୟରେ ପ୍ରକାଶିତ ହେଲେ ସାଧାରଣ ମହଲରେ ଆଦର ଲାଭ କରିବ, ଏହି ଧାରଣାର ବଶବର୍ତ୍ତୀ ହୋଇ ଏପରି ଏକ ପ୍ରଚେଷ୍ଟା କରାଯାଇଛି ।

ସବୁ ଶ୍ରେଣୀର ପାଠକଙ୍କର ସଂପୂର୍ଣ୍ଣ ବୋଧଗମ୍ୟ ହେବା ନିମିତ୍ତ ଭାଷାକୁ ଯଥା ସମ୍ଭବ ସରଳ ଓ ସୁଖପାଠ୍ୟ କରାଯାଇଛି । ମନେରଖିବା ଭଳି କେତେକ ସୂକ୍ତି ଯଥା ସ୍ଥାନରେ ଉଦ୍ଧାର କରାଯାଇଛି ।

ଏହି ପ୍ରଥମ ଭାଗରେ ଆଦ୍ୟରୁ ସଭା ପର୍ବ ସଂପୂର୍ଣ୍ଣ ହୋଇ ଅଛି । ଅନ୍ୟାନ୍ୟ ପର୍ବ ବିଷୟ ପରବର୍ତ୍ତୀ ଭାଗରେ ପ୍ରକାଶ କରିବାର ପରିକଳ୍ପନା ରହିଛି । ଏଥିରେ ମୋର କିଛି କୃତିତ୍ୱ ନାହିଁ । ସବୁ କୃତିତ୍ୱ ସେହି ଯୋଗଜନ୍ମା ମହାପୁରୁଷଙ୍କର । ତାଙ୍କର ଶ୍ରୀଚରଣରେ ପ୍ରଣତି ଜଣାଉଛି ।

ବିନୀତ

**ଲେଖକ ।**

# ସୂଚିପତ୍ର



# ସାରଳା ଯୁଗର ପୂର୍ବାବସ୍ଥା

ପୃଥିବୀର ପ୍ରତ୍ୟେକ ସାହିତ୍ୟ ପ୍ରଥମାବସ୍ଥାରେ ପଦ୍ୟମୟ ଥିଲା । ଓଡ଼ିଆ ସାହିତ୍ୟରେ ଯେ ଏହାର ବ୍ୟତିକ୍ରମ ହୋଇନାହିଁ ତାହାର ପ୍ରମାଣ ଅସଂଖ୍ୟ ଗାନ, ଦୋହା, ଲୋକଗୀତ, ଢଗଢ଼ମାଳୀ, ପ୍ରବଚନ, ସ୍ତବ, ସ୍ତୁତି, ଭଜନ ଏବଂ ଚଉତିଶା ଆଦି ଛନ୍ଦୋବଦ୍ଧ ରଚନା ମାଧ୍ୟମରେ ଆମ୍ଭେମାନେ ପାଇଥାଉଁ । ଗଦ୍ୟ ଅପେକ୍ଷା ପଦ୍ୟରେ ହୃଦୟର ଆବେଗ ଓ ଅନୁଭୂତି ସହଜରେ ପ୍ରକାଶିତ ହୁଏ ଏବଂ ରସବୋଧ ସୁଗମ ହୁଏ । ତେଣୁ ବ୍ୟାଧ ଶରାହତ କ୍ରୌଞ୍ଚ ପକ୍ଷୀର ଦୁର୍ଦ୍ଦଶା ଅବଲୋକନ କରି ବାଲ୍ମୀକି ମୁନିଙ୍କର ହୃଦୟର ଗଭୀର ଆବେଗ ଓ ଅନୁଭୂତି ସ୍ୱତଃସ୍ଫୂର୍ତ୍ତିଭାବେ ରୂପାୟିତ ହୋଇଥିଲା ପ୍ରଥମେ ଛନ୍ଦୋବଦ୍ଧ ରଚନା ଆକାରରେ:

ମା ନିଷାଦ ପ୍ରତିଷ୍ଠାଂ ତ୍ୱମଗମଃ ଶାଶ୍ୱତୀ ସମାଃ
ଯତ୍କ୍ରୌଞ୍ଚମିଥୁନାଦେକମବଧୀ କାମମୋହିତଂ ।

ଓଡ଼ିଆ ଭାଷାରେ ପ୍ରାଚୀନ ଲୋକଗୀତ, ଢ଼ଗଢମାଳୀ, ପ୍ରବଚନ ପ୍ରଭୃତି ପ୍ରଥମେ କିଏ ରଚନା କରିଥିଲେ ଏହା ଜାଣିବାପାଇଁ ବିଶେଷ କିଛି ପ୍ରମାଣ ନାହିଁ । ତେବେ ଏଗୁଡ଼ିକ ବେଶ୍ କବିତ୍ୱପୂର୍ଣ୍ଣ, ଉପଭୋଗ୍ୟ ଓ ଶିକ୍ଷାପ୍ରଦ ହେବା ସଙ୍ଗେ ସଙ୍ଗେ ସମାଜର ସତ୍ୟ ଓ ବାସ୍ତବ ଚିତ୍ର ପ୍ରଦାନ କରିଥାନ୍ତି । ତହିଁରୁ ଅଳ୍ପ କେତୋଟି ଉଦାହରଣ ନିମ୍ନରେ ପ୍ରଦତ୍ତ ହେଲା ।

୧– ମାଇପି କଥା, ପିଲା ବାରତା, ଏହା ନଶୁଣିବ କାନେ
ଭୁଗୁଣ୍ଠାକୁ ଯେବେ କାନ ଦେଉଥିବ ମନରଖିଥିବ ଆନେ ।

୨- ଆଦର ନଥାଇ ଭୋଜନ, ଲୁଣ ନଥାଇ ତିଅଣ, ମାଲପା ନଥାଇ ସ୍ନାହାନ, ସବୁ ଅକାରଣ ।

୩- ମାଉଁଆ, ପାଉଁଆ, (ଡ଼ରକୁଳା) ବହୁଆ, ଖଉଁଆ ଘୁଙ୍ଗୁଡ଼ିଆ—
ଏ ପାଞ୍ଚଜଣ ସାଥିକୁ ଅଡୁଆ ।

୪- ପରର ପୁଅକୁ ପୁଅକରି ଆଣି ତାକୁ ନବୋଲିବ ବାଳକ,
ଟୁପୁ ଟୁପୁ ହୋଇ ମେଘ ବରଷିଲେ ତାକୁ ନବୋଲିବ ପାଳକ ।

୫- ଆଉ ନୟନ, ବଙ୍କାଭୁରୁ, ତାକୁ ଜାଣିବ ଠକଙ୍କ ଗୁରୁ ।

ଏହା ଛଡ଼ା ସଂସ୍କୃତ ସାହିତ୍ୟରେ ଅନେକ ନୀତିଶିକ୍ଷାମୂଳକ ଗଳ୍ପ ସହିତ ଲୋକମୁଖରେ ମଧ୍ୟ ଦେବଦେବୀ, ମନୁଷ୍ୟ, ପଶୁ ପକ୍ଷୀଙ୍କୁ କେନ୍ଦ୍ରକରି ଅନେକ ସୁନ୍ଦର ଗଳ୍ପ ପ୍ରଚଳିତ ଥିଲା । ଆଦିକବି ସାରଳାଦାସଙ୍କ ରଚନାରେ ଏହି ସବୁ ଗଳ୍ପ, କାହାଣୀ ମାନଙ୍କର ଅନେକ ପ୍ରଭାବ ପଡ଼ିଅଛି ।

## ଚର୍ଯ୍ୟା ଗୀତିକା

ମହାମହୋପାଧ୍ୟାୟ ପଣ୍ଡିତ ହରପ୍ରସାଦ ଶାସ୍ତ୍ରୀ ୧୯୧୭ ମସିହାରେ ନେପାଳ ଦରବାର ପୁସ୍ତକାଗାରରୁ ପଚିଶ ଗୋଟି ଚର୍ଯ୍ୟା ଗୀତିକା-ସମ୍ବଳିତ ଗୋଟିଏ ପୋଥିପାଇ ୧୯୨୭ ମସିହାରେ "ବୌଦ୍ଧଗାନ ଓ ଦୋହା" ନାମରେ ଗ୍ରନ୍ଥାକାରରେ ପ୍ରକାଶକଲେ ଓ ତାହା ହଜାରେ ବର୍ଷ ତଳର ବଙ୍ଗଭାଷାର ରୂପବୋଲି ଦାବି କଲେ । ମାତ୍ର ଏ ଗୁଡ଼ିକରେ ପୂର୍ବ-ଭାରତୀୟ ଭାଷାଗୋଷ୍ଠୀର ବହୁତ ଶବ୍ଦ ଓ ବ୍ୟାକରଣଗତ ଶୈଳୀ ଦେଖା ଯାଉଥିବାରୁ ଏହି ଗୋଷ୍ଠୀର ପ୍ରତ୍ୟେକ ଭାଷାଭାଷୀ ଏହା ନିଜ ନିଜ ଭାଷାର ପ୍ରାଚୀନ ରୂପବୋଲି ଦାବି କରୁଛନ୍ତି । ମୁଖ୍ୟତଃ ଓଡ଼ିଆଭାଷା ସହିତ ଏହାର ସର୍ବାଧିକ ମେଳ ଥିବା ହେତୁ ଡଃ. କରୁଣାକର ପ୍ରମୁଖ ପଣ୍ଡିତମାନେ ଏହାକୁ ଓଡ଼ିଆ ଭାଷାର ମୂଳ ରଚନା ବୋଲି ପ୍ରତିପାଦନ କରିଛନ୍ତି ।

ଏହି ଗାନ ଗୁଡ଼ିକ ୭ମ ଶତାବ୍ଦୀଠାରୁ ୧୩ଶ ଶତାବ୍ଦୀ ମଧ୍ୟରେ ରଚିତ ହୋଇଥିବାର ଅନୁମାନ କରାଯାଏ । ଚର୍ଯ୍ୟାର ଅର୍ଥ ଆଚରଣବିଧି । ଧର୍ମ ସମ୍ବନ୍ଧୀୟ ବିଧି ବିଧାନ ଓ ନିର୍ଦ୍ଦେଶାବଳୀ ଏଥିର ପ୍ରତିପାଦ୍ୟ ବିଷୟ

ବସ୍ତୁ । ପୂର୍ବ ଭାରତର ବିଭିନ୍ନସ୍ଥାନରେ ବାସ କରୁଥିବା ୮୪ ଜଣ ସିଦ୍ଧା-ଚାର୍ଯ୍ୟ ଏହି ଗୀତିକା ଗୁଡ଼ିକର ଲେଖକ । ଏମାନେ ବଜ୍ରଯାନୀ ତାନ୍ତ୍ରିକବୌଦ୍ଧ ଓ ସହଜିଆ ସାଧକ ରୂପେ ପରିଚିତ । ଏହି ସହଜଯାନୀଙ୍କ ମତର ସାରାଂଶ ହେଲା : ପ୍ରତ୍ୟେକ ବ୍ୟକ୍ତି ଓ ବସ୍ତୁର ସମସ୍ତ ପରିବର୍ତ୍ତନ ମଧ୍ୟରେ ଏକ ଶାଶ୍ୱତ ସହଜ ସ୍ୱରୂପ ବିଦ୍ୟମାନ । ମନୁଷ୍ୟ ତାର ସ୍ୱାଭାବିକ ବୃତ୍ତିରାଜିକୁ ଧ୍ୱଂସ ବା ଦମନ ନକରି କାୟାସାଧନା ମାଧ୍ୟମରେ ସେ ସବୁ ବୃତ୍ତିର ରୂପାନ୍ତର ଦ୍ୱାରା ସହଜ ସ୍ୱରୂପକୁ ଉପଲବ୍ଧି କରି 'ସହଜାନନ୍ଦ' ବା 'ମହାସୁଖ' ଲାଭ କରି-ପାରେ । ଏହା ହିନ୍ଦୁ ମାନଙ୍କ ମୋକ୍ଷ ଓ 'ବୌଦ୍ଧ ନିର୍ବାଣ' ଅପେକ୍ଷା ଆହୁରି ଉତ୍କୃଷ୍ଟ ।

ସହଜିଆ ସିଦ୍ଧମାନେ ହଠଯୋଗ ଓ କାୟାସାଧନା ଦ୍ୱାରା ନାଡ଼ି ତନ୍ତ୍ରର ନିୟନ୍ତ୍ରଣ କରନ୍ତି । ହିନ୍ଦୁ ଦର୍ଶନର ଇଡ଼ା, ପିଙ୍ଗଳା, ସୁଷୁମ୍ନା, ବୌଦ୍ଧତନ୍ତ୍ରରେ ଲଳନା, ରସନା ଓ ଅବଧୂତି ଅଟେ । ସାଧନାଦ୍ୱାରା ଲଳନା ଓ ରସନା (ନାଡ଼ି)କୁ ଏକତ୍ରିତ କରି ଅବଧୂତି ମାର୍ଗରେ ଶରୀରର ନିମ୍ନଗାମୀ ପ୍ରାଣପ୍ରବାହକୁ ଊର୍ଦ୍ଧ୍ୱକୁ ଉତ୍ତୋଳନ କରିପାରିଲେ 'ସହଜାନନ୍ଦ' ଲାଭହୁଏ । ଏହି ସହଜତତ୍ତ୍ୱ ହେଉଛି : ସହଜ, ସରଳ ଅବିକୃତ ଆତ୍ମତତ୍ତ୍ୱ । ଯେଉଁ ସାଧକ ଧର୍ମ ସାଧନାର ସମସ୍ତ ପାରମ୍ପରିକ କଠୋର, ଜଟିଳ ବିଧି ବ୍ୟବସ୍ଥାକୁ ଅସ୍ୱୀକାର କରି ସ୍ୱାଭାବିକ ସହଜ ପଦ୍ଧତିରେ ତତ୍ତ୍ୱ ଉପଲବ୍ଧି ପାଇଁ ପ୍ରୟାସ କରନ୍ତି ସେମାନେ ସହଜ ସାଧକ ଓ ତାଙ୍କ ପଦ୍ଧତିର ନାମ "ସହଜଯାନ" । ଏହା ବୌଦ୍ଧ ଓ ତନ୍ତ୍ର ସମନ୍ୱିତ ବଜ୍ରଯାନରୁ ଉଦ୍ଭୂତ ଓ ବିକଶିତ ।

ଏହି ସାଧନାରେ ଯୌନଚର୍ଯ୍ୟା ବା ନାରୀଚର୍ଯ୍ୟା ପରିଦୃଷ୍ଟ ହୁଏ ମହାସୁଖ ବା ସହଜାନନ୍ଦକୁ ଏମାନେ ନାରୀ ସହିତ ରୂପକ କରିଥାନ୍ତି । ତାହା 'ଡୋମ୍ବୀ' ଓ 'ଶବରୀ' ଭାବେ ରୂପାୟିତ ।

ଉଦାହରଣ : [୧] ନଗର ବାହିରେ ଡୋମ୍ବୀ ତୋହରି କୁଡିଆ,
ଛୋଇ ଛୋଇ ଜାଇ ସୋ ବ୍ରାହ୍ମଣ ନାଡ଼ିଆ । [କାହ୍ନୁପା]

[୨] କାଆ ତରୁବର ପଞ୍ଚବିଡାଳ
ଚଞ୍ଚଳ ଚିଅ ପଇଠା କାଳ

ଢିଢ଼ କରିଅ ମହାସୁଖ ପରିମାଣ
ଲୁଇ ଭଣଇ ଗୁରୁ ପୁଚ୍ଛିଅ ଜାଣ । [ଲୁଇପା]

[୩] ଉଁଚ୍ଚ ଉଁଚ୍ଚ ପାବତ ତହିଁ ବସଇ ଶବରୀ ବାଳୀ
ମୋରଙ୍ଗୀ ପିଛ ପରହି ଶବରୀ ଗୀବତ ଗୁଞ୍ଜରୀ ମାଳୀ
[ସରହପା]

କାହ୍ନୁପା, ଲୁଇପା, ସରହପା, ତାଡ଼କପା ପ୍ରଭୃତି ସିଦ୍ଧାଚାର୍ଯ୍ୟମାନେ ଓଡ଼ିଶାର ଅଧିବାସୀ ବୋଲି ପ୍ରତିପାଦିତ ହୋଇଅଛି । ବିଶେଷତଃ ୭ମ ଶତାବ୍ଦୀର ଅନ୍ୟତମ ସିଦ୍ଧାଚାର୍ଯ୍ୟ ଓ ବଜ୍ରଯାନୀ ରାଜା ଇନ୍ଦ୍ରଭୂତି 'ସମ୍ଭଲକ' ବା ସମ୍ବଲପୁରର ରାଜାଥିଲେ । ସେ ତାଙ୍କର 'ଜ୍ଞାନ ସିଦ୍ଧି' ଗ୍ରନ୍ଥରେ ଇଷ୍ଟ-ଦେବତା ପ୍ରଭୁ ଜଗନ୍ନାଥଙ୍କୁ ବନ୍ଦନା କରି ଲେଖିଛନ୍ତି—

"ପ୍ରଣିପତ୍ୟଂ ଜଗନ୍ନାଥଂ ସର୍ବଜ୍ଞାନ ବରାର୍ଚ୍ଚିତଂ
ସର୍ବ ବୁଦ୍ଧମୟଂ ସିଦ୍ଧିଂ ବ୍ୟାପିନଂ ଗଗନୋପମଂ"

ଏଥିରୁ ଜଣାଯାଏ ଯେ ଓଡ଼ିଶା ସେତେବେଳେ ତାନ୍ତ୍ରିକ ବୌଦ୍ଧ ବା ବଜ୍ରଯାନର ପ୍ରଧାନ ପୀଠଥିଲା ଏବଂ 'ଚର୍ଯ୍ୟା ପଦ'ର ଲେଖକ ସିଦ୍ଧା-ଚାର୍ଯ୍ୟମାନେ ଏହି ଇଷ୍ଟବନ୍ଦନୀୟ ଠାକୁରଙ୍କୁ "ସର୍ବ ବୁଦ୍ଧମୟଂ ସିଦ୍ଧି" ରୂପେ ପୂଜା ଆରାଧନା କରୁଥିଲେ । ଆଉ ମଧ୍ୟ ସିଦ୍ଧାଚାର୍ଯ୍ୟ ତାଡ଼କପାଦ ୩୭ଶ ଚର୍ଯ୍ୟାରେ ସହଜାନୁଭୂତି ବିଷୟରେ ଲେଖିଛନ୍ତି "× × × × ସନ୍ଧାରେ ଜାଣି, ବାକ୍ ପଥାତୀତ କାହିଁ ବଖାଣି ।" ଏହାର ଅର୍ଥ ହେଲା ମନୁଷ୍ୟର ସଦା ଆଚ୍ଛାଦିତ ଗୋପନୀୟ ଅଙ୍ଗ ବା ଗୁହ୍ୟାଙ୍ଗ ପର୍ଯ୍ୟନ୍ତ, ସମସ୍ତ ବିଶେଷରେ ଅର୍ଥାତ୍ ଜଳ ମଧ୍ୟରେ ଗମନ କରିବା ସମୟରେ ଦେଖାଯାଇ ପାରେ । ମାତ୍ର ଗୁହ୍ୟାତିଗୁହ୍ୟ 'ସହଜ' ସର୍ବଦା ଅଦୃଶ୍ୟ ଅଜ୍ଞେୟ ଓ ଅନିର୍ବଚନୀୟ । ଏହି ପଦରେ ଲିଖିତ ଥିବା ଦୁଇ ପୁରୁଷାଙ୍ଗ (ଯାହାର ଏପରି ନାମ କରଣ ଓଡ଼ିଆ ଭାଷାଛଡ଼ା ଅନ୍ୟ କୌଣସି ଭାଷାରେ ନାହିଁ)କୁ ଲକ୍ଷ୍ୟ କରି ପଣ୍ଡିତ ନୀଳକଣ୍ଠ ପରିହାସରେ କହିଥିଲେ ଯେ ପଡ଼ୋଶୀମାନେ ଉତ୍କଳୀୟଙ୍କର ସବୁ ନେଇଯାଇ ପାରନ୍ତି, ମାତ୍ର ଏ ଦୁଇଟିକୁ ନେବେ କୁଆଡ଼େ ? ଏହାଛଡ଼ା ଚର୍ଯ୍ୟାଗୀତିକାରେ ବ୍ୟବହୃତ ଦାଣ୍ଡ, ଡଇଲା, ଜହ୍ନା, ଲୋଡ଼ିବା, କାନ୍ଦଇ ପ୍ରଭୃତି ଅସଂଖ୍ୟ ଶବ୍ଦ କେବଳ ଓଡ଼ିଆ ଭାଷାର ନିଜସ୍ୱ । ପୁଣି ଏହି ଗୀତିକା

ଗୁଡ଼ିକରେ ବ୍ୟବହୃତ ଅନେକ ବିଭକ୍ତି, ପ୍ରତ୍ୟୟ, କ୍ରିୟା, ବହୁବଚନ ଚିହ୍ନ ଆଦି କେବଳ ଓଡ଼ିଆ ଭାଷାରେ ଦେଖାଯାଏ । ଓଡ଼ିଶା ମଧ୍ୟ ଡ଼ୋମ୍ବ, ଶବର ଅଧ୍ୟୁଷିତ ଅଞ୍ଚଳ । ତେଣୁ ଅଧିକାଂଶ ସିଦ୍ଧାଚାର୍ଯ୍ୟ ଯେ ଓଡ଼ିଶା ବାସୀ ଓ ଚର୍ଯ୍ୟା ଗୀତିକାର ଭାଷା ଯେ ନିଶ୍ଚିତଭାବେ ଓଡ଼ିଆ ଭାଷାର ଆଦ୍ୟରୂପ ଏହା ନିଃସନ୍ଦେହରେ କୁହାଯାଇ ପାରେ ।

ଚର୍ଯ୍ୟା ଗୀତିକା ଗୁଡ଼ିକ ଆଧ୍ୟାତ୍ମିକ ରଚନା ହେଲେହେଁ ଏହାର ସାହିତ୍ୟିକ ମୂଲ୍ୟ ଖୁବ୍ ବେଶୀ । ଏହାର ପ୍ରଭାବ ପରବର୍ତ୍ତୀ ଓଡ଼ିଆ କବି ଓ ଲେଖକମାନଙ୍କ ଉପରେ ବହୁ ପରିମାଣରେ ପଡ଼ିଥିବାର ଦେଖାଯାଏ । ବିଶେଷତଃ ସାରଳାଦାସଙ୍କ ରଚନାରେ ଏହାର ସ୍ପଷ୍ଟ ପ୍ରଭାବ ପରିଲକ୍ଷିତ ହୋଇଥାଏ । ଏଗୁଡ଼ିକର 'ସନ୍ଧାଭାଷା' ବା 'ସାନ୍ଧ୍ୟଭାଷା' ତଥା ରଚନା ଶୈଳୀ ସବୁଠାରୁ ବଳି ଆକର୍ଷଣୀୟ । ନାନା ଉପମା, ରୂପକ, ଶ୍ଳେଷାତ୍ମକ ଶବ୍ଦ ପ୍ରୟୋଗ ଦ୍ୱାରା ଏ ସମସ୍ତ ରଚନା ଅତ୍ୟନ୍ତ ମନୋଜ୍ଞ, ରସାଳ ଓ ଅଦ୍‌ଭୁତ ରସ ମାଧୁର୍ଯ୍ୟରେ ପରିପୂର୍ଣ୍ଣ । ଏହାର ଅନ୍ତର୍ନିହିତ ଭାବ ଯେତେ ଗୁହ୍ୟ ବା କଷ୍ଟବୋଧ ହେଲେ ମଧ୍ୟ ବାହ୍ୟ ରୂପରଙ୍ଗ ଅତ୍ୟନ୍ତ ସରସ, ସୁଖପାଠ୍ୟ ଓ ଉପଭୋଗ୍ୟ । ତନ୍ତ୍ର ଓ ଯୋଗ ସମ୍ବନ୍ଧୀୟ ରଚନାବଳୀରେ ସାଧାରଣତଃ ଏହିପରି ଭାଷା ବ୍ୟବହୃତ ହୋଇଥାଏ । ହରପ୍ରସାଦ ଶାସ୍ତ୍ରୀଙ୍କ ମତରେ ଏହା 'ଆଲୋକ-ଅନ୍ଧାର'ର ଭାଷା । କିଛି ବୁଝିହୁଏ ତ କିଛି ବୁଝି ହୁଏନା । ତାଙ୍କର ପୁତ୍ର ବିନୟ ଭଟ୍ଟାଚାର୍ଯ୍ୟଙ୍କ ମତରେ ଏହା ହେଉଛି; Twilight language, contents of which may be explained either by the light of the day or darkness of the night.

ଅନ୍ୟମତରେ ବିହାରର ଭାଗଲପୁର ଓ ବଙ୍ଗଳାର କିଛି ମଧ୍ୟବର୍ତ୍ତୀ ଅଂଶକୁ ସନ୍ଧ୍ୟାଦେଶ କୁହାଯାଉଥିଲା । ଏହା ସେହି ଅଞ୍ଚଳର ଭାଷା । କେତେକ ଏହାକୁ ଗୂଢ଼ ବା ସନ୍ଧାଭାଷା ବୋଲି କହନ୍ତି । ବୁଦ୍ଧଦେବଙ୍କର ଉପଦେଶ ମଧ୍ୟ ଏହି ଭାଷାରେ ଋଜୁ ଓ ଦ୍ୱିବିଧ ଅର୍ଥବୋଧକ ବୋଲି କୁହାଯାଇଥାଏ । ଏହି ଭାଷାର ପ୍ରୟୋଗ ବହୁ ପ୍ରାଚୀନ ଓ ଋକ୍‌ବେଦରେ ମଧ୍ୟ ଏହା ପରିଦୃଷ୍ଟ ହୁଏ । ସିଦ୍ଧାଚାର୍ଯ୍ୟମାନେ ସେମାନଙ୍କର ସମସ୍ତ ରଚନାକୁ ଏହି ଭାଷାରେ ଦ୍ୱିବିଧ ଅର୍ଥରେ ଲେଖିଛନ୍ତି । ଶ୍ରଦ୍ଧାହୀନ ଜନ-

ସାଧାରଣ, ବିଶେଷକରି ଅଦୀକ୍ଷିତ ବ୍ୟକ୍ତିଠାରୁ ଧର୍ମତତ୍ତ୍ୱର ଗୋପନୀୟତା ରକ୍ଷା କରିବା ଉଦ୍ଦେଶ୍ୟରେ ହୁଏତ ସନ୍ଧ୍ୟାଭାଷା ପ୍ରୟୋଗ କରାଯାଇଛି । ତେଣୁ ପ୍ରତ୍ୟେକ ଗୀତିକାର ଗୋଟିଏ ବାହ୍ୟାର୍ଥ ଓ ଅନ୍ୟଟି ଗୁହ୍ୟାର୍ଥ । ଦିନ ଓ ରାତିର ସନ୍ଧିସ୍ଥଳପରି ଏଥିରୁ କିଛି କିଛି ଦୃଶ୍ୟ ଓ କିଛି କିଛି ଅଦୃଶ୍ୟ । କେବଳ ମାତ୍ର ଗୁରୁଙ୍କ ସାହାଯ୍ୟରେ ସାଧନାର ଗୂଢ଼ତତ୍ତ୍ୱ ବୁଝିବା ସମ୍ଭବ । ଯୀଶୁଖ୍ରୀଷ୍ଟ ମଧ୍ୟ ତାଙ୍କର ଧର୍ମ ସମ୍ପର୍କୀୟ ଉପଦେଶ ଦ୍ୱିବିଧ ଅର୍ଥ ବୋଧକ ଭାଷାରେ ପ୍ରଚାର କରୁଥିଲେ ବୋଲି ଜଣାଯାଏ ।

ଚର୍ଯ୍ୟାଗୀତିକାର ଅର୍ଥ ବାମାଚାର ଓ ଯୋଗାଚାର ଉଭୟ ମାର୍ଗରେ ଗ୍ରହଣୀୟ । ଯଥା:—

ମାରିଆ ଶାଶୁ ନଣନ୍ଦ ଘରେ ଶାଳୀ,
ମା ମାରିଆ କାହ୍ନୁ ଭଇଲ କବାଳୀ ।

ବାହ୍ୟାର୍ଥ : ଘରେ ଶାଶୁ, ନଣନ୍ଦ, ଶାଳୀ ଓ ମା'ଙ୍କୁ ମାରି ବା ପରିତ୍ୟାଗ କରି କାହ୍ନୁ କାପାଳିକ ବା ଯୋଗୀ ହେଲେ ।
ଗୁହ୍ୟାର୍ଥ : ମା' ଅର୍ଥାତ୍ ମାୟାକୁ ଛେଦନ କରି, ଶ୍ୱାସ (ଶାଶୁ) ନିୟନ୍ତ୍ରଣ କରି, ଆନନ୍ଦଦାୟୀ ଇନ୍ଦ୍ରିୟ (ନଣନ୍ଦ)କୁ ନିଃଶେଷ (ଶାଳୀ) ବା ନିୟନ୍ତ୍ରଣ କରି, ଘର ବା ସଂସାର ପରିତ୍ୟାଗ କରି କାହ୍ନୁ ଯୋଗୀ ହେଲେ ।

ପରବର୍ତ୍ତୀକାଳରେ ଏହି ସହଜ ତାନ୍ତ୍ରିକ ବୌଦ୍ଧ ସିଦ୍ଧାଚାର୍ଯ୍ୟ-ମାନଙ୍କ ମଧ୍ୟରେ ଅଧ୍ୟାତ୍ମିକତାର ଚେତନା ବା ଚିନ୍ତାଧାରା କ୍ରମଶଃ କ୍ଷୀଣ ହୋଇ ଯଦୃଚ୍ଛା ଯୌନାଚାର ପ୍ରବଳ ହୋଇ ଉଠିଲା । କେତେକ ସିଦ୍ଧାଚାର୍ଯ୍ୟ ନିଜର ସମ୍ପର୍କୀୟ ନାରୀଙ୍କୁ 'ମୁଦ୍ରା' ରୂପେ ଗ୍ରହଣ କରି କଳଙ୍କମୟ ଜୀବନ ଯାପନ କରିଥିବାର ଜଣାଯାଏ । ସମାଜରେ ଏହାର ତୀବ୍ର ପ୍ରତିକ୍ରିୟା ସୃଷ୍ଟି ହୋଇଥିଲା । ଫଳରେ ଏହି ସବୁ ଯୌନାଚାର ବିରୁଦ୍ଧରେ ଆହ୍ୱାନ ଜଣାଇ ଗୋରେଖନାଥଙ୍କ ପ୍ରଦର୍ଶିତ ନାଥପନ୍ଥାର ଆବିର୍ଭାବ ହେଲା । ଏମାନେ ତାନ୍ତ୍ରିକ ପନ୍ଥାରେ ଶରୀରସାଧନ ଓ ହଠଯୋଗକୁ ଗ୍ରହଣ କରି ଯୌନା-ଚାରକୁ ଘୃଣା ଓ ବର୍ଜନ କଲେ । ଶିବ ଓ ଶକ୍ତି ଏମାନଙ୍କର ଉପାସ୍ୟ ଦେବତା । ସିଦ୍ଧ ଗୋରେଖନାଥ ସ୍ୱୟଂ ଶିବଙ୍କର ଅବତାର ବୋଲି କୁହାଯାଏ ।

ସହଜିଆ ମତବାଦ ଓ ତାର ପ୍ରତିକ୍ରିୟା ସମ୍ଭୂତ ନାଥ ପରମ୍ପରାର ପ୍ରଭାବ ବହୁ ପରିମାଣରେ ସାରଳାଦାସଙ୍କ ଉପରେ ପଡ଼ିଅଛି । ସାରଳା-ଦାସ, ଶ୍ରୀକୃଷ୍ଣଙ୍କୁ ସ୍ୱୟଂ ଜଗନ୍ନାଥ ବୋଲି ସମ୍ବୋଧନ କରି ମଧ୍ୟ ଖଞ୍ଜନଳୀର ପ୍ରସଙ୍ଗ ବର୍ଣ୍ଣନାରେ ତାଙ୍କର ଚରିତ୍ରକୁ ଏକ ସହଜ ତାନ୍ତ୍ରିକ ସିଦ୍ଧ ଅନୁରୂପ ଚିତ୍ରଣ କରିଛନ୍ତି ଏବଂ ରାଧାଙ୍କର ବୟସ୍ୟା ସହଚରୀଙ୍କୁ ସରହ ସୁନ୍ଦରୀ ନାମ ପ୍ରଦାନ କରିଛନ୍ତି । ଦ୍ରୌପଦୀଙ୍କୁ ମଧ୍ୟ ପୂର୍ବ ଜନ୍ମର କେତୁକା ଚଣ୍ଡୀ ରୂପେ ଚିତ୍ରଣ କରିଛନ୍ତି ଯେ କି ଦେବୀ ସରସ୍ୱତୀଙ୍କ ପ୍ରତି ଚଉଦ ବ୍ରହ୍ମାଙ୍କର ପାପ ଦୃଷ୍ଟିପାତର ପ୍ରତିକ୍ରିୟା ସ୍ୱରୂପ ଜାତହୋଇ ତେର ବ୍ରହ୍ମାଙ୍କୁ ନିପାତ କରିଥିଲେ ଏବଂ ଦୁଃଶାସନ ରୂପୀ ଚତୁର୍ଦ୍ଦଶ ବ୍ରହ୍ମାଙ୍କୁ ନିପାତ କରିବାପାଇଁ ଦ୍ରୌପଦୀରୂପେ ଜନ୍ମଲଭ କରିଥିଲେ । ଏହାଛଡ଼ା ସାରଳା ଦାସ ଦ୍ରୌପଦୀ ରୂପିଣୀ କେତୁକା କେବଳ ଯୁଧିଷ୍ଠିରଙ୍କୁ ଛାଡ଼ି ସମସ୍ତଙ୍କୁ ନିପାତ କରିବା ନିମିତ୍ତ ବିଧି ପ୍ରେରିତ ବୋଲି ବର୍ଣ୍ଣନା କରିଛନ୍ତି । ଯୁଧିଷ୍ଠିରଙ୍କୁ ସେ ଗୋରେଖ ନାଥ ଆଖ୍ୟା ଦେଇଛନ୍ତି ।

ଆଉ ମଧ୍ୟ ସାରଳା ମହାଭାରତରେ ସତ୍ୟବତୀ ଓ ପାରେଶ୍ୱର ମୁନି, ଅମ୍ବିକା-ଅମ୍ବାଳିକା, ନୀଳାଶ୍ୟାମଳା, ଶ୍ରୀକୃଷ୍ଣ ଓ ସହଜସୁନ୍ଦରୀ, ଅଗ୍ନିକା-ନ୍ତିକି ଓ ରାଣୀ ରତ୍ନାବତୀ, ମାତୃହାରକ ଦ୍ରୋଣ ଓ ଭୂକାକର୍ଣ୍ଣ ଗନ୍ଧର୍ବ · ଏମାନଙ୍କର ଯୌନ ଆଖ୍ୟାନ ବର୍ଣ୍ଣନାରେ ବଜ୍ରଯାନୀ ସିଦ୍ଧାଚାର୍ଯ୍ୟଙ୍କର ନିର୍ବିଚାର ଓ ସ୍ୱଚ୍ଛନ୍ଦ ଯୌନ ସମ୍ଭୋଗର ଛାୟା ସ୍ପଷ୍ଟଭାବେ ଲକ୍ଷିତ ହୋଇଥାଏ । ସାରଳା ଦାସ ନିଜେ ଯେ ଏହି ସ୍ୱୈରାଚାରକୁ ନାପସନ୍ଦ ଓ ଘୃଣା କରୁଥିଲେ ତାହା ଶୈବ ଗୋରେଖନାଥଙ୍କ ପ୍ରଶଂସା ଓ ବହୁ ସ୍ଥାନରେ ତାଙ୍କର ମହିମା ବର୍ଣ୍ଣନାରୁ ପରୋକ୍ଷ ଭାବେ ସୂଚିତ ହୁଏ । ଶକୁନିର ଗୋରେଖ ନାମଧରି ପଶାଖେଳ, ଅର୍ଜୁନ ଗୋରେଖ ନାମଧରି ଉତ୍ତରକୁମାରର ବିଷ ଝାଡ଼ିବା, ସୁଭଦ୍ରା ଅର୍ଜୁନଙ୍କୁ ବଶୀଭୂତ କରିବା-ପାଇଁ ଗୋରେଖ ନାମ ଭଣିତା ମନ୍ତ୍ର ପ୍ରୟୋଗ କରିବା ଆଦି ଏ ସମ୍ପର୍କରେ ଉଲ୍ଲେଖଯୋଗ୍ୟ । କବି ଏଥିପାଇଁ ସତ୍ୟବତୀଙ୍କ ମୁଖରେ ପରୋକ୍ଷ ସମାଲୋଚନା କରିବାକୁ ମଧ୍ୟ ଛାଡ଼ି ନାହାନ୍ତି । ଯଥା—

'ମଦିରା ଖାଇଲେ ଯେହ୍ନେ ହୁଏ ଅସମ୍ଭାଳ,
ପର ପୁରୁଷ ଦେଖିଲେ ତେହ୍ନେ ଆମ୍ଭେ ଭୋଳ ।

ଯାହାର ହାତ ଧରୁସେ ନୁହଇ ଆମ୍ଭର,
ଅନ୍ତରତେ ଇଚ୍ଛା ପର ପୁରୁଷ ସୁନ୍ଦର ।'

ଏବଂ ସେଥିପାଇଁ ପାଠକ ପ୍ରତି ତାଙ୍କର ପରୋକ୍ଷ ଉପଦେଶ—

"ପରଦାରା ପରଧନ କେଭେ ନହରିବୁ,
ବିବାହିତା ସ୍ତ୍ରୀ ସହ କେବଳ ରହିବୁ ।"

ସାରଳା ସାହିତ୍ୟର ଦାଣ୍ଡୀ ବୃତ୍ତ ମଧ୍ୟ ସିଦ୍ଧାଚାର୍ଯ୍ୟମାନଙ୍କର ଚର୍ଯ୍ୟାଗୀତିକାର ଅନୁକରଣ ବୋଲି କୁହାଯାଏ । କେତେକଙ୍କ ମତରେ ଏହା ସଂସ୍କୃତର 'ଦଣ୍ଡକ ବୃତ୍ତ'ର ଅନୁରୂପ । ମାତ୍ର ତାହା ଠିକ୍ ନୁହେଁ । ଦଣ୍ଡକ ବୃତ୍ତ ୨୭ ଅକ୍ଷର ବିଶିଷ୍ଟ । ସାରଳା ଦାସଙ୍କ ରଚନାରେ ଦୁଇ ପାଦର ଅକ୍ଷର ସଂଖ୍ୟା ସର୍ବତ୍ର ସମାନ ନଥିଲେ ମଧ୍ୟ ମୁଖ୍ୟତଃ ତାହା ୧୪ ଅକ୍ଷର ବିଶିଷ୍ଟ । ଏହା ଏକ ମୁକ୍ତଛନ୍ଦ ବୋଲି କୁହାଯାଇପାରେ । ପାଠକ ସ୍ୱର ଲହରୀ ଲମ୍ବାଇ ପାଠ କରିବାରେ ଏହା ଶ୍ରୁତି ମାଧୁର୍ଯ୍ୟ ସମ୍ପାଦନ କରିଥାଏ । ଏହି ୧୪ ଅକ୍ଷରୀ ରାଗକୁ ପରବର୍ତ୍ତୀ ଯୁଗରେ କବି ସମ୍ରାଟ ଉପେନ୍ଦ୍ର ଭଞ୍ଜ ତାଙ୍କର ବୈଦେହୀଶ ବିଳାସ ଓ ଲାବଣ୍ୟବତୀ କାବ୍ୟରେ ବ୍ୟବହାର କରିଛନ୍ତି । ଆଧୁନିକ ଯୁଗର କବିମାନେ ମଧ୍ୟ ଏହି ଲୋକପ୍ରିୟ ରାଗକୁ ନିଜ କାବ୍ୟ କବିତାରେ ଗ୍ରହଣ କରିବାର ଦେଖାଯାଏ ।

## ଶିଳାଲେଖ

ସପ୍ତମ ଶତାବ୍ଦୀରୁ ୧୧ଶ ଶତାବ୍ଦୀ ମଧ୍ୟରେ ଓଡ଼ିଶାର ବିଭିନ୍ନ ସ୍ଥାନରେ ଓ ମନ୍ଦିର ଗାତ୍ର ମାନଙ୍କରେ ଖୋଦିତ ଶିଳାଲେଖ ମାନଙ୍କରୁ ଓଡ଼ିଆ ଭାଷାର ପ୍ରାଚୀନ ରୂପ ଦେଖିବାକୁ ମିଳେ । ତନ୍ମଧ୍ୟରୁ ବାଲେଶ୍ୱର ଜିଲ୍ଲାର ଗଣ୍ଡିବେଡ଼ ଗ୍ରାମରେ ଥିବା ଏକ ପ୍ରସ୍ତର ମୂର୍ତ୍ତିର ପାଦ ଦେଶରେ ଖୋଦିତ "ଶିଳାଲେଖ ଦେବକହ୍ମ ଭଗତି କରୁଣ, ଅଛନ୍ତ ଭେ କୁମାର-ସେଣ" ୭ମ ଶତାବ୍ଦୀର ଓ ଗବେଷକଙ୍କ ମତରେ ସର୍ବ ପ୍ରାଚୀନ ବୋଲି କୁହାଯାଏ । ଏଗୁଡ଼ିକର ସାହିତ୍ୟିକ ମୂଲ୍ୟ ବିଶେଷ ନାହିଁ । ଅବଶ୍ୟ ଭାଷାତତ୍ତ୍ୱ ଦୃଷ୍ଟିରୁ ଏଗୁଡ଼ିକ ମୂଲ୍ୟବାନ୍ ।

## ମାଦଳାପାଞ୍ଜି

ଶ୍ରୀ ଶ୍ରୀ ଜଗନ୍ନାଥ ଦେବଙ୍କର ମନ୍ଦିର ନୀତି ଓ ରାଜାମାନଙ୍କର ରାଜତ୍ୱ ବିବରଣୀ ଏଥିରେ ଲିପିବଦ୍ଧ ହୋଇଅଛି । ମର୍ଦ୍ଦଳାକୃତି ତାଳ-ପତ୍ରରେ ଲେଖାହେତୁ ଏହାର ଏପରି ନାମକରଣ ହୋଇଛି ବୋଲି କୁହାଯାଏ । ଏହି ପାଞ୍ଜି ଲେଖା ଗଙ୍ଗବଂଶର ରାଜା ଚୋଡ଼ଗଙ୍ଗଙ୍କର ରାଜତ୍ୱ ଆରମ୍ଭରେ ୧୦୭୭ ଖ୍ରୀଷ୍ଟାବ୍ଦ ଦଶହରା ତିଥିରେ ଆରମ୍ଭ ହୋଇଥିଲା ବୋଲି ଜଣାଯାଏ । ମାତ୍ର ଏହାର ଲିଖନ କାଳ ଓ ବିଷୟ ବସ୍ତୁର ସତ୍ୟତା ନେଇ ଗବେଷକମାନଙ୍କ ମଧ୍ୟରେ ବହୁ ମତ ପରିଲକ୍ଷିତ ହୁଏ । ତେବେ ପ୍ରଭୁ ଜଗନ୍ନାଥ "ସର୍ବ ପଦଂ ହସ୍ତି ପଦେ ନିମଗ୍ନଂ" ରୀତିରେ ସମସ୍ତ ଧର୍ମ, ସମସ୍ତ ତତ୍ତ୍ୱକୁ ନିଜର ବିପୁଳ ବକ୍ଷରେ ଲୀନ କରିଦେଇ କେଉଁ ଆବହ-ମାନ କାଳରୁ ଏକ ବିରାଟ ବସ୍ତୁରୂପେ ପ୍ରତିଭାତ ହୋଇଛନ୍ତି । ଏପରି କି ଋକ୍ ବେଦରେ ମଧ୍ୟ ପ୍ରଭୁ ଜଗନ୍ନାଥଙ୍କ ସମ୍ପର୍କରେ ଉଲ୍ଲେଖ ଅଛି—

ଅଦୋ ଯଦ୍ଦାରୁ ପ୍ଲବତେ ସିନ୍ଧୋଃ ପାରେ ଅପୁରୁଷମ୍
ତଦ୍ଦାରୁ ଭସ୍ୱ ଦୁର୍ହଣୋ ତେନ ଗଚ୍ଛ ପରସ୍ତରମ୍ ।

ମାଦଳା ପାଞ୍ଜିର କିଛି ସ୍ପଷ୍ଟ ପ୍ରଭାବ ସାରଳା ସାହିତ୍ୟରେ ନଥାଇ-ପାରେ । ମାତ୍ର ଜଗତର ନାଥ ପ୍ରଭୁ ଜଗନ୍ନାଥ ଯେ ସେହି ସମୟରେ ସ୍ୱ ମହିମାରେ ଉଦ୍ଭାସିତ ହେଉଥିଲେ ଓ ଆଦି କବିଙ୍କର ପରମ ପ୍ରିୟ ଦେବତା ଥିଲେ ତାହା ତାଙ୍କର ରଚନା ବଳୀରୁ ସ୍ପଷ୍ଟ ଭାବେ ସୂଚିତ ହୁଏ । ଏପରିକି ଆଦି କବିଙ୍କ ସମୟର ଶାସକ ମହାରାଜା କପିଳେନ୍ଦ୍ର ଦେବ ଦିଗ୍‌ବିଜୟ କରିସାରି ଉତ୍କଳର ରାଜ ସିଂହାସନ ପ୍ରଭୁ ଜଗନ୍ନାଥଙ୍କୁ ଅର୍ପଣ କରିଦେଇ ତାଙ୍କର ଦାସାନୁଦାସ ରୂପେ ରାଜ୍ୟ ଶାସନ କରୁଥିଲେ । ସେତେବେଳେ ସମସ୍ତ ରାଜ ଇସ୍ତାହାର, ରାଜାଦେଶନାମା ପ୍ରଭୁ ଜଗନ୍ନାଥ-ଙ୍କର ଶ୍ରୀମୁଖ ନିଃସୃତ ରୂପେ ଶ୍ରୀମନ୍ଦିରରେ ପ୍ରଥମେ ପାଠ କରାଯାଉଥିଲା । ସାରଳା ଦାସ ମଧ୍ୟ ନିଜେ ଶାକ୍ତ ହେଲେ ହେଁ ତାଙ୍କର ରଚନା ବଳୀରେ ପ୍ରଭୁ ଜଗନ୍ନାଥଙ୍କ ରୀତିରେ ସର୍ବ ଧର୍ମ ମତର ସମନ୍ୱୟ କରି ଦେଇଛନ୍ତି ।

ପ୍ରଥମେ ଶ୍ରୀ ରାମାୟଣ ଦ୍ୱିତୀୟେ ଭାରତ
ତୃତୀୟେ ଲିଖନ କଲି ଶିଶୁ ଭାଗବତ ।

ଏଥିରୁ ମଧ୍ୟ ସୂଚିତ ହୁଏ ଯେ ସେ ନିଜର ସାହିତ୍ୟ ମାଧ୍ୟମରେ ଧର୍ମ ସଂପର୍କୀୟ ତିନିଗୋଟି ବିଶିଷ୍ଟ ମତବାଦକୁ ଏକତ୍ରିତ କରିଛନ୍ତି ।

ତାଙ୍କର ରଚନାରେ ସବୁ ଦେବ ଦେବୀଙ୍କର ବନ୍ଦନା ଗାଇଛନ୍ତି ଏବଂ ସମସ୍ତଙ୍କ ପ୍ରତି ଭକ୍ତି ଓ ସମ୍ମାନ ପ୍ରଦର୍ଶନ କରିଛନ୍ତି । ଏକ କଥାରେ ସେ ତାଙ୍କର ସାହିତ୍ୟ ମାଧ୍ୟମରେ ଜଗନ୍ନାଥ ଧର୍ମର ପ୍ରଚାର କରିଛନ୍ତି କହିଲେ ଅତ୍ୟୁକ୍ତି ହେବନାହିଁ । ତାଙ୍କର ଦୃଷ୍ଟିରେ ପ୍ରଭୁ ଜଗନ୍ନାଥ ସ୍ୱୟଂ ପରଂବ୍ରହ୍ମ ଓ ଅବତାରୀ ।

"ଅବତାର ଦଶ ଏହି ଦାରୁ ରୂପ ଏହି ଦାରୁରେ ସେ ଲୀନ
ଈଶ୍ୱର ସାକ୍ଷାତ ଲୀଳାର ନିମନ୍ତେ ବିଜେ ରତ୍ନ ସିଂହାସନ ।"

ପୁନଶ୍ଚ ମୂଳ ମହାଭାରତକୁ ବ୍ୟତିକ୍ରମ କରି ସାରଳା ଦାସ ପ୍ରଭୁ ଜଗନ୍ନାଥଙ୍କୁ ଶ୍ରୀକୃଷ୍ଣ ବୋଲି ଗ୍ରହଣ କରିଛନ୍ତି ଏବଂ ଶ୍ରୀକୃଷ୍ଣଙ୍କର ଦେହାବସାନ ପରେ ଅଗ୍ନି ଦଗ୍ଧ ନହୋଇପାରି ତାଙ୍କର ପିଣ୍ଡ ଶ୍ରୀକ୍ଷେତ୍ରରେ ପ୍ରଭୁ ଜଗନ୍ନାଥ ରୂପରେ ପୂଜା ପାଉଥିବା ବର୍ଣ୍ଣନା କରିଛନ୍ତି । ବ୍ରହ୍ମପୁରାଣରେ ମଧ୍ୟ ଉଲ୍ଲେଖ ଅଛି ଯେ :—

ଗୁଣ୍ଡିଚ୍ଚ ମଣ୍ଡପଂ ଯାନ୍ତଂ ଯେ ପଶ୍ୟନ୍ତି ରଥେସ୍ଥିତଂ,
କୃଷ୍ଣଂ ବଳଂ ସୁଭଦ୍ରାଂଚ ତେ ଯାନ୍ତି ଭବନଂ ହରେଃ ।

ତତ୍ ସଙ୍ଗେ ସଙ୍ଗେ ସେ ଅଣାକାର, ପରଂବ୍ରହ୍ମ ଓ ତାଙ୍କୁ ପାଇବାକୁ ହେଲେ ଯୋଗସାଧନା ଦ୍ୱାରା କୁଣ୍ଡଳିନୀ ଶକ୍ତି ଜାଗ୍ରତ କରିବାକୁ ହେବ ଏହା ମଧ୍ୟ ପ୍ରକାଶ କରିଛନ୍ତି । ତେଣୁ ସେ ଶ୍ରୀ ଜଗନ୍ନାଥଙ୍କୁ ସଗୁଣ ଓ ନିର୍ଗୁଣ ଉଭୟ ଦୃଷ୍ଟିରେ ଦେଖିଛନ୍ତି ଯାହାକି ପରବର୍ତ୍ତୀ ପଞ୍ଚସଖା ଧର୍ମର ମୂଳତତ୍ତ୍ୱ ଏବଂ ତାହାକୁ ଆଶ୍ରୟ କରି ଷୋଡ଼ଶ ଶତାବ୍ଦୀରେ ସେମାନଙ୍କର ବିରାଟ ସାହିତ୍ୟ ସୌଧ ଗଢି ଉଠିଛି । ଏହାଛଡ଼ା ୭ମ ଶତାବ୍ଦୀର ବଜ୍ର- ଯାନୀ ରାଜା ଇନ୍ଦ୍ରଭୂତି ଓ ବହୁ ସଂସ୍କୃତ ଲେଖକଙ୍କ ମାର୍ଗରେ ଯାଇ ସାରଳା ଦାସ ପ୍ରଭୁ ଜଗନ୍ନାଥଙ୍କୁ ନବମ ଅବତାର ବୁଦ୍ଧ ରୂପ ବର୍ଣ୍ଣନା କରିଛନ୍ତି । ପୁଣି ଜଗନ୍ନାଥ, ବଳଭଦ୍ର, ସୁଭଦ୍ରାଙ୍କୁ ବିଷ୍ଣୁ, ଶିବ, ବ୍ରହ୍ମା ରୂପରେ ମଧ୍ୟ ଚିତ୍ରଣ କରିଛନ୍ତି । ନିମ୍ନରେ କେତେ ଗୋଟି ଉଦାହରଣ ପ୍ରଦତ୍ତ ହେଉଛି—

୧- ଅପୂର୍ବ ସିଂହାସନକୁ ପଶ୍ଚାନ୍ତର ନାହିଁ,
ଅଶୋକାର ବସ୍ତୁ ବଜେ କରଛନ୍ତି ସହିଁ । ମ: ପ !

୨- ବନ୍ଦଇ ଶ୍ରୀ ଜଗନ୍ନାଥ ବଇକୁଣ୍ଠ ବାସୀ
ବୌଦ୍ଧ ରୂପେ ନୀଳଗିରି ଶିଖେ ଅଛ ବସି । ମ : ପ :

୩- ବଉଦ୍ଧ ରୂପରେ କଳିଯୁଗେ ଆବତାର,
ହୋଇଣ ପାପୀଜନଙ୍କୁ କରୁଛ ଉଦ୍ଧାର । ବ : ପ

**ବଚ୍ଛାଦାସ :**

ବଚ୍ଛାଦାସ "କଳସା ଚଉତିଶା"ର ଲେଖକ । ତାଙ୍କର ଆବର୍ଭାବ ସମୟ ସଠିକଭାବେ ନରୂପିତ ହୋଇ ପାରୁନାହିଁ । ତେବେ ସାରଳା ଦାସଙ୍କ ମହାଭାରତରେ ଉଲ୍ଲେଖ ଅଛି—

"ବେଦମନ୍ତ୍ର ଯୁଗତେ ସେ ପଢନ୍ତି କଳସା,
ବଶିଷ୍ଠ ମାରକଣ୍ଡ ଆବର ଦୁର୍ବାସା । "

ଏଥିରୁ ଜଣାଯାଏ ଯେ ବଚ୍ଛଦାସ, ସାରଳା ଦାସଙ୍କର କେବଳ ପୂର୍ବବର୍ତ୍ତୀ ନୁହନ୍ତି, ସାରଳା ଦାସଙ୍କ ଅବର୍ଭାବ ସମୟକୁ କଳସା ଚଉତିଶା ଲୋକପ୍ରିୟ ହୋଇ ସାରିଥିଲା । ଏହା ଏତେ ଲୋକପ୍ରିୟ ହୋଇଗଲା ଯେ ବଚ୍ଛାଦାସଙ୍କ ପରବର୍ତ୍ତୀ କବିମାନେ ନିଜ ନିଜର ରଚନାକୁ "କଳସା" ବାଣୀରେ ଗାଇବାକୁ ନିର୍ଦ୍ଦେଶ କରିଛନ୍ତି । ଲେଖନ, ତାଳପତ୍ରରେ ଲେଖାଯାଇଥିବା ଯେ କୌଣସି ରଚନା ପ୍ରଚଳିତ ହୋଇ ଲୋକପ୍ରିୟ ହେବାକୁ ପ୍ରାୟ ଶହେ ବର୍ଷ ଲାଗୁଥିବ ବୋଲି ଧରିଗଲେ କଳସା ଚଉତିଶା ସାରଳା ପୂର୍ବବର୍ତ୍ତୀ ୧୪ଶ ଶତାବ୍ଦୀର ଲେଖା ବୋଲି ଅନୁମାନ କରାଯାଇ ପାରେ ।

ମାତ୍ର ଏହାର ଅନ୍ୟଦିଗ ରହିଛି । କେତେକ ସମାଲୋଚକଙ୍କ ମତରେ ସହସ୍ର ବର୍ଷ ପୂର୍ବ ପ୍ରାଗ୍ ଐତିହାସିକ ଯୁଗର ବଶିଷ୍ଠ, ମାର୍କଣ୍ଡାଦି ମୁନିମାନେ ସଂସ୍କୃତରେ ଲିଖିତ ବେଦମନ୍ତ୍ର ସହିତ କଳସାକୁ ମିଶାଇ କାହିଁକି ପଢିବେ ? ତେଣୁ କଳସା ହୁଏତ ମଙ୍ଗଳଗାନ ବା ମାଙ୍ଗଳିକ ଯାହାକି ପ୍ରଭୁ ଜଗନ୍ନାଥଙ୍କ ଆଗରେ ପ୍ରତିଦିନ ବୋଲିଯାଏ । ମାଦଳା ପାଞ୍ଜିରେ ମଧ୍ୟ

ଉଲ୍ଲେଖ ଅଛି ଯେ ରାଜା ଚନ୍ଦ୍ର ପ୍ରତାପ ପୁଣ୍ୟ ମନ୍ଦିରରେ 'କଳସା' ନିଯୋଗ ଖଞ୍ଜି ଥିଲେ । ତେବେ ଅନ୍ୟ କେତେକ ବିଚାରରୁ ମଧ୍ୟ କଳସା ଚଉତିଶା ସାରଳା ଦାସଙ୍କ ପୂର୍ବବର୍ତ୍ତୀ ବୋଲି ଅନୁମିତ ହୁଏ । ପୂର୍ବରୁ ସୂଚିତ ହୋଇଅଛି ଯେ ସହଜ ତାନ୍ତ୍ରିକ ବୌଦ୍ଧଧର୍ମ ଅଧୋଗତି ହୋଇ ତାହା କେବଳ ବାମାଚାରରେ ପର୍ଯ୍ୟବସିତ ହୋଇଥିଲା ଓ ସେଥିଯୋଗୁ ସହଜିଆ ସିଦ୍ଧମାନେ ସମାଜରେ ଘୃଣିତ ହୋଇଥିଲେ । ଏହାର ଆହ୍ୱାନ ସ୍ୱରୂପ ଶିବୋପାସକ ନାଥ ପନ୍ଥାର ଆବିର୍ଭାବ ହୋଇ ଥିଲା ଏବଂ ସମାଜରେ ଶିବ ପୂଜାର ଆଦର ବଢ଼ି ଯାଇଥିଲା । ପୂର୍ବରୁ ୭ମରୁ ୯ମ ଶତାବ୍ଦୀ ମଧ୍ୟରେ ସମାଜରେ ବୌଦ୍ଧତନ୍ତ୍ରର ପ୍ରବଳ ପ୍ରଭାବ ହେତୁ ହିନ୍ଦୁମାନେ ନିଜ ଧର୍ମକୁ ନଗ୍ରଣ୍ଡ଼ି ନିଜ ଦେବ ଦେବୀଙ୍କ ସହିତ ବୌଦ୍ଧ-ଦେବତା ଯଥା-ସିଦ୍ଧଦେବ, ଅବଲୋକିତେଶ୍ୱର ଆଦିଙ୍କୁ ପୂଜା କରୁଥିଲେ । ମହାଯାନୀ ବୌଦ୍ଧ ସମ୍ପ୍ରଦାୟରେ ମଧ୍ୟ ହିନ୍ଦୁ ପ୍ରଭାବରେ ଦେବ ଦେବୀ ପୂଜା ପ୍ରବେଶ କରିଥିଲା । ୧୩ଶ ଶତାବ୍ଦୀ ବେଳକୁ ବୌଦ୍ଧ ପ୍ରଭାବ ହ୍ରାସ ପାଇ-ଯିବାରୁ ବୌଦ୍ଧ ଦେବତା ସିଦ୍ଧଦେବ ହିନ୍ଦୁ ଦେବତା ଶିବ ରୂପରେ, ଅବ-ଲୋକିତେଶ୍ୱର ଲୋକନାଥ ରୂପରେ ଏବଂ ବୌଦ୍ଧସ୍ତମ୍ଭ ଓ ସ୍ତୂପମାନ ଶିବ ଲିଙ୍ଗ ରୂପରେ ପରିଣତ ହୋଇଥିଲେ । ନାଥ ପନ୍ଥାର ପ୍ରଭାବ ମଧ୍ୟ ଏ ଦିଗରେ ସହାୟକ ହୋଇଥିଲା । ସୁତରାଂ ୧୩ଶ ଓ ୧୪ଶ ଶତାବ୍ଦୀରେ ଶିବ ପୂଜା ସମାଜରେ ଚରମ ଆଦର ଲାଭ କରିଥିବାର ଅନୁମିତ ହୁଏ ।

'କଳସା ଚଉତିଶା' ଶିବପାର୍ବତୀଙ୍କର ବିବାହ ବିଷୟକୁ ଉପଜୀବ୍ୟ କରି ରଚିତ । ଏହାର ଭାଷାମଧ୍ୟ ଅତ୍ୟନ୍ତ ସରଳ ଓ ହୃଦୟଗ୍ରାହୀ ହେବା ସଙ୍ଗେ ସଙ୍ଗେ ବହୁ ପ୍ରାଚୀନ ଶବ୍ଦ ଓ ପ୍ରୟୋଗରେ ପରିପୂର୍ଣ୍ଣ । ତେଣୁ ଏହା ସାରଳା ପୂର୍ବବର୍ତ୍ତୀ ୧୪ଶ ଶତାବ୍ଦୀର ରଚନା ହେବା ସମ୍ଭବ । ତା ହେଲେ ସାରଳାଦାସ ଏହାକୁ ପାଠକରି ଏହାଦ୍ୱାରା କେତେକ ପରିମାଣରେ ଅନୁ-ପ୍ରାଣିତ ହୋଇଥିବା ଅସମ୍ଭବ ନୁହେଁ । କାରଣ ସାରଳାଙ୍କର ଦୌପଦୀ-ବିବାହ ବର୍ଣ୍ଣନାରେ କଳସାର ପାର୍ବତୀ-ବିବାହ ବର୍ଣ୍ଣନାର ଛାୟା କେତେକ ପରିମାଣରେ ପଡ଼ିଥିବାର ଲକ୍ଷିତ ହୁଏ । ପୁଣି ସାରଳାଦାସ ମଧ୍ୟ ଶିବ-ଶକ୍ତି ଉପାସକ । ତାଙ୍କର ରଚନାର ବହୁସ୍ଥଳରେ ଶିବ ପ୍ରଶଂସା, ଶିବ ମହିମା ଓ ଶିବସ୍ତୁତି ଦେଖାଯାଏ । ଲକ୍ଷ୍ମୀ ଓ ପାର୍ବତୀଙ୍କର କଳହର ଉପଭୋଗ୍ୟ

ବର୍ଣ୍ଣନାରେ କବି ପାଂଚାଳଙ୍କ ପକ୍ଷ ସମର୍ଥନ କରିଥିବାର ମଧ୍ୟ ଦେଖାଯାଏ । ଏହା ଯଥା ସ୍ଥାନରେ ବସ୍ତୁନିଷ୍ଠଭାବେ ବର୍ଣ୍ଣିତ ହେବ । କଳସା ଚଉତିଶାରେ ପାଂଚାଳି ବିବାହର ଯେଉଁ ଚିତ୍ର ଅଙ୍କିତ ହୋଇଛି, ଛଦ୍ମବେଶୀ ଶିବଙ୍କର ଅତି ରୁଗ୍‌ଣ, ବୃଦ୍ଧ ଅବସ୍ଥାକୁ ଦେଖି ପାଂଚାଳି, ତାଙ୍କ ମାତା ଓ ସହଚରୀ-ମାନଙ୍କ ମନରେ ଯେଉଁ ପ୍ରତିକ୍ରିୟା ସୃଷ୍ଟିହୋଇଛି ତାହା ତତ୍କାଳୀନ କାହିଁକି ଆଧୁନିକ ହିନ୍ଦୁ ସମାଜର ମଧ୍ୟ ଏକ ଜ୍ୱଳନ୍ତ ବାସ୍ତବ ଚିତ୍ର । ଯଥା:—

ବଦନ୍ତି କାମିନୀ ଶୁଣ ହେମନ୍ତ ଦୁଲଣୀ
କାହୁଁ ବରେ ବରିଲେ ତୁମର ପିତାମଣି ।
× × ×   × × ×   × × ×
ଖୁଁ ଖୁଁ କାଶ ସାହସେଣ ପେଲୁ ଅଛି ଧାଇଁ
ଖର ନିଶ୍ୱାସ ବୁଢାର ମାଥ ଲଟେ ଭୂଇଁ ।
× × ×   × × ×   × × ×
ଝୁଲ ହୋଇ ଝିଙ୍କି ହୋଇ ପଡୁଛି ଘୁମାଇଁ
ଝିଅକ ତା ନାତୁଣୀ ପ୍ରାପ୍ତ ହଶିବୁ ଗୋ ତୁହି ।

ନିର୍ଦ୍ଧୋଷୀ ମାତାର ଦେହକି ଏଥିରେ ସହେ ? ସେ ସଙ୍ଗେ ସଙ୍ଗେ ଯାଇ ସ୍ୱାମୀଙ୍କୁ ଭର୍ତ୍ସନା କଲେ ।

"ନାହିଁକି ରାଜ୍ୟର ମଧ୍ୟେ ରାଜାର କୁମର
ନିର୍ଲଜ୍ଜ ବୁଢ଼ାକୁ ସୁନ୍ଦରୀକି କଲ ବର ?
ନୋହିଲେ ବୁଡ଼ିବୁ ମାଏ ଝିଅ ଦୁଇ ହୋଇ
ନୋହିଲେ ମରିବୁ ସ୍ୱହସ୍ତରେ ବିଷ ଖାଇ ।

## ମାର୍କଣ୍ଡ ଦାସ :

ଶ୍ରୀକୃଷ୍ଣଙ୍କର ମଥୁରା ଗମନ ବିଷୟକୁ ଉପଜୀବ୍ୟ କରି କବି ମାର୍କଣ୍ଡ ଦାସ "କେଶବ କୋଇଲି" ଲେଖିଛନ୍ତି । ଏହା ବାତ୍ସଲ୍ୟ-କରୁଣ ରସାଶ୍ରିତ ଏକ ଚମତ୍କାର ରଚନା ଓ ଓଡ଼ିଆ ସାହିତ୍ୟ ଭଣ୍ଡାରର ଏକ ଅମୂଲ୍ୟ ଓ ସମୁଜ୍ଜ୍ୱଳ ମଣି କହିଲେ ଅତ୍ୟୁକ୍ତି ହେବନାହିଁ । ଏହାର ଭାଷା ଉନ୍ନତ ଓ ମାର୍ଜିତ । ୧୬ଶ ଶତାବ୍ଦୀରେ ଅତିବଡ଼ୀ ଜଗନ୍ନାଥ ଦାସ "ଅର୍ଥକୋଇଲି"

ନାମରେ ଏହାର ଏକ ଆଧ୍ୟାତ୍ମିକ ଟୀକା କରିଥିବା ହେତୁ ଏହା ପ୍ରାୟ ଦୁଇ ଶହ ବର୍ଷ ପୂର୍ବର ଅର୍ଥାତ୍ ୧୪ଶ ଶତାବ୍ଦୀର ରଚନା ବୋଲି ଅନୁମାନ କରାଯାଏ । ତେବେ ସାରଳା ଦାସଙ୍କ ରଚନାରେ ଏହାର କୌଣସି ସ୍ପଷ୍ଟ ପ୍ରଭାବ ଲକ୍ଷିତ ହୁଏନାହିଁ ।

## ନାରାୟଣାନନ୍ଦ ଅବଧୂତ ସ୍ୱାମୀ :

କେତେକ ସମାଲୋଚକଙ୍କ ମତରେ ଏହି ଲେଖକ ସାରଳା ଦାସଙ୍କ ପୂର୍ବବର୍ତ୍ତୀ । ଅନ୍ୟ ମତରେ ସେ ସାରଳା ଦାସ ଓ ବଳରାମ ଦାସଙ୍କ ମଧ୍ୟବର୍ତ୍ତୀ ଅର୍ଥାତ୍ ଚୈତନ୍ୟ ଦେବଙ୍କ ଆବିର୍ଭାବ ପୂର୍ବର ବା ୧୫ଶ ଶତାବ୍ଦୀର ।

ଏହାଙ୍କର ରଚନା "ରୁଦ୍ର ସୁଧାନିଧି" ଏକ ଅପୂର୍ବ, ଅଦ୍ୱିତୀୟ ଗ୍ରନ୍ଥ ହେଲେହେଁ ଏହା ଅସମ୍ପୂର୍ଣ୍ଣ । ଏହା ହୁଏତ ଓଡ଼ିଆରେ ଲିଖିତ ପ୍ରଥମ ଗଦ୍ୟ ସାହିତ୍ୟ । ମାତ୍ର ଏହା ଯଥାର୍ଥରେ ଏକ ବିଚିତ୍ର ପଦ୍ୟାତ୍ମକ ଗଦ୍ୟ । 'A happy blend of both prose and poetry.' ଏଥିରେ ସଂସ୍କୃତ ଗଦ୍ୟାତ୍ମକ କାବ୍ୟର ସମସ୍ତ ଲକ୍ଷଣ ଥିଲେହେଁ ଏହା କ୍ଲିଷ୍ଟ ବା ସମାସ ବହୁଳ ନହୋଇ ଅତ୍ୟନ୍ତ ସରସ ସୁଖପାଠ୍ୟ ଓ ସହଜବୋଧ ।

ଏହି ଗ୍ରନ୍ଥମଧ୍ୟ ଯୁଗାନୁସାରୀ ଶିବ ମହିମା ପ୍ରଖ୍ୟାପକ କଥାବସ୍ତୁକୁ ନେଇ ରଚିତ । ଲେଖକ ଏକାମ୍ରକାନନର ଜଣେ ପ୍ରସିଦ୍ଧ ଯୋଗୀ ଓ ମହାନ୍ ପଣ୍ଡିତ । ନିଜ ନାମରେ ବିଷ୍ଣୁ ଓ ଶିବ ଉଭୟେ ସୂଚିତ । ଗ୍ରନ୍ଥରେ ମଧ୍ୟ ଛଅଟି ଯାକ ଦର୍ଶନର ମତବାଦ, ତାନ୍ତ୍ରିକ, ପାଶୁପତ ଓ ବୌଦ୍ଧମତ ପ୍ରତିଫଳିତ ହୋଇଛି । ତାହା ସଙ୍ଗେ ସଙ୍ଗେ ସାରଳା ଦାସଙ୍କ ପରି ନାରାୟଣାନନ୍ଦଙ୍କର ମଧ୍ୟ ପ୍ରଭୁ ଜଗନ୍ନାଥଙ୍କ ପ୍ରତି ଅଗାଧ ଭକ୍ତି ଥିବାର ତାଙ୍କର ରଚନାରୁ ସୂଚିତ ହୁଏ । ପ୍ରଭୁ ଜଗନ୍ନାଥଙ୍କର ମହିମା ଓ ବୈଷ୍ଣବମତର ପରାକାଷ୍ଠା ପ୍ରଦର୍ଶନରେ ମଧ୍ୟ ସେ କୌଣସି କାର୍ପଣ୍ୟ କରି ନାହାନ୍ତି । ରାଜାରାଣୀ ବିଷ୍ଣୁଚରିତ କଥାରେ ଅବଶିଷ୍ଟ ରାତି ଯାପନ କରିବା, ବିଷ୍ଣୁ ଆୟୁଧ ସୁଦର୍ଶନ ଚକ୍ରଙ୍କର ମହିମାଦି ବର୍ଣ୍ଣନା କରିବା

ସଙ୍ଗେ ସଙ୍ଗେ ଅଷ୍ଟାଦଶ ବର୍ଷ ମାୟାର ଈଶ୍ୱର ସ୍ୱୟଂ ଜଗନ୍ନାଥ ବୋଲି କହିଛନ୍ତି । ପୁଣି 'ପରମ ଶ୍ରେୟ' ବା 'ମୁକ୍ତି' ଶ୍ରୀକୃଷ୍ଣ ବ୍ୟତିରେକେ ଆନ ଦେଇ ନପାରେ ବୋଲି ଉଲ୍ଲେଖ କରି ସେ ସାରଳା ଦାସଙ୍କ ପରି ଶ୍ରୀଜଗନ୍ନାଥ ଓ ଶ୍ରୀକୃଷ୍ଣଙ୍କୁ ଏକ ବା ଅଭିନ୍ନ କରିଦେଇଛନ୍ତି । ମହା-ମାୟାଙ୍କ ମୁଖରେ ଯୋଗ ସାଧନାର ପ୍ରଣାଳୀ ବର୍ଣ୍ଣନା ପ୍ରସଙ୍ଗରେ କହିଛନ୍ତି ଯେ କେବଳ ପ୍ରଭୁ ଜଗନ୍ନାଥଙ୍କର ଅନୁଗ୍ରହ ହେଲେ ଯାଇ ଯୋଗସାଧନା ସମ୍ଭବ । ଏହା ଦ୍ୱାରା ଶ୍ରୀଜଗନ୍ନାଥ ଯେ ସର୍ବଧର୍ମ ସର୍ବମତର ଆଧାର ଏହା ସେ ସୂଚାଇ ଦେଇଛନ୍ତି । ସ୍ପଷ୍ଟତଃ କହିବାକୁ ଗଲେ ସାରଳା ଦାସ ଓ ନାରାୟଣାନନ୍ଦ ଙ୍କର ରଚନାରେ ଧର୍ମମତ ବାଦ ପ୍ରାୟ ସମାନ । ଏହି ଦୃଷ୍ଟିରୁ ବିଗ୍ଭର କଲେ ଉଭୟଙ୍କର ଆବିର୍ଭାବ ସମୟ ପରସ୍ପରଠାରୁ ବେଶୀ ଦୂରବର୍ତ୍ତୀ ନୁହେଁ ।

ରୁଦ୍ର ସୁଧା ନିଧିର ରଚନା ଶୈଳୀ ମଧ୍ୟ ଅତି ଚମତ୍କାର । ଗଦ୍ୟ ଓ ପଦ୍ୟର ଏକ ସୁନ୍ଦର ସମନ୍ୱୟ ଏଥିରେ ପ୍ରକଟିତ ହୋଇଅଛି, ଯଥା—

ଧର୍ମବନ୍ତ ହୋଇ ପାଳଇ ସୃଷ୍ଟି
ବାଞ୍ଛାକଲେ ଇନ୍ଦ୍ର କରଇ ବୃଷ୍ଟି
ପୂର୍ବେଥିଲେ ଯେମନ୍ତ ରାଜା ଯୁଧିଷ୍ଠି

× × ×

କଳା ପଡ଼ିଲା ପୀନ ଘନ ସ୍ତନ
କି ସେ ଭୃଙ୍ଗ ବେଷ୍ଟିତ ଦଳ ବଦଳିତ ପଦ୍ମ !

ଯେଉଁ ସମାଲୋଚକମାନେ 'ରୁଦ୍ର ସୁଧାନିଧି' ସାରଳା ଦାସଙ୍କ ପୂର୍ବବର୍ତ୍ତୀ ବୋଲି ମତ ପୋଷଣ କରନ୍ତି ସେମାନେ ଆହୁରି କହନ୍ତି ଯେ ରୁଦ୍ର-ସୁଧାନିଧିର ଗଦ୍ୟ ପଦ୍ୟ ସମନ୍ୱିତ ଶୈଳୀ ସାରଳା ଦାସଙ୍କୁ ଦାଣ୍ଡୀ ବୃତ୍ତରେ ଗ୍ରନ୍ଥ ରଚନା କରିବା ନିମିତ୍ତ ପ୍ରେରଣା ଦେଇଥିବା ସମ୍ଭବ । ପୂର୍ବରୁ କୁହାଯାଇଅଛି ଯେ ଦାଣ୍ଡୀବୃତ୍ତ ସଂସ୍କୃତ ଦଣ୍ଡକ ବୃତ୍ତ ବା ୧୪ ଅକ୍ଷରୀ ରାଗ ନୁହେଁ । ଶ୍ରୁତି ମାଧୁର୍ଯ୍ୟ ଓ ପଠନର ସାବଲୀଳତା ନିମିତ୍ତ ଏଥିରେ ପ୍ରତିପାଦର ଅକ୍ଷର ସଂଖ୍ୟା ସର୍ବଦା ସମାନ ରଖାଯାଇ ନାହିଁ ।

ଏହି ଦାଣ୍ଡୀ ବୃତ୍ତର ଅନୁକରଣ କରି ପରବର୍ତ୍ତୀ ଯୁଗରେ ବଳରାମ ଦାସ ନିଜର ରାମାୟଣ ରଚନା କରିଛନ୍ତି ।

## ଆଦି କବିଙ୍କର ଆବିର୍ଭାବ

ସୂର୍ଯ୍ୟବଂଶୀ ସମ୍ରାଟ କପିଳେନ୍ଦ୍ର ଦେବଙ୍କ ରାଜତ୍ୱ ସମୟରେ (ଖ୍ରୀ ୧୪୩୫—୬୭) ଆଦି କବି ସାରଳା ଦାସଙ୍କର ଆବିର୍ଭାବ ହୋଇଥିଲା ଏବଂ ସେ ଅଳ୍ପ ବୟସରେ ମହାଭାରତ ରଚନା ଆରମ୍ଭ କରି ପରିଣତ ବୟସରେ ଶେଷ କରିଥିଲେ ବୋଲି ଜଣାଯାଏ । ତାଙ୍କର ମହାଭାରତରୁ କପିଳେନ୍ଦ୍ର ଦେବଙ୍କର ରାଜତ୍ୱର ସୂଚନା ମିଳେ ।

> କଳିକାଳ ଧ୍ୱଂସେଣ ହୋଇନ କୋଟି ପୂଜା
> ପ୍ରତେ ମିତେ ଖଟନ୍ତି କପିଳେଶ୍ୱର ମହାରାଜା ।

ପୁଣି ତାଙ୍କର ଚଣ୍ଡୀ ପୁରାଣରେ ମଧ୍ୟ 'କପିଳ ସିଂହ' ରାଜାଙ୍କ ନାମ ଉଲ୍ଲେଖ ହୋଇଅଛି । ମଧ୍ୟପର୍ବରେ ଲିଖିତ ଅଛି " ଶିଶୁ ବୁଦ୍ଧି ମୋହର ବୟସ ଅଳ୍ପଟି" । ଏବଂ ସଭାପର୍ବରେ ଉଲ୍ଲେଖ ଅଛି— "ନରରୂପେ ଜନ୍ମି, ବୃଦ୍ଧ ହେଲି ନରମେଳେ ।" ଯଦିଓ କବି ମହାଭାରତ ରଚନା କେବେ ଆରମ୍ଭ କରି କେବେ ଶେଷ କରିଥିଲେ ତାହା ଜାଣିବା ପାଇଁ କୌଣସି ନିର୍ଭରଯୋଗ୍ୟ ଉପାଦାନ ନାହିଁ, ତଥାପି ତାଳପତ୍ର ଲେଖନ ସାହାଯ୍ୟରେ ଏପରି ବିରାଟ କୃତି ଯେ ଏକ ଜୀବନ ବ୍ୟାପୀ ସାଧନା ଏଥିରେ ସନ୍ଦେହର ଅବକାଶ ନାହିଁ ।

ଭାଷାର ଇତିହାସରୁ ସୂଚିତ ହୁଏ ଯେ ଲିଖିତ ଭାଷା ସର୍ବଦା କଥିତ ଭାଷାର ଅନୁଗାମୀ ହୋଇ ଚାଲିଥାଏ । କଥିତ ଭାଷା ବିଭିନ୍ନ ସମ୍ପର୍କ ଓ ପ୍ରଭାବ ହେତୁ ପରିବର୍ତ୍ତନଶୀଳ । ମାତ୍ର ଲିଖିତ ଭାଷାର ସେପରି ପରିବର୍ତ୍ତନ ହୁଏ ନାହିଁ । କଥିତ ଭାଷା କ୍ରମେ ପରିବର୍ତ୍ତିତ ହୋଇ ଲିଖିତ ଭାଷାଠାରୁ ଦୂରେଇ ଗଲେ ସେ ଲିଖିତ ଭାଷା ପରିତ୍ୟକ୍ତ ହୁଏ ଓ କଥିତ ଭାଷାରେ ଅନୁରୂପ ଲିଖିତ ଭାଷାହିଁ ପ୍ରବର୍ତ୍ତିତ ହୋଇଥାଏ । ଏହି ପ୍ରକ୍ରିୟାରେ ସଂସ୍କୃତଠାରୁ ଦୂରେଇ ଯାଇ ପ୍ରାକୃତ ଓ ବିଭିନ୍ନ ଆଞ୍ଚଳିକ ଭାଷାର ସୃଷ୍ଟି ହୋଇଅଛି ।

ସାରଳାଦାସଙ୍କ ସମୟରେ ଶିକ୍ଷିତ ସମ୍ପ୍ରଦାୟ ମଧ୍ୟରେ ସଂସ୍କୃତର ଆଦର ଥିଲେ ମଧ୍ୟ ଲୋକସାଧାରଣଙ୍କ ପାଇଁ ରଚନାରେ "ଦେଶୀ ଭାଷା" ବା ଆଞ୍ଚଳିକ ଭାଷା ବ୍ୟବହାରର ଆବଶ୍ୟକତା ସମସ୍ତେ ଉପଲବ୍ଧି କରୁଥିଲେ । ଦେଶୀଭାଷାର ରଚନାକୁ ତତ୍କାଳୀନ କେତେକ ପଣ୍ଡିତମନ୍ୟ ବ୍ୟକ୍ତି କଟାକ୍ଷ କରୁଥିବା ହେତୁ ସାରଳାଦାସ ନିଜର ବିରାଟ କୃତିକୁ ସ୍ୱୟଂ ସାରଳା ଠାକୁରାଣୀଙ୍କର ମୁଖ ନିଃସୃତ ବାଣୀ ବୋଲି ପ୍ରକାଶ କରିଥିବାର ମନେହୁଏ ।

"ଆହେ ବୁଧଜନେ ମୋତେ ସେ ଯାହା କହଇ
ଅରୁଣ ଉଦୟ କାଳେ ମୁଁ ତାହା ଲେଖଇ ।"

ଅବଶ୍ୟ ନିଜ ରଚନାର ଉତ୍କର୍ଷ ଓ ସାଫଲ୍ୟ ନିମିତ୍ତ ପ୍ରାଚୀନ କବିମାନେ ଦେବଦେବୀଙ୍କର ଆଶ୍ରୟ ନେବାର ପରମ୍ପରା ରହି ଆସିଛି । ସାରଳାଦାସ ମଧ୍ୟ ନିଜର ବିରାଟ ପ୍ରତିଭାର ପରିପ୍ରକାଶ ନିମିତ୍ତ କିଛି ଦୈବୀ ଅନୁଗ୍ରହ ଲାଭ କରିନଥିଲେ ବିଶେଷ ଆଦର୍ଶ ବା ଅନୁକରଣ ଯୋଗ୍ୟ ଉପାଦାନ ନଥାଇ ଏପରି ବିରାଟ କାବ୍ୟ-ସୌଧ ରଚନାରେ ଅଭୂତପୂର୍ବ ସାଫଲ୍ୟ ହୁଏତ ଅର୍ଜନ କରି ପାରିନଥାନ୍ତେ । "ଯାହା ନାହିଁ ଭାରତେ, ତାହା ନାହିଁ ଭାରତେ ।" ଅର୍ଥାତ୍ ଭାରତ ବର୍ଷରେ ଥିବା କୌଣସି ବିଷୟ ବା କୌଣସି ବସ୍ତୁକୁ ସେ ନିଜର ରଚନାରେ ବାଦ୍ ଦେଇ ନାହାନ୍ତି ।

**ଜନ୍ମସ୍ଥାନ :**

କବି ନିଜେ ଲେଖିଛନ୍ତି ତାଙ୍କର ଜନ୍ମସ୍ଥାନ ଜଙ୍ଘେରପୁର ବା ଝଙ୍କଡ଼ ଗ୍ରାମ (କଟକ ଠାରୁ ପୂର୍ବକୁ ୫୦ କିଲୋମିଟର) । ତାଙ୍କର ପ୍ରକୃତନାମ ସିଦ୍ଧେଶ୍ୱର ପରିଡ଼ା । ଝଙ୍କଡ ଗ୍ରାମଟି ଉତ୍କଳରେ ବହୁ ପୂର୍ବରୁ ଏକ ପ୍ରଧାନ ଶକ୍ତିପୀଠ ରୂପେ ରହି ଆସିଛି । ଏବେ ସେଠାରେ ମା ସାରଳା ଠାକୁରାଣୀଙ୍କର ଏକ ସୁରମ୍ୟ ମନ୍ଦିର ରହିଛି ଏବଂ ସାରା ଉତ୍କଳରେ ତାଙ୍କର ମହିମା ବିଖ୍ୟାତ ହେତୁ ପ୍ରତ୍ୟହ ଶହ ଶହ ଦର୍ଶନାକାଙ୍କ୍ଷୀ ନରନାରୀଙ୍କର ସେଠାକୁ ଆଗମନ ହେଉଛି । ଏହି ଲେଖକ ମଧ୍ୟ କଟକ ତୃତୀୟ ସର୍କଲର ସ୍କୁଲ ଇନ୍‌ସପେକ୍ଟର ଥାଇ ବହୁବାର ଏହି ପବିତ୍ର ପୀଠ ଦର୍ଶନର ସୁଯୋଗ ଲାଭ କରିବା ଦ୍ୱାରା ଏପରି ଏକ ଗ୍ରନ୍ଥ ରଚନାର ପ୍ରେରଣା ଲାଭ କରିଥିବା ସ୍ୱୀକାର କରୁଛି ।

ମା' ସାରଳା ଠାକୁରାଣୀଙ୍କ ପ୍ରସାଦରୁ କବି ସାରଳାଦାସ ବିରାଟ କବି ହେବା ସଙ୍ଗେ ସଙ୍ଗେ ଜାତିସ୍ମର ମଧ୍ୟ ହୋଇଥିଲେ । ବୌଦ୍ଧ ପରମ୍ପରାରେ ମଧ୍ୟ ଏପରି ଜାତିସ୍ମର ହେବା ଦେଖାଯାଏ । ପୂର୍ବ ଜନ୍ମରେ ସେ ଶିବଙ୍କର ଦ୍ୱାରପାଳ ନନ୍ଦୀ ଥିଲେ । ପ୍ରଭୁ ଗଣନାଥଙ୍କର ଶାପ ପାଇ ମାନବ ଯୋନିରେ ଜନ୍ମ ଗ୍ରହଣ କରିଥିଲେ ।

"ପ୍ରଥମ ଜନ୍ମରେ ମୁହିଁ ହେଲି କାଳିଦାସ
ଦ୍ୱିତୀୟ ଜନ୍ମରେ ମୁହିଁ ମହାକାଳ ଧ୍ୱଂସ ।
ତୃତୀୟ ଜନ୍ମରେ ମୁଁ ସାରଳାଦାସ କବି,
ଆଉ ଜନ୍ମେ ମୁହିଁ ମର୍ତ୍ତ୍ୟମଣ୍ଡଳେ ଜନ୍ମିବି ।"

କବି ମୂଳ ସଂସ୍କୃତ ମହାଭାରତକୁ ଅନୁକରଣ କରି ନାହାନ୍ତି କି ମୂଳ ମହାଭାରତର ବର୍ଣ୍ଣନାକ୍ରମକୁ ପୂର୍ଣ୍ଣଭାବରେ ଅନୁସରଣ କରିନାହାନ୍ତି । ପାଠକକୁ ଏକାଧାରରେ ନିର୍ମଳ ଆନନ୍ଦ ଓ ନୀତିଶିକ୍ଷା ଦେବା ନିମିତ୍ତ ନିଜର ବିପୁଳ କଳ୍ପନା ଶକ୍ତି ପ୍ରୟୋଗ କରି ସେ ଯେଉଁ ଅତୁଳନୀୟ ଗଳ୍ପ-ବିଭବ ସୃଷ୍ଟି କରିଛନ୍ତି ଏବଂ ତାହାକୁ ମୂଳ କଥାବସ୍ତୁ ଓ ବିଭିନ୍ନ ଚରିତ୍ର ସହିତ ଯେପରି ଅତ୍ୟନ୍ତ କୌଶଳରେ ସଂଯୋଜିତ କରିଛନ୍ତି ତାହାର ପଟାନ୍ତର ନାହିଁ । ଏହାହିଁ ସାରଳା ମହାଭାରତର ଗୌରବ ଓ ବିଶେଷତ୍ୱ, ଯାହାକି ଆଉ କୌଣସି ଦ୍ୱିତୀୟ କବି ବା ଲେଖକ ଦାବୀ କରି ନପାରନ୍ତି ।

କେତେକଙ୍କ ମତରେ କବିଙ୍କର ସଂସ୍କୃତଜ୍ଞାନ ନଥିଲା କିମ୍ବା ସଂସ୍କୃତ ମହାଭାରତ ବିଷୟରେ କିଛି ଧାରଣା ନଥିଲା । ମାତ୍ର ତାହା ହୁଏତ ଠିକ୍ ନୁହେଁ । ମହାଭାରତ ବିଷୟବସ୍ତୁର ବିଶାଳତା ହେତୁ ସେ ନିଜେ ଇଚ୍ଛାକରି ତାହା ସଂପୂର୍ଣ୍ଣଭାବେ ଅନୁସରଣ କରି ନଥିଲେ ବୋଲି ଲେଖିଛନ୍ତି ।

"ଅଗାଧ ସାଗର ଏହି ଶ୍ରୀମହାଭାରତ,
ସବୁ ସଞ୍ଚି କହିଲେ ହେବ ଅପ୍ରମିତ ।"

ଫଳରେ ତତ୍କାଳୀନ ସମାଜର ଜନସାଧାରଣଙ୍କର ଆବଶ୍ୟକତା ପୂରଣ-ପାଇଁ ସେ ଏହି ବିରାଟ ଗବେଷଣାତ୍ମକ ରଚନା କରିଯାଇଛନ୍ତି । ସେଥିରେ ସେ କଥାରେ ଯାହା କହନ୍ତି 'ଚିଙ୍କିଣାଳ ଠାରୁ ଢେଙ୍କାନାଳ' ପର୍ଯ୍ୟନ୍ତ

ସମସ୍ତ ସମ୍ଭବ ଅସମ୍ଭବ ବିଷୟ ବର୍ଣ୍ଣନା କରି ଖାଣ୍ଟି ଓଡ଼ିଆ ସମାଜର ଏକ ପରିପୂର୍ଣ୍ଣଚିତ୍ର ଅତି ସରଳ ନିଷ୍କପଟ ଓ ଆଭିଜାତ୍ୟ, ଆତ୍ମଶ୍ଳାଘା ଅହଙ୍କାର ବିବର୍ଜିତ ଭାବରେ ପ୍ରକାଶ କରିଛନ୍ତି । ଏପରିକି ଚିତାକୁଟା କେଳୁଣୀ, ପାକଲାଆମ୍ବ ପତ୍ରରେ ଦାନ୍ତଘସା, ହଳଦିମାରି ନୂଆଳୁଗା ପିନ୍ଧିବା, ରୋଗବ୍ୟାଧି ହେଲେ ଗ୍ରାମ ଦେବତା ପାଖରେ ଛାଗ ମେଷ ବଳିଦେବା, ଭୂତପ୍ରେତ ଗୁଣିଆ ଗାରୁଡ଼ିମନ୍ତ୍ର ଓ ରାତିରେ ସାପ ନାଁ ନ ଧରିବା, ତୁଳସୀ ଚଉରା ପୂଜିବା ଷଠି ଦୁର୍ଗା ପୂଜିବା, ଅକାମାଭଇ ସ୍ନାନ, ଚକୁଳଆଠଣ୍ଡା ଭିକମାଗିବା, ଗାଁ ହାଟବାଟ. କଣା ବିକା ଇତ୍ୟାଦି ତଥା କଥିତ ହେୟ ଅପାଙ୍କ୍ତେୟ ବିଷୟ ମଧ୍ୟ ତାଙ୍କର ଲେଖନୀ ମୁନରୁ ବାଦ୍ ଯାଇନାହିଁ । ପୁଣି ସବୁ ବିଷୟରେ ତିଥି ବାର, ବେଳା, ନକ୍ଷତ୍ର ଗଣନା-ଜ୍ୟୋତିଷ ଚର୍ଚ୍ଚାର ସୀମା ନାହିଁ । ସାହିତ୍ୟ ଯେ ସମାଜଠାରୁ ଅଭିନ୍ନ ଏବଂ ଜନ ଜୀବନର ପ୍ରତିବିମ୍ବ ଏହା ସାରଳାଦାସଙ୍କର ରଚନାରେ ପ୍ରମାଣିତ ହୋଇଛି । ସୁତରାଂ ସେ ଯଥାର୍ଥରେ ଗଣକବି ଓ ତାଙ୍କର ସାହିତ୍ୟ ଗଣସାହିତ୍ୟ ।

ଉତ୍କଳର ଜାତୀୟ ଜୀବନକୁ ବଳିଷ୍ଠ କରି ଗଢିବାର ମହତ୍ ଉଦ୍ଦେଶ୍ୟ ନେଇ କବି ଲେଖନୀ ଚାଳନା କରିଥିବାର ମନେହୁଏ । ତେଣୁ ମନୁଷ୍ୟ ଜୀବନର କୌଣସି ବିଭାବକୁ ସେ ବାଦ୍ ଦେଇନାହାନ୍ତି । ସ୍ତ୍ରୀ ମାନଙ୍କର ମୃତ୍ତୁପାଳନ ଓ ସହବାସ ବିଧିଠାରୁ ଆରମ୍ଭ କରି ଭୀଷ୍ମଙ୍କର ଯୁଧିଷ୍ଠିରଙ୍କୁ ଉପଦେଶ ଛଳରେ ରାଜ୍ୟଶାସନ ଓ ପ୍ରଜାପାଳନ ବିଧି ଏବଂ ଭାରତୀୟ ଆର୍ଯ୍ୟସଭ୍ୟତାର ପ୍ରତୀକ କୃଷି ଓ ଗୋପାଳନ ବିଧିପ୍ରତି ମଧ୍ୟ ସେ ସହଜ ସରଳ ନିର୍ଦ୍ଦେଶ ପ୍ରଦାନ କରିଛନ୍ତି । ଯଥା—

କୃଷିକାର୍ଯ୍ୟ ଜନେ ନ ତର୍ଣ୍ଣିବୁ ଧନ,
ଗୋଚର ନିମନ୍ତେ ଛାଡ଼ିଦେବୁ ବହୁସ୍ଥାନ ।
କୃଷିକାର୍ଯ୍ୟକୁ କଦାପି ଅର୍ଥ ନ ତର୍ଣ୍ଣିବୁ,
ନିର୍ଦ୍ଧୋଷୀ ଜନକୁ ସଦା କ୍ଷମା ଆଚରିବୁ ।
ଗୁଣୀଗଣ ଜାଣି କରୁଥିବୁ ପୂଜା,
କବିମାନଙ୍କୁ କୃପଣ ନ ହୋଇବୁ ରାଜା ।

ପୁଣି ହରିସାହୁ ପ୍ରସଙ୍ଗରେ କବିଙ୍କର ବାଣିଜ୍ୟ ବିଧି ନିର୍ଦ୍ଦେଶ ହେଉଛି :
'ଲାଭ ପାଇଁ କଦାଚ ନ କହିବ ମିଥ୍ୟା ।'

କଵି ବାସ୍ତବ ଚରିତ୍ର ଚିତ୍ରଣକୁ ଦାର୍ଶନିକ ତତ୍ତ୍ୱ ଅପେକ୍ଷା ଅଧିକ ପ୍ରାଧାନ୍ୟ ଦେଇଛନ୍ତି । ତେଣୁ ମୂଳ ମହାଭାରତର 'ଭଗବତ୍ ଗୀତା'ର ପ୍ରସଙ୍ଗ ଅଳ୍ପ କେତେ ଧାଡ଼ିରେ ଶେଷକରି ଦେଇଛନ୍ତି । ତାଙ୍କର ରଚନାରେ ଆମେ "ଋଦ୍ଧି ମାନୁଷ" ଅପେକ୍ଷା ଜୀଅନ୍ତା ମଣିଷର ସ୍ପର୍ଶ ବିଶେଷଭାବେ ଅନୁଭବ କରିଥାଉଁ । ତେଣୁ ଦ୍ରୌପଦୀ ପରମ ପତିବ୍ରତା ରମଣୀ ହେଲେହେଁ ମନସ୍ତତ୍ତ୍ୱ ସମ୍ମତ ମନୁଷ୍ୟର ଏକ ଧ୍ୱଜ ଯୌନସମ୍ପର୍କ କାମନାକୁ ନେଇ 'ସତ୍ୟଆମ୍ଭ' ପ୍ରସଙ୍ଗରେ ସତ୍ୟ ପ୍ରକାଶ କରି କହିଛନ୍ତି ।

'ଯଦ୍ୟପି ମୋହର ପତିଛନ୍ତି ପାଞ୍ଚଜଣ,
କର୍ଣ୍ଣ ସୌନ୍ଦର୍ଯ୍ୟରେ ମୋର ଭୁଲିଯାଏ ମନ । "

ଅଥଚ 'ଜଣେ ନାରୀକୁ ପାଞ୍ଚସ୍ୱାମୀ' ଘଟଣାରେ ପାଠକ ହୃଦୟକୁ ନିର୍ମଳ କରିଦେବା ପାଇଁ ବ୍ୟାସଦେବଙ୍କ ମୁଖରେ ଦ୍ରୌପଦୀଙ୍କ ପୂର୍ବଜନ୍ମ ବୃତ୍ତାନ୍ତ ବର୍ଣ୍ଣନା କରିଛନ୍ତି ଏବଂ ଦ୍ରୌପଦୀ ଯେ ଅଗ୍ନିସମ୍ଭବା ଓ ସେ ପଞ୍ଚ ସ୍ୱାମୀଙ୍କର ଉପଭୋଗ୍ୟା ହେଲେ ମଧ୍ୟ ପ୍ରତ୍ୟହ ଅଗ୍ନିସ୍ନାନ କରି ଶୁଦ୍ଧ ନୂତନ ଶରୀର ଧାରଣ କରନ୍ତି ଏହା ଉଲ୍ଲେଖ କରିଛନ୍ତି ।

କବିଙ୍କର ଚରିତ୍ର ଚିତ୍ରଣରେ ବାସ୍ତବତା ସହିତ ଆଦର୍ଶ ବର୍ଣ୍ଣନାର ମଧ୍ୟ ଅଭାବ ନାହିଁ । ସାରଳାଙ୍କର ଯୁଧିଷ୍ଠିର, କ୍ଷମା ଓ ସହିଷ୍ଣୁତାର ଏକ ଜୀବନ୍ତ ପ୍ରତିମୂର୍ତ୍ତି । କୌରବମାନେ ପାଣ୍ଡବଙ୍କ ପ୍ରତି ଚରମ ନିଷ୍ଠୁରତା ଓ ହିଂସା ଆଚରଣ କରିବା ସଙ୍ଗେ ସଙ୍ଗେ ବିଧି ବିଡ଼ମ୍ବନାରେ ବାରମ୍ବାର ମୃତ୍ୟୁମୁଖରେ ପତିତ ହୋଇଛନ୍ତି । ଥରେ ପାଣ୍ଡବାସୁର ହସ୍ତରେ ଓ ଆଉଥରେ ବିରୂପାକ୍ଷ ରାକ୍ଷସ ହସ୍ତରେ ସମୂଳ ନିଧନ ହୋଇଛନ୍ତି । ମାତ୍ର ଦୟା, କ୍ଷମା ଓ ସହିଷ୍ଣୁତାର ଅବତାର ଧର୍ମନନ୍ଦନ ଯୁଧିଷ୍ଠିରଙ୍କର ଇଚ୍ଛାହେତୁ ପୁନର୍ଜୀବନ ଲାଭ କରିଛନ୍ତି । ଅଥଚ ପାଣ୍ଡବଙ୍କ ପ୍ରତି ସେମାନଙ୍କର ଶତ୍ରୁ ମନୋଭାବର କୌଣସି ପରିବର୍ତ୍ତନ ହୋଇନାହିଁ । ଭୀମ ଅର୍ଜ୍ଜୁନ ଯେତେବେଳେ ପ୍ରତିବାଦ କରି କହିଛନ୍ତି, "ଆମର ଶତ୍ରୁକୁ ପରି ମାରିଲୁ, ଭଲହେଲା" ବୋଲି କହିଛନ୍ତି ଯୁଧିଷ୍ଠିର ସେମାନଙ୍କୁ ବୁଝାଇଛନ୍ତି "ବାବୁ ପର ହିଂସ୍ରକକୁ ତ ଦୈବ ଦଣ୍ଡୁଛି । ଆମେ କାହିଁକି ଆମର ଭାଇ ବିରାଦରଙ୍କୁ ସାହାଯ୍ୟ କରିବାର ପରମ କର୍ତ୍ତବ୍ୟ ପାଳନରୁ ବିରତ ହେବା ?"

ସାରଳା ଦାସଙ୍କର ଯୁଧିଷ୍ଠିର ଚରିତ୍ରରେ ଅନୁପ୍ରାଣିତ ପାଠକ ନିଜ ହୃଦୟର କ୍ରୋଧ, ପ୍ରତିହିଂସା ଆଦି ରିପୁମାନଙ୍କୁ ବହୁ ପରିମାଣରେ ଦମନ କରିପାରିବା ସମ୍ଭବ ମନେହୁଏ ।

ପୁଣି ଆଦର୍ଶ ଚରିତ୍ର ହେବା ସଙ୍ଗେ ସଙ୍ଗେ ସାରଳା ଦାସଙ୍କ ଯୁଧିଷ୍ଠିର ଅନ୍ୟାନ୍ୟଚରିତ୍ର ମାନଙ୍କ ପରି ରକ୍ତ ମାଂସ ଧାରୀ ଜଣେ ମନୁଷ୍ୟ । ସେ ଦେବତା ନୁହନ୍ତି । ତାଙ୍କୁ ଅନୁକରଣ କରି ତାଙ୍କରି ଆଦର୍ଶରେ ନିଜକୁ ଗଢ଼ିବା ଜଣେ ମନୁଷ୍ୟ ପକ୍ଷରେ ସମ୍ଭବ । ସାରଳାଙ୍କ ଯୁଧିଷ୍ଠିର ଚରମ ପରିସ୍ଥିତିରେ ମଧ୍ୟ ଜଣେ ସାଧାରଣ ରକ୍ତ ମାଂସଧାରୀ ପରି ବ୍ୟବହାର କରିଛନ୍ତି । ଯୁଦ୍ଧ କ୍ଷେତ୍ରରେ ଶଲ୍ୟ ଯେତେବେଳେ ତାଙ୍କୁ ରଥରୁ ଚୁଟିଧରି ଟାଣିଆଣି ଗୃପୁଡ଼ା ମାରିଲେ, ମହାସହିଷ୍ଣୁ, କ୍ଷମାଶୀଳ ଯୁଧିଷ୍ଠିର ଜୀବନରେ ହୁଏତ ପ୍ରଥମ ଥର ପାଇଁ କ୍ରୋଧାନ୍ୱିତ ହେଲେ ଏବଂ ତାଙ୍କ ଆଖିରୁ ନିଆଁ ବାହାରିଲା । ସେହି ନିଆଁରେ ଶଲ୍ୟ ଜଳିଗଲେ ।

"ଯୁଧିଷ୍ଠିର ବୋଇଲେ ମାମୁ ଜଳିଲୁ ଜଳିଲୁ
ଜଳୁ ଜଳୁ ବୋଲି କହୁଁ ଶଲ୍ୟ ଜଳିଗଲୁ ।"

ଏହା ବ୍ୟତୀତ ସାରଳା ଦାସଙ୍କ ରଚନାରେ ଦୁଷ୍ଟ ଚରିତ୍ରମାନେ ନିଜକୃତ କର୍ମଫଳର ଯେପରି ଭୟାବହ ପରିଣତି ଭୋଗ କରିଛନ୍ତି ତାହା ପାଠକକେ ଷଡ଼ରିପୁ ଗ୍ରସ୍ତ ମନୁଷ୍ୟ ସଂସାରର ନାନା ପ୍ରଭାବ ପ୍ରଲୋଭନ ମଧ୍ୟରେ ସୁଦ୍ଧା ସତର୍କ ହେବାକୁ ନିଶ୍ଚିତ ଭାବେ ଚେଷ୍ଟା କରିବ । ଦୁରାଗ୍ରହୀ ଦୁର୍ଯୋଧନର ଶେଷ ପରିଣତି ସ୍ୱରୂପ ନିଜ ମୃତ ପୁତ୍ରର ଶବ ଉପରେ ରକ୍ତନଦୀ ସନ୍ତରଣ ଚିତ୍ର କି କରୁଣ, କି ମର୍ମସ୍ପର୍ଶୀ ! ଗାନ୍ଧାରୀ ନିଜ ପୁତ୍ରହନ୍ତା ଭୀମକୁ ଜାଳିଦେବା ଉଦ୍ଦେଶ୍ୟରେ ଆଖିରୁ ଅନ୍ଧ ପୁଟୁଳୀ କାଢିଲା ବେଳକୁ ନିଜର ବଞ୍ଚିରହିଥିବା ଏକମାତ୍ର ପୁତ୍ର ଜୁଜୁତ୍ସୁ ଜଳିଯିବା ବିଧିର କି ବିଡ଼ମ୍ବନା ! ମୂଳ ମହାଭାରତରେ ନଥିବା ଏପରି ଅନେକ ଉଦାହରଣରେ ସାରଳାଙ୍କ ମହାଭାରତ ପରିପୂର୍ଣ୍ଣ ।

କେତେକଙ୍କ ମତରେ ମୂଳରେ ନଥିବା ବେଲ୍ଲଳସେନ ଚରିତ, ଶ୍ରୀକୃଷ୍ଣଙ୍କର ତାହାପ୍ରତି ଚରମ ଅନ୍ୟାୟ ଓ ନିଷ୍ଠୁରତା, ପୁଣି ଅଭିମନ୍ୟୁ ବଧପାଇଁ ଶ୍ରୀକୃଷ୍ଣଙ୍କର ଚକ୍ରାନ୍ତ ମନରେ ଘୃଣା ଉଦ୍ରେକ କରେ ; କିନ୍ତୁ

କାହିଁକି ? ଅନ୍ୟ ଭାବରେ ବିଚାର କଲେ ଏସବୁ ଘଟଣା ତ ଚନ୍ଦ୍ରଧାରୀ ଭଗବାନ ଶ୍ରୀକୃଷ୍ଣଙ୍କର ମହିମା ପ୍ରଖ୍ୟାପକ । ସାରଳା ଦାସଙ୍କ ଆବିର୍ଭାବ ବେଳକୁ ଗୋରଖନାଥଙ୍କର 'ଶିଶୁବେଦ' ରଚିତ ହୋଇ ସାରିଥିବ ବୋଲି ମନେହୁଏ । ତାହାଁର ବର୍ଣ୍ଣନାନୁଯାୟୀ ଏ ବିଶ୍ୱ ବ୍ରହ୍ମାଣ୍ଡ ଭଗବାନଙ୍କର ଏକ ଖେଳଘର । ଭଗବାନ ଗୋଟିଏ ଚପଳମତି ଶିଶୁର ମନୋଭାବ ନେଇ ଏ ବିଶ୍ୱ ବ୍ରହ୍ମାଣ୍ଡକୁ କ୍ଷଣେ ଭାଙ୍ଗନ୍ତି, କ୍ଷଣେ ଗଢ଼ନ୍ତି । ସବୁ ଭଙ୍ଗା ଗଢ଼ାରେ ତାଙ୍କର ଇଚ୍ଛା, ତାଙ୍କର ହସ୍ତ ନିହିତ । ତାଙ୍କର ଇଚ୍ଛାରେ ଅଠର ଦିନର ଲୀଳା ଖେଳାକୁ ଏକ ମୁହୂର୍ତ୍ତରେ ସାରିଦେବାକୁ ସେ ବେଲାଳସେନକୁ କାହିଁକି ସୁଯୋଗ ଦିଅନ୍ତେ ? ଏହାଦ୍ୱାରା ଯେ ଲୋକସମାଜ ବହୁ ଶିକ୍ଷାରୁ ବଞ୍ଚିତ ହୁଅନ୍ତା । ଅଭିମନ୍ୟୁ ବଧ ପ୍ରସଙ୍ଗରେ ଲେଖାଅଛି ଯେ ତାର ଚଉଦ ବର୍ଷ ପୂର୍ବଦିନ ସେ ନମଲେ ଶ୍ରୀକୃଷ୍ଣ ଅର୍ଜ୍ଜୁନକୁ ମାରିବେବୋଲି ଶାପଥିଲି । ଅର୍ଜ୍ଜୁନ ଯୁଦ୍ଧଭୂମିରେ ଉପସ୍ଥିତ ଥିବା ପର୍ଯ୍ୟନ୍ତ ଅଭିମନ୍ୟୁକୁ କେହି ମାରିବା ଅସମ୍ଭବ । ତେଣୁ ଶ୍ରୀକୃଷ୍ଣ କୌଶଳ କରି ଅର୍ଜ୍ଜୁନକୁ ଯୁଦ୍ଧଭୂମିରୁ ଅନ୍ତର କରିଦେଲେ ଏବଂ ମାୟା ମମତା ଶୂନ୍ୟ ନିର୍ବିକାର ଚିତ୍ତରେ ନିଜର ଭଣଜା ଅଭିମନ୍ୟୁକୁ ଜୟଦ୍ରଥ ହାତରେ ବଧ କରାଇଲେ । ପୁଣି ଏହାଦ୍ୱାରା ଅର୍ଜ୍ଜୁନଙ୍କଠାରେ ମହାକ୍ରୋଧ ଉଦ୍ରେକ କରାଇ ତାଙ୍କରି ହାତରେ ଚକ୍ରାନ୍ତ କରି ଜୟଦ୍ରଥକୁ ତତ୍ ପରଦିନ ବଧ କରାଇଲେ । କୌରବ ପାଣ୍ଡବ ପ୍ରସଙ୍ଗରେ 'ଚକ୍ରୀ'ଙ୍କର ବିଭିନ୍ନ ଚକ୍ରାନ୍ତ ପରି ଏସବୁ ମଧ୍ୟ ଗୋଟିଏ ଗୋଟିଏ ଚକ୍ରାନ୍ତ । ସବୁ ଚକ୍ରାନ୍ତର ମୂଳରେ ରହିଛି ସେହି ଏକମାତ୍ର ଉଦ୍ଦେଶ୍ୟ—

"ପରିତ୍ରାଣାୟ ସାଧୂନାଂ ବିନାଶାୟ ଚ ଦୁଷ୍କୃତାମ୍
ଧର୍ମସଂସ୍ଥାପନାର୍ଥାୟ ସମ୍ଭବାମି ଯୁଗେ ଯୁଗେ ।"

—ଶ୍ରୀମଦ୍ ଭଗବତ୍ ଗୀତା—

ସାରଳା ଦାସଙ୍କର ସନ୍ଧାନୀ ଦୃଷ୍ଟି ଓଡ଼ିଆ ସମାଜରେ ପ୍ରତ୍ୟେକ ସ୍ତରକୁ ଭେଦ କରିଛି । ତେଣୁ ସମାଜ ଓ ଲୋକ ପ୍ରକୃତିର ଏକ ପରିପୂର୍ଣ୍ଣ ବ୍ୟାପକ ଚିତ୍ର ପ୍ରଦାନ କରିବା ସଙ୍ଗେ ସଙ୍ଗେ ସେ ଅନେକ ଆପ୍ତବାକ୍ୟ ଓ ପ୍ରବଚନ ସୃଷ୍ଟି କରିଛନ୍ତି ଯାହାକି ଆଜିସୁଦ୍ଧା ଲୋକ ମୁଖରେ କଥା ଉଚ୍ଚାରିତ ହୋଇଥାଏ । ଯଥା—ଗଙ୍ଗା କହିଲେ ଥିବ,

ଗାର୍ଗୀ କହିଲେ ଯିବ ; ଉଅଁାସୀ କନ୍ୟାକୁ ସାହାଡ଼ା ବର ; ଝିମିଟି ଖେଳରୁ ମହାଭାରତ ଚୂଳା ମୁହାଁ କାଙ୍କ, ତୁଳସୀ ବଣ ବାଘ, ଦରକାର କେବଳ ଭଗବାନ ଗଧ ପାଦ ଧରିବା, ପହିଲି ଯୁଦ୍ଧରେ ଭୀମ ହାରେ, କୋକୁଆ ଭୟ; କର୍ଣ୍ଣ ମଲେ ପାଞ୍ଚ; ଅର୍ଜୁନ ମଲେ ପାଞ୍ଚ, ଗୋଲକ ପୁତ୍ର, ଗାନ୍ଧାରୀକୁ ବର ନାହିଁ କ ଧୃତରାଷ୍ଟ୍ରକୁ କନ୍ୟା ନାହିଁ ଇତ୍ୟାଦି ।

## ପରବର୍ତ୍ତୀ ରଚନାରେ ପ୍ରଭାବ :

ପୂର୍ବରୁ ସୂଚିତ ହୋଇଅଛି ଯେ ଓଡ଼ିଆ ସାହିତ୍ୟ ଇତିହାସରେ ସାରଳା ଯୁଗର ସ୍ୱାଭାବିକ ପରିଣତି ସ୍ୱରୂପ ୧୬ଶ ଶତାବ୍ଦୀରେ ପଞ୍ଚଶଖା ଧର୍ମ ଓ ସାହିତ୍ୟର ଅଭ୍ୟୁଦୟ ହୋଇଥିଲା । ସାରଳାଙ୍କର ଅଗ୍ନିଦେବତାଙ୍କ ମୁଖରେ ବ୍ୟକ୍ତ ପିଣ୍ଡ-ବ୍ରହ୍ମାଣ୍ଡ ତତ୍ତ୍ୱ, ସଗୁଣ-ନିର୍ଗୁଣର ଏକୀକରଣ ଇତ୍ୟାଦି ପଞ୍ଚସାଖା ସାହିତ୍ୟରେ ବିସ୍ତୃତ ଭାବେ ପରିପୁଷ୍ଟିଲାଭ କରିଅଛି । ଏହାଛଡ଼ା ମଧ୍ୟଯୁଗର କବିସମ୍ରାଟ ଉପେନ୍ଦ୍ର ଭଞ୍ଜ ଓ ଅନ୍ୟମାନେ ଏବଂ ଆଧୁନିକ ଯୁଗର ଶ୍ରେଷ୍ଠ କବିବର ରାଧାନାଥ ପ୍ରମୁଖ ସାରଳା ଦାସଙ୍କ-ଠାରେ ବହୁଳଭାବେ ଋଣୀ । ଗୋଟିଏ ଦୁଇଟି ମାତ୍ର ଉଦାହରଣ ନିମ୍ନରେ ପ୍ରଦତ୍ତ ହେଲା ।

ଉପେନ୍ଦ୍ର—"ନୁହେ ଉଭ ଖର୍ବ ଅତି, କଥାଏ ନୋହେ ଯୁବତୀ
କ୍ଷୀଣ ନୋହି ପୀନ ନୋହିଁ, ଏମନ୍ତ ଦେହୀ ଯେ । ଲାବଣ୍ୟବତୀ
ସାରଳା—ଶୃଙ୍ଗନେତ୍ରେଣ ଅବେଶ୍ଣ ପଦ୍ମ ଫୁଟଇ କାଞ୍ଚନ
ନୁହଇ ଅଙ୍ଗତା ଉଚ୍ଚମିତ ମଧ୍ୟମାନ । ଆ: ପ :

ସାରଳା ମହାଭାରତର 'ଦୁର୍ଯ୍ୟୋଧନର ରକ୍ତନଦୀ ସନ୍ତରଣ' ଅବଲମ୍ବନରେ କବିବର ରାଧାନାଥ ନିଜର "ଦୁର୍ଯ୍ୟୋଧନର ରକ୍ତନଦୀ ସନ୍ତରଣ" ପଦ୍ୟ ରଚନା କରିଛନ୍ତି । ସାରଳାଙ୍କର ରଚନାରେ ନିଜର ଏକମାତ୍ର ତରୁଣ ସୁକୁମାର ପୁତ୍ର ଲକ୍ଷ୍ମଣ କୁମାରର ଶବକୁ କୋଳାଗ୍ରତ କରି ଦୁର୍ଯ୍ୟୋଧନଙ୍କର ଆକୁଳ ବିଳାପ ଅତ୍ୟନ୍ତ ହୃଦୟସ୍ପର୍ଶୀ ।

ମୃଗ ନାଭି କସ୍ତୁରୀ ମୁଁ ତୋ ଦେହେ ଲେପଇଁ
ଏବେ ପୋତି ଯାଉଅଛୁ ମାଟିରେ ମିଶାଇ ।
× × ×
ମୋହର ପରାଏ ପିତା ତୋର ଆଉ ନୋହୁ,
ତୋହର ପରାଏ ପୁତ୍ର ଜନ୍ମେ ଜନ୍ମେ ହେଉ ।

ଏଥିରେ ଲକ୍ଷ୍ୟ କରିବାର କଥା ଯେ "ମୋହର ପରାଏ ପିତା ତୋର ଆଜ ନହେଲେ ତୋହର ପରାଏ ପୁତ୍ର ମୋର ଆଉ ହେବ କପରି ?" ସ୍ଥୂଳ ଦୃଷ୍ଟିରେ ଏହା ହୁଏତ ଅର୍ଥହେବ । ମାତ୍ର ଏହି ତଥାକଥିତ ଅର୍ଥହୀନ ପଦଟିରେ ପୁତ୍ର ବିୟୋଗ ବିଧୁର ହତଭାଗା ପିତାର ଅସହ୍ୟ ମର୍ମ-ବେଦନାର ଯେଉଁ କରୁଣ ଅଭିବ୍ୟକ୍ତି ପ୍ରକାଶିତ ହୋଇଛି ତାହା ସହୃଦୟ ପାଠକ ଅନ୍ତରର ଗମ୍ଭୀରତମ ପ୍ରଦେଶସ୍ଥ ସୂକ୍ଷ୍ମକୋମଳ ତନ୍ତ୍ରୀକୁହିଁ ଆଘାତ କରିଥାଏ । ତେଣୁ ପାଶ୍ଚାତ୍ୟର ଶିକ୍ଷାରେ ପଣ୍ଡିତ ପ୍ରବର ରାଧାନାଥଙ୍କ ପରି ପ୍ରଖ୍ୟାତ କବି ମଧ୍ୟ ଏହି ପଂକ୍ତିକୁ ନିଜ ରଚନାରେ ବିଭିନ୍ନ ସ୍ଥାନରେ ଆକ୍ଷରିକଭାବେ ଗ୍ରହଣ କରିଯାଇଛନ୍ତି । ଯଥା—

୧ । କର୍ପୂର ଚନ୍ଦନ ବୋଲି ହେଉ ଯେଉଁ ଦେହେ
ସେହି ଦେହ ଏବେ ଆହା ଆପ୍ଲୁତ ଶୋଣିତେ ।
× × × ×
କେବେହେଁ ନହେଉ ତୋର ମୋହ ପରି ପିତା,
ତୋହ ପରି ପୁତ୍ର ହେଉ ଜନମେ ଜନମେ ।

୨ । ଯାଉଛି ମା, ମୋତେ ଜନ୍ମେ ଜନ୍ମେ ମିଳୁ
ତୋ ପରି ଜନମୀ ଭବେ,
ମୋ ପରି ଦୁଃଖିନୀ ସୁତା ପୁଣି ଜାତ
ନ ହେଉ ତୋର ଗରଭେ

(ପାର୍ବତୀ)

—*—

* ଏହି ଗ୍ରନ୍ଥ ରଚନାରେ 'ସାଂସ୍କୃତିକ ବିଭାଗ' ପ୍ରକାଶିତ ସାରଳା ମହାଭାରତ ଏବଂ ଅଦ୍ୟାବଧି ଇଂରାଜୀ ଓ ଓଡ଼ିଆରେ ପ୍ରକାଶିତ ବିଭିନ୍ନ ସମାଲୋଚନା ପ୍ରବନ୍ଧ ଓ ପୁସ୍ତକାବଳୀର ସହାୟତା ଗ୍ରହଣ କରାଯାଇଛି ।

—ଲେଖକ—

# ସାରଳା ମହାଭାରତ

## ମହାରାଜା ଶାନ୍ତନୁ ।

କୁରୁବଂଶୀ ମହାରାଜା ଶାନ୍ତନୁ ଯେପରି ଧାର୍ମିକ ସେପରି ବୀର ଥିଲେ । ପାତାଳରେ ରହି ସେ ଶିବ ପୂଜା କରୁଥିଲେ । ଭଗବାନ୍ ଶଙ୍କରଙ୍କ ଦୟାରେ ସେ ଦିବ୍ୟଦୃଷ୍ଟି ଲଭି କରିଥିଲେ । ସେହି ଦିବ୍ୟଦୃଷ୍ଟି ବଳରେ ପାତାଳରେ ଥାଇ ମଧ ସେ ସାରା ପୃଥିବୀକୁ ଦେଖି ପାରୁଥିଲେ ଓ ଶାସନ କରୁଥିଲେ । ଯଦି କେବେ କୌଣସି ଅସୁର ପୃଥିବୀରେ ଉତ୍ପାତ କଲା, ଲୋକଙ୍କୁ କଷ୍ଟଦେଲା, ତେବେ ଶାନ୍ତନୁ ସେହି ପାତାଳରେ ଥାଇ ମନ୍ତ୍ର ବଳରେ ଶର ମାରୁଥିଲେ । ଯେତେ ବଡ଼ ଅସୁର ହେଲେ ମଧ ସେହି ଶର ମାଡ଼ରେ ସେ ସଙ୍ଗେ ସଙ୍ଗେ ମରି ଢଳି ପଡ଼ୁଥିଲା ।

ସ୍ୱର୍ଗର ରଜା ଇନ୍ଦ୍ର ଶାନ୍ତନୁଙ୍କର ଖରି ସାଙ୍ଗ ଥିଲେ । ତେଣୁ ପୃଥିବୀରେ ବେଳକାଳ ଜାଣି ବର୍ଷା ହେଉଥିଲା । ଧୋଇ, ମରୁଡ଼ି ଆଦୌ ନଥିଲା । ଲୋକମାନେ ଖାଇପିଇ ବଡ଼ ସୁଖରେ ଥିଲେ ।

ବହୁକାଳ ଶିବ ପୂଜା କଲାପରେ ଶିବ ପ୍ରସନ୍ନ ହୋଇ ଶାନ୍ତନୁଙ୍କୁ ହିଁ ଛାମୁ ଈଶ୍ୱର ପଦ ଦେଲେ । ଶାନ୍ତନୁଙ୍କ ଦେହ ଶିବଙ୍କପରି ତେଜୀୟାନ୍ ହୋଇଗଲା । ପୃଥିବୀକୁ ଫେରିଯାଇ ପ୍ରଜାମାନଙ୍କୁ ପାଳନ କରିବାକୁ ଶିବ ତାଙ୍କୁ ଆଦେଶ ଦେଲେ । ଶାନ୍ତନୁ ପୃଥିବୀକୁ ଫେରିଆସି ପୁଣି ରଜାହେଲେ ।

ପୃଥିବୀରେ ଗଙ୍ଗାଦେବୀ ନର୍ଘାତ ରାଜାଙ୍କର ଝିଅ ହୋଇ ଜନ୍ମ ହୋଇ ଥାନ୍ତି । ତାଙ୍କୁ ବିଭାଦେବା ନିମିତ୍ତ ଉପଯୁକ୍ତ ପାତ୍ରଟିଏ ନପାଇ ରାଜା ବଡ଼ ଚିନ୍ତାରେ କାଳ କାଟୁଥାନ୍ତି ।

"ଅବିଭାପୁଣି ଦୋହିତା ପିତାଘରେ ହୋଇଲେ ରଜବତୀ,
ଯେତେକୋଇଶ ପୁରୁଷ ପର୍ଯ୍ୟନ୍ତେ ପିତୃଲୋକଙ୍କୁ ଅଗତି ।"

ଗଙ୍ଗାଦେବୀ ବାପାଙ୍କର ମନୋଦୁଃଖ ଜାଣି ଦିନେ କହିଲେ, "ବାପା, ତୁମେ ମୋ ପାଇଁ ବ୍ୟସ୍ତ ହୁଅନାହିଁ । ଭଗବାନ ସଦାଶିବ ହେଉଛନ୍ତି ମୋର ଜନ୍ମଜନ୍ମାନ୍ତରର ସ୍ୱାମୀ । ତାଙ୍କ ଛଡ଼ା ମୁଁ ଅନ୍ୟ କାହାକୁ ବିଭାହେବି ନାହିଁ । ତାଙ୍କର ଭେଟ ପାଇବା ପର୍ଯ୍ୟନ୍ତ ମୁଁ ତୁମଘରେ ଶ୍ରେଷ୍ଠ ଝିଅଟିଏ ହୋଇ ରହିଥିବି । କଦାପି ବଡ଼ ହେବିନାହିଁ । ତୁମେ ମନରୁ ଚିନ୍ତା ଛାଡ଼ ।" ନର୍ଘାତ ରାଜା ଏହା ଶୁଣି ନିଶ୍ଚିନ୍ତ ହେଲେ ।

କେତେକାଳ ବିତିଗଲା । ଦିନେ ହଠାତ୍ ନଦୀ କୂଳରେ ଶାନ୍ତନୁଙ୍କ ସହିତ ଗଙ୍ଗା ଦେବୀଙ୍କର ଭେଟ ହୋଇଗଲା । ଈଶ୍ୱରଙ୍କ ଅଂଶରେ ଜାତ ଶାନ୍ତନୁଙ୍କୁ ଗଙ୍ଗାଦେବୀ ପତି ରୂପରେ ବରଣ କଲେ । ବିବାହ ବେଦୀ ଉପରେ ଶାନ୍ତନୁ ଗଙ୍ଗାଦେବୀଙ୍କର ସବୁ ଆବେଦନ ସହିବାକୁ ଶପଥ କଲେ । 'ଗଙ୍ଗା ବୋଇଲେ ଥିବି, ଗାଙ୍ଗୀ ବୋଇଲେ ଯିବି ।' ଅର୍ଥାତ୍ ତାଙ୍କ ଇଚ୍ଛାର ଟିକିଏ ବିରୋଧ କଲେ ବା ତାଙ୍କ କାମର ପ୍ରତିବାଦ କଲେ ସେ ସଙ୍ଗେ ସଙ୍ଗେ ଘର ଛାଡ଼ି ଚାଲିଯିବେ । ଆଉ ଫେରିବେ ନାହିଁ । ଏଇ ସର୍ତ୍ତ ରହିଲା ।

ବିବାହ ପରେ କେତେ ବର୍ଷ ମହା ଆନନ୍ଦରେ କଟିଲା । ତା ପରେ ବାହାରିଲା ଗଙ୍ଗାଙ୍କର ଦୁଷ୍ଟାମୀ । ଶାନ୍ତନୁ ତ ମହା ଧାର୍ମିକ ପୁରୁଷ । ବର୍ଷସାରା ଦେବପୂଜା, ବ୍ରତ ଉପବାସ ଆଦି କରୁଥାନ୍ତି । ଗଙ୍ଗାଦେବୀଙ୍କର ଏ ସବୁ ସହ୍ୟ ହେଲା ନାହିଁ । ଠିକ୍ ବ୍ରତ ଉପବାସ ଦିନ ଦେଖି ସ୍ୱାମୀଙ୍କ କୋଳରେ ପଶିଯାଇ ତାଙ୍କୁ କୁଣ୍ଢାଇ ଧରନ୍ତି ଓ ମିଳନ ପାଇଁ କଚାଳି କରନ୍ତି । ଗଙ୍ଗା ଦେବୀ ତ ସହଜେ ଅନିନ୍ଦ୍ୟ ସୁନ୍ଦରୀ । ତହିଁରେ ପୁଣି ବିବାହ ବେଳେ ତାଙ୍କ ସହିତ ସର୍ତ୍ତ ହୋଇଛି ଯେ ସ୍ୱାମୀ ତାଙ୍କର ସବୁ ଇଚ୍ଛା ପୂରଣ କରିବେ । କୌଣସି କଥାରେ ବାଧା ଦେବେନାହିଁ । ଏଥିକୁ ଶାନ୍ତନୁ ହିତରି ନାଗର । ଗଙ୍ଗାଙ୍କ ସଙ୍ଗେ ମାତି ଦିନେ ସେ ସବୁ ବ୍ରତ ଉପବାସ

ଛାଡ଼ିଲେ । ବ୍ରତ ଉପବାସ ଦିନ ଦେଖି ଗଙ୍ଗାଙ୍କର ଯେତେବେଳ ଦୁଷ୍ଟାମୀ ବାହାରେ । ଅନ୍ୟ ଦିନ ସ୍ୱାମୀ ଯେତେ ଆଦରରେ ଡ଼ାକିଲେ ମଧ୍ୟ ତାଙ୍କର ପାଖ ମାଡ଼ନ୍ତି ନାହିଁ । କଥା କଥାକେ ସେ ଶାନ୍ତନୁଙ୍କ ଉପରେ ବିରକ୍ତ ହୁଅନ୍ତି । ବହୁତ କଟୁ କଥା କହନ୍ତି । ଦିନେ ସ୍ୱାମୀଙ୍କର ପୂଜା ସାମଗ୍ରୀ; ପୂଜାଲୁଗା, ଦଣ୍ଡକମଣ୍ଡଳୁ, ଶ୍ରୁବ ସବୁ ଚୁଲିରେ ପୁରାଇ ଜାଳିଦେଲେ । ଏହାଦେଖି ଶାନ୍ତନୁଙ୍କ ମନରେ ବହୁତ ଦୁଃଖହେଲେ ମଧ୍ୟ ସତୀଙ୍କୁ ମାତ୍ର ସେ ପାଟି ଫିଟାଇଲେ ନାହିଁ ।

ଦିନେ ଶାନ୍ତନୁଙ୍କର ବହୁତ ଅନୁନୟ, ବିନୟ ସତ୍ତ୍ୱେ ଗଙ୍ଗାଦେବୀ ତାଙ୍କ ପାଖକୁ ନ ଆସିବାରୁ ଶାନ୍ତନୁ କାମାତୁର ହୋଇ ଘର କାନ୍ଥରେଥିବା ଶବ ପିତୁଳାକୁ ଆଲିଙ୍ଗନ କରି ପକାଇଲେ । ଫଳରେ ଗୋଟିଏ ପୁତ୍ରଜାତ ହେଲା । ଶବରୁ ଜାତ ବୋଲି ତାର ନାମ ରଖାଗଲା ଶବବୀର୍ଯ୍ୟ । ପରେ ପରେ ସେହିପରି ଅନ୍ୟ ଏକ ପୁତ୍ର ଜାତ ହେଲା । ତାର ନାମ ହେଲା ବିଚିତ୍ରବୀର୍ଯ୍ୟ । ଶାନ୍ତନୁ ଗଙ୍ଗାଙ୍କ ଡ଼ରରେ ପିଲା ଦୁହିଁଙ୍କୁ ଲୁଚାଇ ନେଇ ଅନ୍ୟଠାରେ ପାଳନ କରାଇଲେ ।

କିଛି କାଳପରେ ଗଙ୍ଗାଦେବୀ ଗର୍ଭବତୀ ହେଲେ । ଶାନ୍ତନୁ ଏହା ଜାଣି ବଡ଼ ଖୁସି ହେଲେ ଓ ମନେ ମନେ ଭାବିଲେ, ଯାହାହେଉ ପିଲା-ଜଞ୍ଜାଳରେ ରହି ଗଙ୍ଗାର ଦୁଷ୍ଟାମୀ ଏଣିକି କମିଯିବ । ମାତ୍ର ଏ କଣ ହେଲା ! ପିଲା ଜନ୍ମ ହେବାମାତ୍ରେ ଗଙ୍ଗା ଦେବୀ ନିଜ ହାତରେ ସେ ପିଲାଟିକୁ ମାରି ଦେଲେ । ଏହା ଦେଖି ଶାନ୍ତନୁ ଦୁଃଖରେ ପାଗଳପରି ହୋଇଗଲେ । ମାତ୍ର ମୁହଁରେ କିଛି କହିଲେ ନାହିଁ ।

ଦିନେ ଶାନ୍ତନୁ ଓ ଗଙ୍ଗା ଦେବୀ ସମୁଦ୍ର ସ୍ନାନ କରିବାକୁ ଗଲେ । ଠିକ୍ ସେତିକି ବେଳକୁ ଶାନ୍ତନୁଙ୍କର ଦୁଇ ପୁଅ ଶବବୀର୍ଯ୍ୟ ଓ ବିଚିତ୍ରବୀର୍ଯ୍ୟ ମଧ୍ୟ ପାରେଶ୍ୱର ମୁନିଙ୍କ ସଙ୍ଗରେ ସମୁଦ୍ର ସ୍ନାନ କରିବାକୁ ଆସିଥାନ୍ତି । ଶାନ୍ତନୁଙ୍କୁ ଦେଖି ଦୁଇଭାଇ ବାପା ବାପା କହି ଦୌଡ଼ି ଆସିଲେ । ଗଙ୍ଗା-ଦେବୀ ଶାନ୍ତନୁଙ୍କୁ ପଚାରିଲେ, "ଏ ପିଲା ଦୁଇଟି କାହାର ? ତୁମକୁ କିପରି ବାପା ବୋଲି ଡ଼ାକୁଛନ୍ତି ?" ଶାନ୍ତନୁ ସେ କଥା କିଛି ଜାଣନ୍ତି ନାହିଁ ବୋଲି ମିଛରେ କହିଲେ । ଗଙ୍ଗାଦେବୀତ ସର୍ବଜ୍ଞ । ଭୂତ ଭବିଷ୍ୟତ କଥା ତାଙ୍କୁ ଜଣା । ତାଙ୍କୁ କିଛି ଅଛପା ରହିଲା ନାହିଁ । ପିଲା ଦୁଇଟି ଯେ

ଶାନ୍ତନୁଙ୍କ ପୁଅ ଏହା ସେ ଜାଣିଲେ । ଶାନ୍ତନୁ ତାଙ୍କୁ ମିଛ କହିଲେ ବୋଲି ତାଙ୍କ ମୁଣ୍ଡକୁ ପିତ୍ତ ଚଢ଼ିଗଲା । ସେ ରାଗରେ ଅଭିଶାପ ଦେଲେ "ତମର ଏହି ଦୁଇପୁଅ ଯୁବା ବୟସରେ ଅପୁତ୍ରିକ ହୋଇ ମରିବେ ।" ଶାନ୍ତନୁ ତଥାପି ପାଟି ଫିଟାଇଲେ ନାହିଁ । ଗଙ୍ଗାଙ୍କୁ ସଙ୍ଗରେ ନେଇ ଘରକୁ ଫେରିଲେ ।

ପରେ ପରେ ଗଙ୍ଗା ଦେବୀଙ୍କର ଆଉ ପାଞ୍ଚପୁଅ ହେଲେ । ସମସ୍ତଙ୍କୁ ସେ ଜନ୍ମ ପରେ ପରେ ମାରି ଦେଉଥାନ୍ତି । ସପ୍ତମ ଗର୍ଭବେଳକୁ ଶାନ୍ତନୁ ମନେ ମନେ ସ୍ଥିର କଲେ, ଏଥର ପିଲାଟିକୁ ଗଙ୍ଗା ହାତରେ କଦାପି ମାରିବାକୁ ଦେବି ନାହିଁ । ଏଥିରେ ଗଙ୍ଗା ଯଦି ରାଗି ଘରଛାଡ଼ି ଚାଲିଯାଏ ତେବେ ସେ ବରଂ ଯାଉ ।

ଯଥା ସମୟରେ ଗଙ୍ଗାଦେବୀ ଉତ୍ତମ ସୁନ୍ଦର ତେଜସ୍ୱୀନ୍ ପୁତ୍ରଟିଏ ପ୍ରସବ କଲେ ଓ ଜନ୍ମ ସଙ୍ଗେ ସଙ୍ଗେ ତାକୁ ମାରି ଦେବାକୁ ବାହାରିଲେ । ଶାନ୍ତନୁ ତ ଜଗି ରହିଥିଲେ । ଗଙ୍ଗାଙ୍କୁ ଗୋଡ଼େ ମାରି ପିଲାଟିକୁ ତାଙ୍କ କୋଳରୁ ଛଡ଼ାଇ ଆଣିଲେ । ଗଙ୍ଗା ଦେବୀ କି ଆଉ ସମ୍ଭାଳି ପଡ଼ନ୍ତି । ସଙ୍ଗେ ସଙ୍ଗେ ଘର ଛାଡ଼ି ବାହାରି ଗଲେ ଓ ଗଲାବେଳେ ଅଭିଶାପ ଦେଇ-ଗଲେ, " ଏଇ ପୁଅ ପାଇଁ ତମେ ମତେ ମାରିଲ । ହଉ, ଏଇ ପୁଅର ପୁଅ ହାତରେ ତମେ ଅବଶ୍ୟ ମରିବ । ଏହା କଦାପି ଅନ୍ୟଥା ହେବ ନାହିଁ । ମନେ ରଖିଥାଅ, ମୁଁ ଚାଲିଲି" । ଶାନ୍ତନୁ ଏହା ଶୁଣିଲେ, ମାତ୍ର ମନରେ ଆଦୌ ଦୁଃଖିତ ନ କରି ପୁଅଟିକୁ ଯତ୍ନରେ ଲାଳନ ପାଳନ କରିବାକୁ ସବୁ ବନ୍ଦୋବସ୍ତ କରିଦେଲେ । ସେହି ପୁଅଟିର ନାମ ହେଲା ଭୀଷ୍ମ ।

## ଭୀଷ୍ମଦେବ

ଭୀଷ୍ମ ଦିନକୁ ଦିନ ଚନ୍ଦ୍ରକଳାପରି ବଢ଼ିବାକୁ ଲାଗିଲେ । ବାପାଙ୍କପରି ସେ ମଧ୍ୟ ମହା ଧାର୍ମିକ ଓ ମହାବୀର ହେଲେ । ପଦ୍ମନାଭ ରାଜାଙ୍କର ତିନି ଝିଅ ଥିଲେ । ସେମାନଙ୍କର ନାମ ହେଲା, ଅମ୍ବା, ଅମ୍ବିକା ଓ ଅମ୍ବାଳିକା । ଅମ୍ବିକା ଓ ଅମ୍ବାଳିକା ଚିତ୍ରବୀର୍ଯ୍ୟ ଓ ବିଚିତ୍ର ବୀର୍ଯ୍ୟଙ୍କୁ ବିଭାହେଲେ । ଅମ୍ବା ଭୀଷ୍ମଙ୍କୁ ବରଣ କଲେ । ଭୀଷ୍ମ ବିଭାହେବାକୁ ଯିବାର ଠିକ୍ ପୂର୍ବରୁ ବାପା-ଙ୍କର ବିରସ ମୁଖ ଦେଖି ତାଙ୍କୁ ତାହାର କାରଣ ପଚାରିଲେ । ଶାନ୍ତନୁ

ପ୍ରଥମେ ନିଜର ମନୋଭାବକୁ ଲୁଚାଇଲେ । ମାତ୍ର ଭୀଷ୍ମ ଜିଦ୍ କରିବାରୁ ଶେଷରେ ବଡ଼ ଦୁଃଖରେ କହିଲେ "ବାପରେ, ତୋ'ର ମା' ଗଲାବେଳେ ଅଭିଶାପ ଦେଇ ଯାଇଛନ୍ତି, ତୋ'ର ପୁଅ ହାତରେ ମୋର ମରଣ ହେବ ।" ଏହା ଶୁଣି ଭୀଷ୍ମ ଯେତିକି ଆଶ୍ଚର୍ଯ୍ୟ ହେଲେ ସେତିକି ଦୁଃଖିତ ମଧ୍ୟ ହେଲେ । ସଙ୍ଗେ ସଙ୍ଗେ ସେ କଠୋର ପ୍ରତିଜ୍ଞା କଲେ ଯେ ଏ ଜନ୍ମରେ ସେ କଦାପି ବିବାହ କରିବେ ନାହିଁ । ସ୍ତ୍ରୀ ସଙ୍ଗ ତ୍ୟାଗ କରିବେ । ଏହା ଶୁଣି ସମସ୍ତେ ତାଙ୍କୁ ଧନ୍ୟ ଧନ୍ୟ କଲେ । ଶାନ୍ତନୁ ତାଙ୍କୁ ଚିରଞ୍ଜୀବୀ ହେବାପାଇଁ ଆଶୀର୍ବାଦ କଲେ ।

ଏହି କାରଣରୁ ପରେ ଏକ ଅଘଟଣ ମଧ୍ୟ ଘଟିଗଲା । ଅମ୍ବା ଭୀଷ୍ମଙ୍କୁ ବରଣ କରିଥିବା ହେତୁ ତାଙ୍କୁ ଆଉ କେହି ବିଭା ହେବାକୁ ରାଜି ହେଲେ ନାହିଁ । ସେ ଯାଇ ପଶୁରାମଙ୍କ ପାଖରେ ଗୁହାରି କଲେ । ପଶୁରାମ ଅମ୍ବା କନ୍ୟାକୁ ବିବାହ କରିବା ନିମିତ୍ତ ଭୀଷ୍ମଙ୍କୁ ବହୁତ ବୁଝାଇଲେ । ମାତ୍ର ଭୀଷ୍ମ ନିଜ ପ୍ରତିଜ୍ଞାରେ ଅଟଳ ରହିଲେ । ଫଳରେ ଭୀଷ୍ମ ଓ ପଶୁରାମଙ୍କ ମଧ୍ୟରେ ଘୋର ଯୁଦ୍ଧ ହେଲା । ଯୁଦ୍ଧରେ ପଶୁରାମ ହାରି-ଗଲେ । ଅମ୍ବା ଅନ୍ୟ ଉପାୟ ନଦେଖି ପରଜନ୍ମରେ ଭୀଷ୍ମଙ୍କୁ ମାରିବେ ବୋଲି ମାନସିକ କରି ପ୍ରୟାଗ ତୀର୍ଥରେ ଗଙ୍ଗା ନଦୀରେ ଝାସ ଦେଲେ । ଗଙ୍ଗାଦେବୀଙ୍କ ପୂର୍ବ ଅଭିଶାପ ଫଳରେ ଚିତ୍ରବୀର୍ଯ୍ୟ ଓ ବିଚିତ୍ରବୀର୍ଯ୍ୟ ମଧ୍ୟ ଅପୁତ୍ରିକ ହୋଇ ପ୍ରାଣତ୍ୟାଗ କଲେ । ଏତେ ବଡ଼ ବଂଶ କେବଳ ଗଙ୍ଗାଦେବୀଙ୍କ ଅଭିଶାପ ହେତୁ ବୁଡ଼ିବାକୁ ବସିଲା ।

## ବଂଶ ରକ୍ଷା

କିପରି ବଂଶରକ୍ଷା ହେବ ଏଥିପାଇଁ ମାତା ସତ୍ୟବତୀଙ୍କର ଭାବେଣି ପଡ଼ିଲା । ସେ ଏ ବିଷୟରେ ପାରେଶ୍ୱର ମୁନିଙ୍କ ସଙ୍ଗରେ ପରାମର୍ଶ କଲେ । ଅମ୍ବିକା ଓ ଅମ୍ବାଲିକା ଦିଅର ଭୀଷ୍ମଙ୍କ ଔରସରେ ପୁତ୍ର ଜାତ କରନ୍ତୁ ବୋଲି ମୁନି ପରାମର୍ଶ ଦେଲେ । ମାତ୍ର ଭୀଷ୍ମଙ୍କ ଔରସ ଜାତ ପୁତ୍ର ତାଙ୍କ ପିତା ଶାନ୍ତନୁଙ୍କୁ ବଧ କରିବ ବୋଲି ଗଙ୍ଗାଦେବୀଙ୍କର ଅଭିଶାପ ଥିବାରୁ ଭୀଷ୍ମ ମୁନିଙ୍କ ପ୍ରସ୍ତାବରେ ରାଜି ହେଲେ ନାହିଁ ।

ତା ପରେ ସତ୍ୟବତୀ ନିଜପୁତ୍ର ବ୍ୟାସଦେବଙ୍କ ନିକଟକୁ ଯାଇ ତାଙ୍କୁ ଦାୟିତ୍ୱ ତୁଲାଇବାକୁ ଅନୁରୋଧ କଲେ । ମୁନି ବ୍ୟାସଦେବ ମହା

ଯୋଗେଶ୍ୱର । ସେ ଦ୍ୱିତୀୟ ନାରୀଶ୍ରେଷ୍ଠ ରୂପୀ ବୋଲି ଖ୍ୟାତ । ବଂଶରକ୍ଷା ପାଇଁ ଅନ୍ୟ ଉପାୟ ନଦେଖି ସେତେବେଳର ସାମାଜିକ ଚଳଣି ଦୃଷ୍ଟିରୁ ବ୍ୟାସଦେବ ଏ ପ୍ରସ୍ତାବରେ ରାଜି ହେଲେ । ମାତ୍ର ସତ୍ୟବତୀ ଏହି ପ୍ରସ୍ତାବ ଅମ୍ବିକା ଓ ଅମ୍ବାଳିକାଙ୍କ ଆଗରେ କହିଲା ମାତ୍ରେ ସେ ଦୁହେଁ ଘୋର ଲଜ୍ଜ୍ୟା ଓ ଭୟରେ ଚେତା ହରାଇ ପଡ଼ିଲେ ।

ସତ୍ୟବତୀ ଧୈର୍ଯ୍ୟ ନହରାଇ ଆଗେ ସେମାନଙ୍କୁ ଉଠାଇ ସାନ୍ତ୍ୱନା କଲେ । ତା ପରେ ବଂଶ ରକ୍ଷା ନିମିତ୍ତ ଏ କାର୍ଯ୍ୟ ଦୋଷାବହ ନୁହେଁ ବୋଲି ସେ ଦୁହିଁଙ୍କୁ ବହୁତ ବୁଝାଇଲେ । କଥା ପ୍ରସଙ୍ଗରେ ନିଜ ଅନୁଭୂତି କଥା ମଧ୍ୟ କହିଲେ । "ମୋର ବାପା ଦାସରାଜା ଅପୁତ୍ରିକ ଥିଲେ । ମୋର ମା' ବାପାଙ୍କ ଅନୁମତି ନେଇ ଅନ୍ୟ ଔରସରେ ପୁଅ ପାଇବା ପାଇଁ ବହୁତ ଚେଷ୍ଟାକରି ଶେଷରେ ବିଫଳ ହେଲେ । ଏକମାତ୍ର ମୁଁ ଝିଅ ହୋଇ ଜନ୍ମ ହେଲି । ମତେ ବାର ବର୍ଷ ହେବାରୁ ବାପା ମୋତେ ଯମୁନା ନଦୀରେ ଲୋକଙ୍କୁ ଡଙ୍ଗାରେ ପାରିକରିବା କାମ ଦେଲେ । ପ୍ରତିଦିନ ମୁଁ ବହୁତ ଲୋକଙ୍କୁ ଡଙ୍ଗାରେ ବସାଇ ପାରି କରେ । ଦିନେ ପାରେଶ୍ୱର ମୁନି ଆସି ମୋ ଡ଼ଙ୍ଗାରେ ବସିଲେ ଓ ଶୀଘ୍ର ପାରି କରି ଦେବାକୁ କହିଲେ । ମୁଁ କହିଲି, 'ଏ ଡଙ୍ଗାରେ ଏକାଥରକେ ପଚିଶ ଜଣ ବସିବେ । ଆଉ ଲୋକମାନେ ଆସନ୍ତୁ । ସମସ୍ତଙ୍କୁ ଏକାବେଳକେ ପାରି କରିଦେବି ।" ମୁନି କହିଲେ "ଆମେ ବଣରେ ରହି ତପସ୍ୟା କରିବା ଲୋକ । ନିଶ୍ଚୟ ଆମର ଘରି ଡର । ତୁମେ ଆଉ ଡେରି ନକରି ମତେ ଏକୁଟିଆ ପାରି କରିଦିଅ ।"

ମୁନି ଏପରି କଣ୍ଠାଳ କରିବାରୁ ମୁଁ ତାଙ୍କୁ ନେଇ . ନଈରେ ନାଆ ମେଲିଦେଲି ମଝି ନଈରେ ଡଙ୍ଗାଟି ଆଉ ନଚଳେ । ମୁଁ କାତ ମାରି ମାରି ହାଲିଆ ହୋଇଗଲି । ମୁଁ ପିନ୍ଧିଥିବା ଶ୍ରେଷ୍ଠ ଲୁଗା ଖଣ୍ଡି ଝାଳରେ ପୁରା ଓଦା ହୋଇଯାଇ ଦେହରେ ଲାଗି ଗଲା । ମୁନି ମୋର ଦେହକୁ ନିରେଖି ନିରେଖି ଚାହୁଁଥାନ୍ତି । ମୁଁ ବଡ଼ ଲଜ୍ଜ୍ୟାରେ ପଡ଼ିଗଲି । ମାତ୍ର କିଛି-ହେଲେ ଉପାୟ ଦିଶୁନଥାଏ । ମୁନି ମତେ ଯେମିତି କୌତୁକ କରି କହୁଥାନ୍ତି, "ଆଲୋ, ଶୀଘ୍ର ଡ଼ଙ୍ଗା ଚଳା, ମୋର ଯେ ଡେରି ହୋଇ ଯାଉଛି ।" ମୁଁ କହିଲି, "ଦୁଇ ବର୍ଷ ହେଲାଣି ମୁଁ ଏ କାମ କରୁଛି । ମାତ୍ର ଦିନେ

ହେଲେ ଏପରି ଆଚମ୍ବିତ ଘଟଣା ଘଟି ନାହିଁ । ଗଙ୍ଗାମାତା ମୋ ପ୍ରତି କାହିଁକି ଏ ମାୟା କଲେ ମୁଁ ବୁଝି ପାରୁନାହିଁ । ମୁଁ ନଷ୍ଟେ ଏ ଜୀବନ ହରାଇ ଦେବ । ଏହା କହି ପାଣିକୁ ଡେଇଁ ପଡ଼ିବାକୁ ଯାଉଛି, ମୁନି ଧାଇଁ ଆସି ମତେ ପଛରୁ କୁଣ୍ଢାଇ ଧରି ପକାଇଲେ । କୋଳରେ ବସାଇ ଗେଲ କଲେ । ତାଙ୍କର କାମାତୁର ଅବସ୍ଥା ଦେଖି ମୁଁ ତାଙ୍କ କୋଳରୁ ଉଠିଆସି ରାଗରେ କହିଲି, "ମୁଁ ଅବିବାହିତ ବାଳୁତ ଝିଅ, ମୋସଙ୍ଗେ ଏପରି ବ୍ୟବହାର କରିବାକୁ ତୁମକୁ ଟିକିଏ ଲଜ୍ଜ୍ୟାଲାଗୁ ନାହିଁ ?" ସଙ୍ଗେ ସଙ୍ଗେ ମୁନି ତାଙ୍କ କମଣ୍ଡଳୁରୁ ଚୁଳୁଏ ପାଣି ଧରି ମୋ ଦେହରେ ସିଞ୍ଚି ଦେଲେ । ମୁଁ ପୂର୍ଣ୍ଣ ଯୁବତୀ ପାଲଟି ଗଲି । ମୋ ଦେହର ଆଇଁଷ ଗନ୍ଧ କୁଆଡେ଼ ଗଲା । ତା ବଦଳରେ ଅତି ଚମତ୍କାର କସ୍ତୁରୀ ବାସନା ମୋ ଦେହରୁ ବାହାରିଲା । ମୋର ଏ ପରିବର୍ତ୍ତନ ଦେଖି ମୁଁ ଯେତିକି ଆଶ୍ଚର୍ଯ୍ୟ ହେଲି, ସେତିକି ଆନନ୍ଦିତ ହେଲି । ମୁନିଙ୍କ ଆଡ଼କୁ ମୋ ମନ ଢଳିଲା । ତଥାପି ତାଙ୍କୁ ବାରଣ କରି କହିଲି, "ଦିନରେ ନାରୀ ପୁରୁଷ ମିଳନ ମନା । ତମେ ଆଉ କଣ୍ଟାଳ କରନା ।" ମାତ୍ର ସେ କି ଶୁଣିବା ଲୋକ ? ସଙ୍ଗେ ସଙ୍ଗେ କି ମନ୍ତ୍ର କଲେ, ବୈଶାଖ ମାସଟାରେ କାହୁଁ କୁହୁଡ଼ି ମାଡ଼ି ଆସି ରାତିପରି ଚାରିଆଡ଼ ଅନ୍ଧାର କରିଦେଲା । ମୁନିଙ୍କର ଏପରି ମହିମା ଦେଖି ମୁଁ ମୋର ଦେହକୁ ତାଙ୍କ ଠାରେ ସମର୍ପଣ କରିଦେଲି ।

ସେଇ ନାଆ ଭିତରେ ମୋର ଅତ୍ୟନ୍ତ ସୁନ୍ଦର, ତେଜସ୍ୱୀ ପୁଅଟିଏ ହେଲା । ପୁଅଟି ଜନ୍ମ ହେଲାମାତ୍ରେ କାନ୍ଦିବା ଛଳରେ ବେଦ ପାଠ କଲା । ମୋତେ ଏ ସବୁ ଭେଲିକି ପରି ଲାଗୁଥାଏ । ମୁନି ପୁଅଟିର ନାମ ଦେଲେ ବ୍ୟାସ । ବେଦବ୍ୟାସ ସଙ୍ଗେ ସଙ୍ଗେ ଯୁବକ ହୋଇଗଲେ ଓ ଆମକୁ ନମସ୍କାର କରି ଅନ୍ତର୍ଦ୍ଧାନ ହୋଇଗଲେ । ଗଲାବେଳେ କହିଗଲେ ଯେ, ସେ ତପସ୍ୟା କରିବାକୁ ଚାଲିଯାଉଛନ୍ତି । ଆମେ ତାଙ୍କୁ ଯେତେବେଳେ ମନେ ପକାଇବୁ ସେ ଆସି ପହଞ୍ଚିବେ । ଏଣେ ଡଙ୍ଗା ତା ମନକୁ କୂଳରେ ଆସି ଲାଗି ଯାଇଥାଏ । ମୋ ବାପାଙ୍କ ପାଖକୁ ଖବର ଗଲା । ବାପା ମହା ଆନନ୍ଦରେ ମୋତେ ପାରେଶ୍ୱର ମୁନିଙ୍କ ସହିତ ବାହା କରିଦେଲେ ।

ମୋର ପୁଅ ସେହି ବେଦବ୍ୟାସ । ସେ ମହା ତପସ୍ୱୀ, ମହା ପଣ୍ଡିତ । ଲୋକେ ତାଙ୍କୁ ଦ୍ୱିତୀୟ ନାରାୟଣ ବୋଲି କହନ୍ତି । ତାଙ୍କ ଔରସରେ

ଯେଉଁ ପୁଅ ଜନ୍ମହେବ ସେ ମହା ବଳବନ୍ତ ଓ ଧାର୍ମିକ ହେବ । ତେଣୁ ବଂଶରକ୍ଷାପାଇଁ ତୁମେମାନେ ମୋର ପ୍ରସ୍ତାବରେ ରାଜି ହୁଅ । ବଂଶରକ୍ଷା ଏକ ପବିତ୍ର କର୍ତ୍ତବ୍ୟ । ଏଥିରେ କୌଣସି ଅଧର୍ମ ବା ପାପ ନାହିଁ । ଯଦି ବା ଥାଏ ତେବେ ସେ ପାପ ମତେ ଲାଗିବ, ତୁମକୁ ନୁହେଁ । ଏହିପରି ବହୁତ ବୁଝାଇ ସୁଝାଇ ସତ୍ୟବତୀ, ଅମ୍ବିକା ଓ ଅମ୍ବାଳିକାଙ୍କୁ ତାଙ୍କ ପ୍ରସ୍ତାବରେ ରାଜି କରାଇଲେ ।

ବ୍ୟାସଦେବଙ୍କ ଔରସରେ **ଅମ୍ବିକା** ଧୃତରାଷ୍ଟ୍ରଙ୍କୁ ଜନ୍ମଦେଇ ଦେହ ତ୍ୟାଗ କଲେ । ମିଳନ କାଳରେ ବ୍ୟାସଦେବଙ୍କ ତେଜ ସହି ନପାରି ଅମ୍ବିକା ଆଖି ବୁଜି ଦେବାରୁ ଧୃତରାଷ୍ଟ୍ର ଅନ୍ଧ ହୋଇଗଲେ ବୋଲି କୁହା-ଯାଏ । ସେହିପରି **ଅମ୍ବାଳିକାଙ୍କ** ଗର୍ଭରୁ ପାଣ୍ଡୁ ଜନ୍ମ ହେଲେ । ଦୁଇଭାଇ ଅତ୍ୟନ୍ତ ଧାର୍ମିକ ଓ ମହାବୀର ହେଲେ । ବିଚିତ୍ରବୀର୍ଯ୍ୟଙ୍କର ଅମୃବତୀ ବୋଲି ଅନ୍ୟ ଏକ ପତ୍ନୀ ଥିଲେ । ବ୍ୟାସଦେବଙ୍କ ଅନୁଗ୍ରହରେ ତାଙ୍କର ମଧ୍ୟ ଗୋଟିଏ ଅତି ସୁନ୍ଦର ପୁଅହେଲା । ତାର ନାମ ହେଲା ବିଦୁର । ବ୍ୟାସ-ଦେବଙ୍କ ବରରେ ବିଦୁର ତ୍ରିକାଳଦର୍ଶୀ, ଅତ୍ୟନ୍ତ ଧର୍ମପ୍ରାଣ ଓ ପଣ୍ଡିତ ହେଲେ ।

## ଧୃତରାଷ୍ଟ୍ର ଓ ଗାନ୍ଧାରୀ ।

ତିନି ଭାଇଙ୍କ ମଧ୍ୟରେ ଧୃତରାଷ୍ଟ୍ର ବଡ଼ । ତେଣୁ ତାଙ୍କର ବିବାହପାଇଁ ଆଗ କନ୍ୟା ଖୋଜା ହେଲା । ବଡ଼ ଆଶ୍ଚର୍ଯ୍ୟକଥା, ଯେଉଁ କନ୍ୟା ସଙ୍ଗରେ ତାଙ୍କର ବିବାହ ପ୍ରସ୍ତାବ ପଡ଼େ ସେ କନ୍ୟା ସଙ୍ଗେ ସଙ୍ଗେ ମରିଯାଏ । ଏହିପରି ଅନେକ କନ୍ୟା ମରିଯିବାରୁ ରାଜାମାନେ ଡରିଯାଇ ଧୃତରାଷ୍ଟ୍ରଙ୍କ ସଙ୍ଗରେ ଆଉ ନିଜକନ୍ୟାର ବିବାହ ପ୍ରସ୍ତାବ ପକାଇଲେ ନାହିଁ । ବ୍ୟାସ-ଦେବ ଏଥିପାଇଁ ବଡ଼ ଚିନ୍ତାରେ ପଡ଼ିଲେ । ବଡ଼ ପୁଅ ବିଭା ନହେଲେ ସାନପୁଅମାନେ ବା କିପରି ବିଭାହେବେ ?

ବ୍ୟାସଦେବ କନ୍ୟା ଖୋଜିବାକୁ ନିଜେ ବାହାରିଲେ । ଅନେକ ଦେଶ ବୁଲି ବୁଲି ଶେଷରେ ଗାନ୍ଧାରସେନ ରାଜ୍ୟରେ ପହଞ୍ଚିଲେ । ଗାନ୍ଧାରସେନ ରାଜାଙ୍କ ଝିଅର ନାମ ଗାନ୍ଧାରୀ । ସେ ଉଆଁସୀ କନ୍ୟା ହେତୁ ତାଙ୍କ ସଙ୍ଗେ ଯେତେ ରାଜାପୁଅଙ୍କର ବିବାହ ପ୍ରସ୍ତାବ ପଡ଼େ, ସମସ୍ତେ ମରିଯାଉଥାନ୍ତି । ବ୍ୟାସଦେବ ଏହାଜାଣି ଠିକ୍ ସ୍ଥାନରେ ପହଞ୍ଚିଛନ୍ତି ବୋଲି ମନେ ମନେ

ଆନନ୍ଦିତ ହେଲେ । ଗାନ୍ଧାରସେନ ରାଜା ତାଙ୍କୁ ଦେଖି ବହୁତ ଆଦର ଗୌରବ କଲେ । ଝିଅକୁ ବିବାହ ଦେବାରେ ଯେଉଁ ଅନିଷ୍ଟ ଘଟୁଛି ସେଥିରୁ କିପରି ରକ୍ଷାମିଳିବ, ତାର ଉପାୟ କରିବାକୁ ବ୍ୟାସଦେବଙ୍କ ପାଖରେ ପ୍ରାର୍ଥନା କଲେ । ବ୍ୟାସଦେବ ରାଜାଙ୍କୁ ସାନ୍ତ୍ୱନା ଦେଇ କହିଲେ ଯେ ସେ ନିଶ୍ଚୟ ତାର ଉପାୟ କରିବେ ।

## ସାହାଡ଼ା ବୃକ୍ଷର ମହିମା ।

ସାହାଡ଼ା ବୃକ୍ଷର ଅନ୍ୟ ନାମ ହେଲା ଗୋଲକ ବୃକ୍ଷ । ବ୍ୟାସଦେବ କହିଲେ ଯେ ଏହି ବୃକ୍ଷର ବହୁତ ମହିମା । ଉଆଁସୀ କନ୍ୟାକୁ ପ୍ରଥମେ ଏହି ବୃକ୍ଷ ସଙ୍ଗେ ବିଭା କରିଦେଲେ ଉଆଁସୀ ଦୋଷ କଟିଯାଏ । ତେଣୁ ଗାନ୍ଧାରୀଙ୍କୁ ପ୍ରଥମେ ଏହି ବୃକ୍ଷସଙ୍ଗେ ବିଭା କରାଇ ତା ପରେ ଉପଯୁକ୍ତ ପାତ୍ର ସହିତ ବିଭାକଲେ ଆଉ କିଛି ଅନିଷ୍ଟ ଘଟିବ ନାହିଁ । କଥାପ୍ରସଙ୍ଗରେ ବ୍ୟାସଦେବ ସାହାଡ଼ା ବୃକ୍ଷର ମହିମା ଗାନ୍ଧାରସେନଙ୍କୁ କହିଲେ ।

ଦିନେ ଦେବଦେବ ମହାଦେବ ବୃଷଭ ପିଠିରେ ବସି ପୃଥିବୀ ଭ୍ରମଣ କରୁ କରୁ ପବିତ୍ର ବୈତରଣୀ ନଦୀ କୂଳରେ ପହଞ୍ଚିଲେ । ସେଠାରେ ଗୋଟିଏ ସାହାଡ଼ା ଗଛ ଥିଲା । ବୃଷଭ ସେହି ଗଛର ଗୋଟିଏ ପତ୍ରନେଇ ନିଜ ମୁଣ୍ଡରେ ଖୋସିଲା । ମହାଦେବ ଏହାର କାରଣ ପଚାରିବାରୁ ବୃଷଭ କହିଲା, ବାମ ପାଖରେ ଯଦି ସାହାଡ଼ା ଗଛ ଥିବ ତେବେ ସେଥିରୁ ପତ୍ରଟିଏ ନେଇ ମଥାରେ ଧେନଲେ ଅମୃତ ଭଳି ଖାଦ୍ୟ ମିଳିବ । ଡାହାଣ ପାଖରେ ଯଦି ବରକୋଳି ଗଛ ଥିବ ତେବେ ସେଥିରୁ ପତ୍ରଟିଏ ନେଇ ମଥାରେ ଧେନଲେ ଶତ୍ରୁ କ୍ଷୟ ଯାନ୍ତି । ଆଗରେ ଧଳାଦୂବ ଦେଖି ମୁଣ୍ଡରେ ଧେନଲେ ବହୁତ ଦୋଷ କଟିଯାଏ । ତୁଳସୀ ଗଛ ପଛରେ ଥିଲେ ସେଥିରୁ ଝଡ଼ା ପତ୍ରଟିଏ ମଥାରେ ଖୋସିଲେ ପାପ କ୍ଷୟ ହୁଏ ।

ମହାଦେବ ଏ କଥା ଶୁଣି ଏହା ସତ କି ମିଛ ପରୀକ୍ଷା କରିବାକୁ ମନେ ମନେ ସ୍ଥିର କଲେ । ମୁହଁରେ କିଛି କହିଲେ ନାହିଁ । ମାତ୍ର ସେ ଦିନସାରା ବୃଷଭକୁ କିଛି ଆହାର ଦେଲେ ନାହିଁ । ସନ୍ଧ୍ୟାବେଳକୁ କପିଳାସ ଫେରି ଆସି ନନ୍ଦୀକୁ ଡାକି ଚୁପ୍‌କରି କହିଲେ, "ବୃଷଭକୁ ତା ସ୍ଥାନରେ

ବାନ୍ଧି ଦେ । ଆଉ ଆଜ ତାକୁ କିଛି ଆହାର ଦେବୁ ନାହିଁ ।" ନନ୍ଦୀ ପ୍ରଭୁଙ୍କ ଆଦେଶ ସଙ୍ଗେ ସଙ୍ଗେ ପାଳନ କଲେ । ବୃଷଭ ବିଚରା ଦିନସାରା ଭୋକ ଉପାସରେ ବୁଲି ବୁଲି ବଡ଼ ହାଲିଆ ହୋଇ ଯାଇଥିଲା । ଘରେ ପହଞ୍ଚି ମଧ୍ୟ କିଛି ଖାଦ୍ୟ ମିଳିଲା ନାହିଁ । ଏଥିରୁ ସେ ବୁଝିଲା ଯେ ତା' ମୁନିବ ତା' କଥାକୁ ତା'ର ଉପରେ ହିଁ ଏତ ପରୀକ୍ଷା କଲେ ।

ଏଣେ କଣ ହୋଇଛି ନା ମା' ପାର୍ବତୀ ଘରେ ক্ষୀରି, ଖେଚଡ଼ି, ଛେନା, ପିଠାଆଦି ଅମୃତ ଭୋଜନ ପ୍ରସ୍ତୁତ କରି ମହାଦେବଙ୍କୁ ଦିନସାରା ଚାହିଁ ଚାହିଁ ନ ଆସିବାରୁ ନିଜେ ଭୋଜନରେ ବସିବାକୁ ଯାଉଛନ୍ତି । ଠିକ୍ ଏହି ସମୟରେ ମହାଦେବଙ୍କ ଡ଼ମ୍ବରୁ ବାଜା ଶୁଭିଲା । ଆଉ ସେ କପରି ବା ଖାଇବେ ? ସୁନାଥାଳୀରେ ବଢ଼ାଯାଇଥିବା ସମସ୍ତ ଖାଦ୍ୟକୁ ବୃଷଭ ଖାଇବା କୁଣ୍ଡରେ ନେଇ ଅଜାଡ଼ି ଦେଲେ । ନିଜ ହାତ ଧୋଇ ପକାଇ ରତ୍ନଝରିରେ ପାଣିନେଇ ମହାଦେବଙ୍କ ପାଦ ଧୋଇ ଦେବାକୁ ଚାଲିଗଲେ ।

ବୃଷଭ ବିଚରା ଭୋକରେ ଆଉଟୁ ପାଉଟୁ ହୋଇ ଶୋଇପଡ଼ିବାକୁ ଗଲାବେଳେ ହଠାତ୍ ମୁହଁ ବୁଲାଇ ଦେଖିଲା, ତା ଖାଇବା କୁଣ୍ଡରେ ଅମୃତ ତୁଲ୍ୟ ଆହାର ପୂର୍ଣ୍ଣହୋଇ ରହିଛି । ତାର ଆନନ୍ଦ ଆଉ ଦେଖେ କିଏ ? ପେଟଭରି ଭୋଜନକରି ମା' ଅନ୍ନପୂର୍ଣ୍ଣାଙ୍କୁ ମନେ ମନେ ଜୁହାରଟିଏ କରି ନିଶ୍ଚିନ୍ତରେ ଶୋଇଗଲା ।

ତା ପରଦିନ ସକାଳୁ ନିଜେ ମହାଦେବ ବୃଷଭ କିପରି ଅଛି ବୋଲି ଦେଖିବାକୁ ଆସିଲେ । ବୃଷଭ ବିଚରା ଉପାସ ଅଛି ବୋଲି ତାଙ୍କ ମନଟା ଗୁଡ଼ୁଇ ପୁଡ଼ୁଇ ହେଉଥାଏ । ପ୍ରଭୁଙ୍କୁ ଦେଖି ବୃଷଭ ଝାଡ଼ିଝୁଡ଼ି ହୋଇ ଉଠିଲା । "କିରେ ଗତ କାଲିତ ସାହାଡ଼ାପତ୍ର ମୁଣ୍ଡରେ ଖୋସିଥିଲୁ, କଣ ଖାଇବାକୁ ମିଳିଲା ?" ମହାଦେବ ହସି ହସି ପଚାରିଲେ । ବୃଷଭ କହିଲା "ପ୍ରଭୁଙ୍କ ଯୋଗ୍ୟ ଦ୍ରବ୍ୟ ଭୋଜନ ପେଟଭରି ଖାଇବାକୁ ମିଳିଲା" ମହାଦେବ ଆଶ୍ଚର୍ଯ୍ୟ ହୋଇ ପାର୍ବତୀଙ୍କୁ ପଚାରନ୍ତେ ପାର୍ବତୀ ହସି ହସି ସବୁ ଘଟଣା କହିଲେ । ମହାଦେବ ଶୁଣି ଖୁସିହେଲେ । କାରଣ ବୃଷଭକୁ ଉପାସ ରଖାଇ ମନେ ମନେ ସେ ବଡ଼ ଅନୁତାପ କରୁଥିଲେ ।

ବ୍ୟାସଦେବ ସାହାଡ଼ା ବା ଗୋଲକ ବୃକ୍ଷର ମହିମା ବର୍ଣ୍ଣନା କରି-ସାରି ଗାନ୍ଧାରସେନଙ୍କୁ କହିଲେ ଯେ ଗାନ୍ଧାରୀଙ୍କୁ ପ୍ରଥମେ ଗୋଲକ ବୃକ୍ଷ ସଙ୍ଗେ ବିଭା କରିଦେଲେ ସମସ୍ତ ଦୋଷ ଖଣ୍ଡନ ହୋଇଯିବ । ତାଙ୍କର କଥା ମତେ ଜଉ-ସ ହତା ମଧ୍ୟରେ ଥିବା ସାହାଡ଼ା ଗଛକୁ ବରବେଶ କରି ଗାନ୍ଧାରୀଙ୍କ ସହିତ ଯଥାରୀତି ବିବାହ କରାଗଲା । ଗାନ୍ଧାରୀଙ୍କ ହାତକୁ ବର-ବେଶୀ ଗଛ ଉପରେ ଥୋଇ ହାତ ଗଣ୍ଠି ପକାଇବା ସଙ୍ଗେ ସଙ୍ଗେ ସାହାଡ଼ା ଗଛଟି ମରିଗଲା । ଏହାଦେଖି ସମସ୍ତେ ବଡ଼ ଆଶ୍ଚର୍ଯ୍ୟ ହେଲେ । ମାତ୍ର ବ୍ୟାସଦେବ କହିଲେ, ଏହା ଫଳରେ ସବୁ ଦୋଷ କଟି ଗଲା ।

ତା ପରେ ସେ ଧୃତରାଷ୍ଟ୍ରଙ୍କ ସହିତ ଗାନ୍ଧାରୀଙ୍କର ବିବାହ ପ୍ରସ୍ତାବ ପକାଇଲେ । ଗାନ୍ଧାରସେନ ଆନନ୍ଦରେ ଏ ପ୍ରସ୍ତାବରେ ରାଜି ହେଲେ । ଦୁହିଁଙ୍କର ବିବାହ ଖୁବ୍ ଜାକଜମକରେ ହେଲା । ଏଥର ବର କି କନ୍ୟା କେହି ମଲେନାହିଁ । ଧୃତରାଷ୍ଟ୍ର ବ୍ରହ୍ମରାକ୍ଷସଙ୍କୁ ଗାନ୍ଧାରୀ ବ୍ରହ୍ମରାକ୍ଷସୀ ଓ ଉଆଁସୀ କନ୍ୟା । ଦୁହିଁଙ୍କର ବେଶ୍ ଯୋଟକ ହେଲା । ସେଥିପାଇଁ କଥାରେ କହନ୍ତି, ଧୃତରାଷ୍ଟ୍ରଙ୍କୁ କନ୍ୟାନାହିଁ କି ଗାନ୍ଧାରୀଙ୍କୁ ବର ନାହିଁ ।

## ପଣ୍ଡୁଙ୍କର କୁନ୍ତୀଙ୍କ ସହିତ ବିବାହ ।

କୁନ୍ତଭୋଜ ରଜାଙ୍କର ଗୋଟିଏ ବୋଲି ଝିଅ । ତାର ନାମ କୁନ୍ତୀ । ଝିଅଟି ଦେଖିବାକୁ ଖୁବ୍ ସୁନ୍ଦରୀ । ସ୍ୱଭାବ, ଚରିତ୍ର ମଧ୍ୟ ଅତି ଉତ୍ତମ । ଥରେ ଦୁର୍ବାସା ମୁନି ଚତୁର୍ମାସ୍ୟା କଟାଇବାକୁ କୁନ୍ତଭୋଜଙ୍କ ରାଜ୍ୟକୁ ଆସିଲେ । ରଜା ଖୁବ୍ ଆନନ୍ଦରେ ତାଙ୍କପାଇଁ ଆଶ୍ରମଘରଟିଏ ତୋଳାଇ ଦେଇ ତାଙ୍କ ସେବାରେ ନିଜ ଝିଅ କୁନ୍ତୀକୁ ଲଗାଇଦେଲେ । କୁନ୍ତୀର ସେବାରେ ଖୁସିହୋଇ ମୁନି ଗଲାବେଳେ ତାକୁ ଗୋଟିଏ ମନ୍ତ୍ରମାଳା ଦେଇ କହିଗଲେ, ସେ ମାଳାରେ ଯେଉଁ ଦେବତାଙ୍କୁ ଜପିବ ସେ ସ୍ୱାମୀରୂପରେ ପାଖକୁ ଆସି ବରଦେବେ । କୁନ୍ତୀତ ପିଲାଝିଅ । ଦିନେ ନଈକୂଳରେ ଖେଳୁ ଖେଳୁ ଦେଖିଲେ କି ସୁନ୍ଦର ସୂର୍ଯ୍ୟ ଉଇଁ ଆସୁଛନ୍ତି । ଦୁର୍ବାସାଙ୍କ କଥା ସତ କି ମିଛ ପରୀକ୍ଷା କରିବାକୁ ସେ, ମାଳାଟିକୁ ଧରି ସୂର୍ଯ୍ୟଦେବତାଙ୍କୁ ଜପିଲେ । ସୂର୍ଯ୍ୟଦେବତା ସଙ୍ଗେ ସଙ୍ଗେ ଆସି ପାଖରେ ହାଜର । କୁନ୍ତୀକୁ ବଡ଼ ଆଦରରେ କୋଳରେ ବସାଇ ଗେଲକଲେ । କୁନ୍ତୀତ ଏସବୁ ଦେଖି

କାବ୍‌ବା ! ଏ କ ହାଲରେ ବାବା ! କାହିଁ ସୂର୍ଯ୍ୟ, କାହିଁ ମଣିଷ ! ସୂର୍ଯ୍ୟ ତାଙ୍କ ମନକଥା ଜାଣିପାରି କୋମଳ ସ୍ୱରରେ କହିଲେ, "ମତେ ତମେ ଡ଼ାକିଲ ପରା ? ତେଣୁ ମନ୍ତ୍ରପ୍ରଭାବରେ ମୁଁ ଆସିଗଲି ! ଏ ମନ୍ତ୍ରମାଳାର ଏତିକି ମହିମା ଯେ ତାକୁ ଧରି ଯେଉଁ ଦେବତାଙ୍କୁ ଡ଼ାକିବ, ତାଙ୍କୁ ନିଜର ସ୍ୱାମୀ-ରୂପେ ପାଇବ । ମୁନିତ ତୁମକୁ ଏ କଥା ଅବଶ୍ୟ କହିଥିବେ ।"

କୁନ୍ତୀ ମନେ ମନେ ଭାବିଲେ, ସତେ ତ ! ମାଳାଟି ଦେଲାବେଳେ ମୁନି ତ ଏ କଥା କହିଥିଲେ । ଯାହା ହେଲେ ବି ମୁଁ ତ ବାଳୁତ ଝିଅ । ବୟସ ପାଇନାହିଁ । ସୂର୍ଯ୍ୟଦେବତା ପୁଣି ମୋର ସ୍ୱାମୀହେବେ ! କୁନ୍ତୀ ବଡ଼ ଅନୁନୟ କରି କହିଲେ, "ହେ ଦେବତା, ମୋର ଭୁଲ୍ ହୋଇଛି । ମୋର କୁମାରୀତ୍ୱ ନଷ୍ଟ କରନ୍ତୁ ନାହିଁ । ମୁଁ ଲଜ୍ଜାରେ ମୁଣ୍ଡଟେକି ପାରିବି ନାହିଁ । ମୋର ବାପା, ମା, ଲୋକମାନେ ମତେ କଣ ବୋଲି କହିବେ !" କୁନ୍ତୀ-ଙ୍କର ବିକଳ ଦେଖି ସୂର୍ଯ୍ୟଦେବଙ୍କର ଦୟାହେଲା । ସେ ସାନ୍ତ୍ୱନା ଦେଇ କହିଲେ, "କୁନ୍ତୀ, ଏ ମନ୍ତ୍ରମାଳାର ଶକ୍ତିକୁ କେହିହେଲେ ଏଡ଼ି ପାରିବେ ନାହିଁ । ମୋ ଯୋଗେ ଅବଶ୍ୟ ତୁମର ଗୋଟିଏ ପୁଅ ହେବ । ମାତ୍ର ତୁମର କୁମାରୀତ୍ୱ ଅକ୍ଷୁଣ୍ଣ ରହିବ । ପିଲାଟି ତୁମର କର୍ଣ୍ଣପଥ ଦେଇ ଜନ୍ମହେବ ।" ତାହାହିଁ ହେଲା ।

କର୍ଣ୍ଣପଥଦେଇ ଜନ୍ମହେତୁ ପିଲାଟିର ନାମ ହେଲା କର୍ଣ୍ଣ । ନାମ ଦେଇ ସାରି ସୂର୍ଯ୍ୟଦେବତା ଅନ୍ତର୍ଦ୍ଧାନ ହେଲେ । କୁନ୍ତୀ ପିଲାଟିକୁ କୋଳକୁ ନେଇ ଦେଖିଲେ ତାର କି ତେଜ ! ସତେ ଯେପରି ବାଳସୂର୍ଯ୍ୟଙ୍କୁ ସେ କୋଳରେ ଧରିଛନ୍ତି ! ପୁଣି ତାର ଦେହରେ ଅଭେଦ କବଚ, କାନରେ ଅମୃତ କୁଣ୍ଡଳ । ସୂର୍ଯ୍ୟ ଗଲାବେଳେ କହି ଯାଇଛନ୍ତି, ଅଭେଦ କବଚ ଥିବାରୁ କର୍ଣ୍ଣ ଦେହରେ କୌଣସି ଅସ୍ତ୍ରଶସ୍ତ୍ର ଭେଦିବ ନାହିଁ । କେବେ ଚେତା ହରାଇଲେ କିମ୍ବା ମରିଗଲେ ମଧ୍ୟ ସୂର୍ଯ୍ୟକିରଣ ଲାଗି ଅମୃତ କୁଣ୍ଡଳରୁ ଅମୃତ ଝରିବ ଓ କର୍ଣ୍ଣ ସଙ୍ଗେ ସଙ୍ଗେ ବଞ୍ଚି ଉଠିବ । ତେବେ ତ ଏ ପୁଅ ଅମର !

ହେଲେ ଏତେ ସୁନ୍ଦର ଓ ଗୁଣର ପୁଅକୁ ନେଇ କୁନ୍ତୀ ଏବେ କରିବେ କଣ ? ଅବିବାହିତ କୁମାରୀ ଝିଅ ପିଲା ପାଇଛି ଜାଣିଲେ

ଲୋକେ ଛି ଛି କରିବେ । ବାପା ମା  ଦଣ୍ଡରେ  ହାତ ଦେଇ  ବସିବେ । କେଜାଣି  ଘରୁ  ବାହାର  କରିଦେବେ । କୁନ୍ତୀ ମହା ଚିନ୍ତାରେ ପଡ଼ିଲେ । ଅନେକ ଭାବ ଭାବି ଶେଷକୁ ଗୋଟିଏ  ଉପାୟ  ଠିକ୍  କଲେ । ମାଟିରେ ଗୋଟିଏ  ବାକ୍ସ  ତିଆରି  କଲେ । ପିଲାଟିକୁ  ନେଇ  ତା  ଭିତରେ ଥୋଇବା  ସଙ୍ଗେ  ସଙ୍ଗେ ତା  ଦେହର  ତେଜରେ  ମାଟି  ଶୁଖିଗଲା  ଓ ବାକ୍ସଟି  ସୁନା  ପାଲଟି  ଗଲା । "ହେ  ଧର୍ମଦେବତା, ମୋ  ପୁଅକୁ ରକ୍ଷାକରିବ" । ଏହା  କହି  କୁନ୍ତୀ  ସେ  ବାକ୍ସଟିକୁ  ନଈପାଣିରେ ଭସାଇଦେଲେ ।

ଅନୁସୂୟା (ଅନସୂୟା) ନାମକ ସ୍ବର୍ଗର  ଅପ୍ସରା  ଇନ୍ଦ୍ରଙ୍କ  ଶାପରେ ମର୍ତ୍ତ୍ୟରେ  ସଜୟ  ମନ୍ତ୍ରୀଙ୍କ  ଝିଅ  'ରାଧା'  ରୂପରେ ଜନ୍ମ ହୋଇଥାନ୍ତି । ରାଧା ନଈକୁ ଗାଧୋଇ  ଆସି  ପିଲାଟିକୁ  ପାଇଲେ  ଓ  ନିଜ  ପୁଅ  ପରି ପାଳିଲେ ।

କିଛି  କାଳ  ପରେ  ପଣ୍ଡୁଙ୍କ  ସହିତ  କୁନ୍ତୀଙ୍କର  ବିବାହ ହୋଇଗଲା ।

—*—





# ମହାଭାରତ

## ସାରଳା

### ଦ୍ୱିତୀୟ ଅଧ୍ୟାୟ

## ମହାରାଜା ପଣ୍ଡୁ

ବଡ଼ଭାଇ ଧୃତରାଷ୍ଟ୍ର ଅନ୍ଧହେତୁ ପଣ୍ଡୁ ରାଜା ହେଲେ ଓ ପ୍ରଜାମାନଙ୍କୁ ଉତ୍ତମଭାବେ ପାଳିଲେ । ବାରୁଣାବନ୍ତ ତାଙ୍କ ରାଜଧାନୀ ହେଲା ।

ଦିନେ ପଣ୍ଡୁ, ନିଜ ସ୍ତ୍ରୀ କୁନ୍ତୀଙ୍କୁ ସଙ୍ଗରେ ଧରି ବଡ଼ଭାଇ ଧୃତରାଷ୍ଟ୍ରଙ୍କୁ ଦେଖିବାପାଇଁ ହସ୍ତିନାପୁର ଗଲେ । ଏମାନେ ପହଞ୍ଚିଲା ବେଳକୁ ଧୃତରାଷ୍ଟ୍ର, ଓ ଗାନ୍ଧାରୀ ଦୁହେଁ ବସି କଥାବାର୍ତ୍ତା ହେଉଥିଲେ । ଧୃତରାଷ୍ଟ୍ର କହୁଥିଲେ "ଧିକ ମୋ ଜୀବନ ! ମୁଁ ଅନ୍ଧବୋଲି ସିନା ବଡ଼ଭାଇ ରାଜା ନହୋଇ ସାନଭାଇ ପଣ୍ଡୁ ରାଜାହେଲା । ଏପରି ବଞ୍ଚିରହିବାଠାରୁ ମରିଯିବା ବରଂ ଭଲ ।" ପଣ୍ଡୁଙ୍କ କାନରେ ଏକଥା ପଡ଼ିଗଲା ।

ପଣ୍ଡୁ ମହାଧାର୍ମିକ ଓ ଭ୍ରାତୃଭକ୍ତ । ସେ ସଙ୍ଗେ ସଙ୍ଗେ ନିଜମୁଣ୍ଡରୁ ରାଜମୁକୁଟ କାଢ଼ି ଧୃତରାଷ୍ଟ୍ରଙ୍କ ମୁଣ୍ଡରେ ପିନ୍ଧାଇଦେଲେ ଓ ବିଧି ଅନୁସାରେ ବଡ଼ଭାଇଙ୍କ ହସ୍ତରେ ରାଜ୍ୟ ଅର୍ପଣ କରିଦେଇ କୁନ୍ତୀଙ୍କୁ ସଙ୍ଗରେ ଘେନି ବନବାସ କଲେ । ସେ ଗଲାବେଳେ ଜଣେ ବୃଦ୍ଧମନ୍ତ୍ରୀ ପଚାରିଲେ, "ଧୃତରାଷ୍ଟ୍ର ତ ଅନ୍ଧ । ସେ କିପରି ରାଜ୍ୟ ଶାସନ

କରିବେ ?” ପଣ୍ଡୁ କହିଲେ, “ମୁଁ ବଣରେ ଥିବ । ମାତ୍ର ମୋର ମନଭେଦୀ ଶର ସର୍ବଦା ରାଜ୍ୟସାରା ପରିକ୍ରମା କରୁଥିବ । ଦୁଷ୍ଟ ଦାନବ ଦେଖିଲେ ଅବଶ୍ୟ ବଧ କରିବ ।” ମନ୍ତ୍ରୀ ପୁଣି ପଚାରିଲେ “ଆପଣଙ୍କର ତ୍ୟାଗ ଅତୁଳନୀୟ । ଆପଣ ବଡ଼ଭାଇଙ୍କୁ ରାଜପଦ ଦେଇସାରି ବଣକୁ ନଯାଇ ନଅରରେ ରହିଲେ କିଛି ଅସୁବିଧା ହେବକି ?” ପଣ୍ଡୁ କହିଲେ, “ମୁଁ ନଅରରେ ବାସକଲେ କାଳେ କେତେବେଳେ ବଡ଼ଭାଇଙ୍କ ମନରେ କିଛି ଅଶାନ୍ତି ସୃଷ୍ଟି ହେବ । ସୁତରାଂ ମୋର ବଣକୁ ଯିବାହିଁ ଶ୍ରେୟସ୍କର । ମୁଁ ବଣରେ ରହିଲେ ମଧ୍ୟ ମହାରାଜା ଧୃତରାଷ୍ଟ୍ରଙ୍କର ଆଦେଶମାନ କାର୍ଯ୍ୟ କରୁଥିବ ଓ ରାଷ୍ଟ୍ରକୁ ଶତ୍ରୁ ଉପଦ୍ରବରୁ ରକ୍ଷା କରୁଥିବ । ଏଥିରେ ଭଲେହେଲେ ଅନ୍ୟଥା ହେବନାହିଁ ।”

ଧୃତରାଷ୍ଟ୍ରଙ୍କର ହୃଦୟ ପଣ୍ଡୁଙ୍କ ପ୍ରତି କୃତଜ୍ଞତାରେ ଭରିଗଲା । ଆଖି ତାଙ୍କର ଲୁହ ଛଳ ଛଳ ହୋଇଗଲା । କଣ୍ଠରୁଦ୍ଧ ହୋଇଗଲା । ସେ ପଣ୍ଡୁଙ୍କୁ କୁଣ୍ଢାଇ ପକାଇ ଏତିକିମାତ୍ର କହିଲେ, “ବାବୁ, ଏ ଅନ୍ଧ ଭାଇକୁ ଦେଖିବା ପାଇଁ ବେଳେବେଳେ ଆସୁଥିବୁ ।” ପଣ୍ଡୁ ଓ କୁନ୍ତୀ, ଧୃତରାଷ୍ଟ୍ର ଓ ଗାନ୍ଧାରୀଙ୍କୁ ପ୍ରଣାମ ଜଣାଇ ବନ ଗମନ କଲେ ଓ ବନ ମଧ୍ୟରେ ଶତଶୃଙ୍ଗ ପର୍ବତ ଉପରେ ବାସକଲେ । କିଛିକାଳ ପରେ ମଦ୍ର ଦେଶର ରାଜକନ୍ୟା ମାଦ୍ରୀଙ୍କୁ ମଧ୍ୟ ପଣ୍ଡୁ ବିବାହ କଲେ ।

## ଅଗ୍ନିକା ଋଷି

ଦିନେ ପଣ୍ଡୁ ମୃଗୟା ପାଇଁ ଗହନ ବନରେ ବୁଲୁ ବୁଲୁ ଦୂରରେ ଗୋଟିଏ ମୃଗ ବୋବାଇବାର ଶବ୍ଦ ଶୁଣି ପାରିଲେ । ସଙ୍ଗେ ସଙ୍ଗେ ସେହି ଶବ୍ଦକୁ ଲକ୍ଷ୍ୟକରି ସେ ଶବ୍ଦଭେଦୀ ଶର ମାରିଲେ । ତା ପରେ ପାଖକୁ ଯାଇ ଯାହା ଦେଖିଲେ ସେଥିରେ ତାଙ୍କର ଦୁଃଖ ଓ ଆଶ୍ଚର୍ଯ୍ୟର ସୀମା ରହିଲନାହିଁ । ସେ ଦେଖିଲେ ଜଣେ ମହାତେଜା ଋଷି ଗୋଟିଏ ମୃଗୁଣୀର ସହିତ ଶୃଙ୍ଗାର କରିବା ଅବସ୍ଥାରେ ଶର ଦୁହିଁଙ୍କ ଦେହରେ ଫୁଟି ଯାଇଛି ଓ ଦୁହେଁ ମରଣ ଯନ୍ତ୍ରଣାରେ ଛଟପଟ ହେଉଛନ୍ତି । ମୃଗୁଣୀ ସହିତ ମଣିଷର ଶୃଙ୍ଗାର ତ କାହିଁ ଶୁଣାନାହିଁ । ପୁଣି ସେ ଜଣେ

ସାଧାରଣ ଲୋକ ନୁହନ୍ତି । ତାଙ୍କ ଦେହର ତେଜରେ ବନସ୍ଥଳୀ ଆଲୋକିତ ହୋଇଯାଇଛି । ପାଣ୍ଡୁ ନିକଟକୁ ଯିବାରୁ ତାଙ୍କୁ ନିଜର ହତ୍ୟାକାରୀ ବୋଲି ଜାଣି ଋଷି କ୍ରୋଧରେ ଶାପ ଦେଲେ । "ରାଜା, ତୁମେ ମୋତେ ବିନା ଅପରାଧରେ ଶୃଙ୍ଗାର କାଳରେ ହତ୍ୟାକଲ । ସେହିପରି ତୁମର ଶୃଙ୍ଗାର କାଳରେ ତୁମ ଉପରେ ଅକାଳ କାଣ୍ଡ ଆସି ପଡ଼ୁ ।"

ପାଣ୍ଡୁ ଆଉ କଣ କହିବେ ! ଦୁଃଖରେ ତାଙ୍କର ଛାତି ଫାଟିଗଲା ପରି ଲାଗିଲା । ମୁନିଙ୍କ ଆଦେଶ ପାଇ ସେ ତାଙ୍କ ଦେହରୁ ଅସ୍ତ୍ର ଶରଟି କାଢ଼ିନେବା ମାତ୍ରେ ମୁନିଙ୍କ ପ୍ରାଣବାୟୁ ଉଡ଼ିଗଲା । ମୃଗୁଣୀ ମଧ୍ୟ ସଙ୍ଗେ ସଙ୍ଗେ ଗୋଟିଏ ପୁତ୍ର ପ୍ରସବ କରି ମରିଗଲା । ପାଣ୍ଡୁ ବଣରୁ କାଠ ସଂଗ୍ରହ କରି ଉଭୟଙ୍କୁ ଦାହ କଲେ । ପୁତ୍ରଟିର ଲାଳନ ପାଳନ ବ୍ୟବସ୍ଥା କଲେ । ପରେ ସେହି ପୁତ୍ରର ନାମ ହେଲା ମୃଗଋଷି ।

ଘରକୁ ଫେରି ପାଣ୍ଡୁ ଘୋର ଦୁଃଖ ଓ ଲଜ୍ଜାରେ କୁନ୍ତୀ ଓ ମାଦ୍ରୀଙ୍କୁ ମୁହଁ ଦେଖାଇ ପାରିଲେ ନାହିଁ । ଦିନେ କୁନ୍ତୀ ପାଣ୍ଡୁଙ୍କୁ ତାଙ୍କ ଦୁଃଖର କାରଣ ପଚାରିବାରୁ ପାଣ୍ଡୁ ସବୁ ଘଟଣା କହିଗଲେ । ସେ ଘଟଣା ଶୁଣି କୁନ୍ତୀ ଓ ମାଦ୍ରୀ ମଧ୍ୟ ଦୁଃଖରେ ବୁଡ଼ିଗଲେ । ବ୍ୟାସଦେବଙ୍କୁ ଡକାଗଲା । ସେ ବି ଏହାଶୁଣି ଅତ୍ୟନ୍ତ ଦୁଃଖିତ ହେଲେ । ମାତ୍ର ଆଉ ଉପାୟ କଣ ! ଋଷି ଅଭିଶାପ ଅବଶ୍ୟ ଫଳିବ । ତାକୁ ଏଡ଼ିବାର ଶକ୍ତି କାହାର ନାହିଁ । ପାଣ୍ଡୁଙ୍କର ଆଶାଥିଲା, ବ୍ୟାସଦେବ ଏହାର କିଛି ପ୍ରତିକାର କରିପାରିବେ । ମାତ୍ର ତାଙ୍କଠାରୁ ଏପରି ନିରାଶ ବାଣୀ ଶୁଣି ପାଣ୍ଡୁ ବଡ଼ କାତର ହୋଇ ପଡ଼ିଲେ । ବଞ୍ଚି ରହିବାକୁ ହେଲେ ତାଙ୍କୁ ଏଣିକି ସାରାଜୀବନ ସ୍ତ୍ରୀ ସହବାସ ତ୍ୟାଗ କରିବାକୁ ହେବ । ମାତ୍ର ପାଣ୍ଡୁ ଯେ ଅଦ୍ୟାବଧି ନିଃସନ୍ତାନ । ଏବେ ବଂଶ ରକ୍ଷାହେବ କିପରି ? ଏତିକି ବେଳେ ବ୍ୟାସଦେବ ମନେ ପକାଇ ଦେଲେ ଯେ ଦୁର୍ବାସା ଦେଇଥିବା ମନ୍ତ୍ରମାଳାକୁ ଜପକରି କୁନ୍ତୀ ଓ ମାଦ୍ରୀ ପୁତ୍ରବତୀ ହୋଇ ପାରିବେ । ଦେବତାଙ୍କୁ ପତିରୂପେ ପ୍ରାପ୍ତ ହେଲେ ବ୍ୟଭିଚାରିଣୀ ଦୋଷ ଲାଗିବନାହିଁ । ତେଣୁ ଏହିପ୍ରକାର ବଂଶରକ୍ଷା ହେବାରେ କୌଣସି ବାଧାନାହିଁ ।

ଏହାଶୁଣି ସମସ୍ତେ କେତେକ ପରିମାଣରେ ଆଶ୍ୱସ୍ତ ହେଲେ । ଏହାପରେ ପଣ୍ଡୁ ବ୍ୟାସଦେବଙ୍କୁ ଅଗ୍ନିକାଋଷିଙ୍କର ପୂର୍ବଜନ୍ମ କଥା ପଚାରିଲେ । ବ୍ୟାସଦେବ କହିଲେ, "ଅଗ୍ନିକାଋଷି ପ୍ରଜାପତି ମୁନିଙ୍କ ପୁଅ । ଜନ୍ମ ହୋଇ ସେ ମା' କ୍ଷୀର ମଧ୍ୟ ଖାଇନାହାନ୍ତି । ସାରାଜୀବନ ସେ ଆହାର, ନିଦ୍ରା ମୈଥୁନ ଛାଡ଼ି ଘୋର ତପସ୍ୟା କଲେ । ଥରେ କୁଶ ଦ୍ୱୀପର ରାଜା ସତ୍ୟବାଗ ମକର ସଂକ୍ରାନ୍ତି ଦିନ ନିଜ ରାଣୀଙ୍କୁ ସଙ୍ଗରେ ନେଇ ସମୁଦ୍ର ସ୍ନାନ କରିବାକୁ ଯାଇଥିଲେ । ସେ ରାଣୀ ବଡ଼ ଅସତୀ । ଅଗ୍ନିକାଋଷିଙ୍କୁ ଏକାନ୍ତରେ ଦେଖି ତାଙ୍କ ସହିତ ଶୃଙ୍ଗାର କରିବାପାଇଁ ରାଣୀ ମନବଳାଇଲେ । ମାତ୍ର ଅଗ୍ନିକାଋଷି ତ ଆଜନ୍ମ ବ୍ରହ୍ମଚାରୀ । ସେ ଏଥିରେ ରାଜି ହେଲେ ନାହିଁ । ଓଲଟି ରାଜାଙ୍କ ପାଖକୁ ଯାଇ ଏକଥା ତାଙ୍କୁ କହିଦେଲେ । ରାଜା ଗୋଳା । ସେ ଏକଥା ଶୁଣି ଖପ୍ପା ରାଗିଯାଇ ସଙ୍ଗେ ସଙ୍ଗେ ନିଜ ସ୍ତ୍ରୀଙ୍କୁ ହାଣି ଦୁଇଖଣ୍ଡ କରିଦେଲେ ।

ଯମଦେବତାଙ୍କ ବିଚାରରେ ରାଜାଙ୍କୁ ତ ସ୍ତ୍ରୀ ହତ୍ୟାଦୋଷ ଲାଗିଲା । ତା ସଙ୍ଗେ ସଙ୍ଗେ ଋଷିଙ୍କୁ ମଧ୍ୟ କିଛି ସ୍ତ୍ରୀ ହତ୍ୟାଦୋଷ ଲାଗିଲା । ତେଣୁ ପରଜନ୍ମରେ ଶୃଙ୍ଗାର ବେଳେ ସେ ମରିବେ ବୋଲି ତାଙ୍କ ପ୍ରତି ଦଣ୍ଡ ବିଧାନ ହେଲା । ରାଣୀ ମରିବାର ଠିକ୍ ପୂର୍ବରୁ ଋଷିଙ୍କ ସଙ୍ଗେ ଶୃଙ୍ଗାର ଇଚ୍ଛା କରିଥିବାରୁ ସେ ପରଜନ୍ମରେ ମୃଗୁଣୀ ହୋଇ ତାହା ପାଇବେ ଓ ଅସତୀ ଦୋଷ ହେତୁ ମିଳନ ଅବସ୍ଥାରେ ମରିବେ । ଏହି ଦଣ୍ଡ ତାଙ୍କୁ ଦିଆଗଲା ।

ଅଗ୍ନିକା ଋଷି ସାରାଜୀବନ ତପସ୍ୟା କରି ଶେଷରେ ଆୟୁଷ ପୂରିବାରୁ ଯମଦୂତମାନେ ତାଙ୍କୁ କୁମ୍ଭୀପାକ ନର୍କରେ ପକାଇବାକୁ ନେଇଗଲେ । ଋଷି ଏହାର କାରଣ ପଚାରିବାରୁ ଯମଦେବ ବିନୟରେ କହିଲେ, "ଆପଣ ମହାତପସ୍ୱୀ । ମାତ୍ର ନିଃସନ୍ତାନ ହୋଇ ଦେହ ଛାଡ଼ିଲେ । ସନ୍ତାନ ନଥିଲେ ସବୁ ଧର୍ମ ନଷ୍ଟ ହୁଏ । ତେଣୁ ଆପଣଙ୍କୁ ନର୍କଭୋଗ କରିବାକୁ ହେବ ।" ମାତ୍ର ଏତେ ବଡ଼ ଋଷି ନର୍କଭୋଗ କଲେ ଋଷିକୁଳକୁ ବାଧକ ହେବ । ଏହା ଭାବି ଯମଦେବ ତାଙ୍କୁ ପୁଣି ଥରେ ମର୍ତ୍ତ୍ୟକୁ ଫେରିଯାଇଁ ପୁତ୍ର ଉପୁଜାଇବାଲାଗି ଆଦେଶ ଦେଲେ । ସେହି ଅଗ୍ନିକାଋଷି ଯାହାଙ୍କୁ ତୁମେ ମୃଗୁଣୀ ସହିତ ଶୃଙ୍ଗାରରତ ଥିଲାବେଳେ

ବଧ କଲ । ଋଷି ପୁତ୍ର ପାଇଥିବାହେତୁ ଏବେ ସ୍ୱର୍ଗଲାଭକରି ଆନନ୍ଦରେ ଅଛନ୍ତି । ”

## ପାଣ୍ଡବ ଓ କୌରବ ଜନ୍ମ

ବ୍ୟାସଦେବ ଫେରିଯିବାପରେ କୁନ୍ତୀ ମନ୍ତ୍ରମାଳାକୁ ଜପକରି ପ୍ରଥମେ ଧର୍ମଦେବତାଙ୍କୁ ଆବାହନ କଲେ ଓ ତାଙ୍କ ପ୍ରସାଦରେ ଯୁଧିଷ୍ଠିର ଜନ୍ମ ହେଲେ । ତାଙ୍କ ଜନ୍ମ ସମୟରେ ଗୃହଆଡ଼ ଆଲୋକିତ ହୋଇଗଲା । ଦେବତାମାନେ ଉପରୁ ପୁଷ୍ପ ବୃଷ୍ଟି କଲେ ଓ ଆକାଶରେ ଥାଇ ଧର୍ମନନ୍ଦନଙ୍କୁ ଦର୍ଶନ କଲେ ।

ଯୁଧିଷ୍ଠିର କ୍ରମେ ବଡ଼ ହୋଇ ଚାଲିବାରୁ ତାଙ୍କ ପାଦ ଭୂମିରେ ଲାଗିଲାନାହିଁ । ଦିନେ କୁନ୍ତୀ ଦେଖିଲେ, ଯୁଧିଷ୍ଠିରଙ୍କ ଦେହରେ ଗୋଟିଏ ମଶା ବସିଲା । ସେ ତାକୁ ନମାରି ଧୀରେ ଉଡ଼ାଇଦେଲେ । ଆଉ ଥରେ ଗୋଟିଏ ଝିଣ୍ଟିପିଟି ଗଛରୁ ଖସି ପଡ଼ିଲା । ଯୁଧିଷ୍ଠିର ପାଖରେ ଖେଳୁଥିଲେ । ଆହା, ଆହା, କହି ଧାଇଁଯାଇ ଝିଣ୍ଟିପିଟିର କାନଫୁଙ୍କି ବସିଲେ ଓ ତାକୁ ସାନ୍ତ୍ୱନା କଲେ । କୁନ୍ତୀ ଏହା ଦେଖି ମନରେ ଭାବିଲେ, ଏ ପୁତ୍ର ଦ୍ୱାରା କିଛି କାର୍ଯ୍ୟ ହେବନାହିଁ । ଏତ ଅତି ଧର୍ମବନ୍ତ ହେବ । କ୍ଷତ୍ରିୟ ବୃତ୍ତି ଆଚରିବନାହିଁ । ତେଣେ ଦୁର୍ବାସାଙ୍କ ବରରେ ଗାନ୍ଧାରୀ ଶହେ ପୁଅ ପାଇଲେଣି । ସମସ୍ତେ କୁଆଡ଼େ ଅତି ଦୁଷ୍ଟ ଓ ବଳବାନ୍ । ସେମାନଙ୍କ ସଙ୍ଗରେ ଟକ୍କର ଦେଲାଭଳି ଗୋଟିଏ ପୁଅ ନିତାନ୍ତ ଦରକାର ।

ତେଣୁ କୁନ୍ତୀ ପୁନର୍ବାର ମନ୍ତ୍ରମାଳା ଜପକରି ଦେବତାଙ୍କ ମଧ୍ୟରେ ସବୁଠାରୁ ବଳବାନ୍ ପବନ ଦେବତାଙ୍କୁ ଆହ୍ୱାନ କଲେ ଓ ତାଙ୍କର ଔରସରେ ମହାବୀର ଭୀମସେନ ଜାତ ହେଲେ । ଭୀମ ଜନ୍ମ ହେଲା ମାତ୍ରେ ଶତଶୃଙ୍ଗ ପର୍ବତ ତାର ଭାର ସହିନପାରି ଦବିଗଲା । ଏହି ସମୟରେ ଆଉ ମଧ୍ୟ ଏକ ଅଦ୍ଭୁତ ଘଟଣା ଘଟିଲା । ଭୀମର କାନ୍ଦିବା ଶବ୍ଦ ଶୁଣି କଅଁଳ ମାଂସ ଲୋଭରେ ବଣରୁ ଏକ ମହାବଳ ବାଘ ଛୁଟିଆସିଲା । ତାକୁ ଦେଖି କୁନ୍ତୀ ନିରୁପାୟ ହୋଇ ପିଲାକୁ ଗୁଡ଼ି ଉପରେ ଗୋଟାଏ ଗଛରେ ଚଢିଗଲେ । ଭୀମ ଗୋଡ଼ ହାତ ଛାଟି କାନ୍ଦୁଥିବା ଅବସ୍ଥାରେ ବାଘ ତାକୁ

କାମୁଡ଼ ନେଇଯିବାକୁ ପାଟି ବଢ଼ାଇଲା । କୁନ୍ତୀ ଏ ଦାରୁଣ ଦୃଶ୍ୟ ନ ଦେଖିବାକୁ ଦୁଇ ହାତରେ ଆଖି ବୁଜିଦେଲେ ।

ମାତ୍ର ଏତିକି ବେଳେ ଭୀମ ଗୋଟିଏ ଗୋଡ଼ ଝାଡ଼ିଦେବାରୁ ତାହା ବାଘର ଛାତିରେ ବାଜିଲା । ବାଘ ସଙ୍ଗେ ସଙ୍ଗେ ରକ୍ତ ବାନ୍ତି କରିପକାଇ ସେହିଠାରେ ପଡ଼ିଗଲା । କିଛି ସମୟ ପରେ ପାଣ୍ଡୁ ବଣରୁ ଫେରି ଆସିଲେ । ବାଘ ମରି ପଡ଼ିଥିବା ଦେଖି ସମସ୍ତେ ବଡ଼ ଆଶ୍ଚର୍ଯ୍ୟ ହେଲେ । ଏହି ପୁଅଟି ଯେ ବଡ଼ ହେଲେ ମହାବଳବାନ ହୋଇ ଦୁଷ୍ଟ ସଂହାର କରିବ ଏହା ଭାବି କୁନ୍ତୀ ମନେ ମନେ ବଡ଼ ଆନନ୍ଦିତ ହେଲେ ।

ଏହା ପରେ ଭୀମ ଉପରେ ଆଉ ଏକ ବିପତ୍ତି ପଡ଼ିଲା । ତାର ଗୋଡ଼ ବାଜି ଶତଶୃଙ୍ଗ ପର୍ବତରୁ ଖଣ୍ଡେ ଭାଙ୍ଗି ଯିବାରୁ ପର୍ବତ ଅଭିଶାପ ଦେଲା, "ତୁ ଜନ୍ମ ହେଉ ହେଉ ମତେ ଭାଙ୍ଗିଲୁ । ତେଣୁ ସବୁବେଳେ ପ୍ରଥମ ଯୁଦ୍ଧରେ ତୁ ହାରିବୁ । କୁନ୍ତୀ ଏହା ଶୁଣି ପର୍ବତକୁ ବହୁତ ଅନୁନୟ ବିନୟ କରି କହିବାରୁ ପର୍ବତ ସନ୍ତୁଷ୍ଟ ହୋଇ କହିଲା, "ଭୀମ ପ୍ରଥମ ଯୁଦ୍ଧରେ ହାରିଲେ ମଧ୍ୟ ପରେ ମୋ ନାମଧରି ଯୁଦ୍ଧକଲେ ତାକୁ ଆଉ କେହି ହେଲେ ଜିଣି ପାରିବେ ନାହିଁ ।"

ପ୍ରତିଦିନ ରୋଷେଇ ଶେଷପରେ ଭୀମକୁ ଶୁଆଇ ଦେଇ କୁନ୍ତୀ ଓ ମାଦ୍ରୀ ନଈକୁ ଗାଧୋଇଯାନ୍ତି । ଫେରି ଦେଖନ୍ତି ଯେ ଭାତ, ତରକାରି ପ୍ରଭୃତି ରନ୍ଧା ଜିନିଷ କିଛି କିଛି କମି ଯାଇଛି । ପାଣ୍ଡୁ ମଧ୍ୟ ଏହା ଦେଖି ଆଶ୍ଚର୍ଯ୍ୟ ହୁଅନ୍ତି । ମାତ୍ର ଏହାର କାରଣ କିଛି ଜାଣି ପାରନ୍ତି ନାହିଁ । କାରଣ ଏହି ଯେ କୁନ୍ତୀ ମାଦ୍ରୀ ଗାଧୋଇ ଗଲା ପରେ ଭୀମ ଶୋଇବା ଠାରୁ ଉଠିଯାଇ ରୋଷେଇ ଘରେ ପଶିଯାଏ ଓ ଭାତ ତରକାରୀରୁ କିଛି କିଛି ଖାଇଦେଇ ପୁଣି ଆସି ଚୁପ୍‌ଚାପ ଶୋଇପଡ଼େ । ତାର ବୟସ ବଢ଼ିବା ସଙ୍ଗେ ସଙ୍ଗେ ସେ କ୍ରମେ ବେଶି ଖାଦ୍ୟ ଜିନିଷ ଏହିପରି ଲୁଚିଇ ଖାଇଲା । ଦିନେ କୁନ୍ତୀ ଦେଖିଲା ବେଳକୁ ସବୁ ହାଣ୍ଡି ଖାଲି । ସବୁ ଭାତ ତରକାରି କିଏ ପୋଛିପାଛି ଖାଇ ଦେଇଛି । ବଡ଼ ଆଶ୍ଚର୍ଯ୍ୟ କଥା, ଏତେ ଅଳ୍ପ ସମୟ ମଧ୍ୟରେ ଏତେ ଗୁଡ଼ାଏ ଖାଦ୍ୟ କିଏ ଖାଇ ଦେଉଛି । କୁକୁର ବିଲେଇ ପକ୍ଷରେତ ଏହା କେବେ ସମ୍ଭବ ନୁହେଁ । ପୁଣି ସେମାନେ ବନ୍ଦ ହୋଇଥିବା ଘର ଭିତରେ ପଶିବେ ବା କପରି ? ଭୀମପରି ଛୋଟ

ପିଲାଟିକି କିଏ ବା କାହିଁକି ସନ୍ଦେହ କରିବ ? କୁନ୍ତୀ ମାଦ୍ରୀଙ୍କର ଅନୁମାନ ହେଲା, ଏହା ଭୌତିକ କାଣ୍ଡ ହୋଇପାରେ ।

ମାତ୍ର ପଣ୍ଡୁଙ୍କ ମନ ଏଥିରେ ମାନିଲାନାହିଁ । ସେ ପରଦିନ ଘର ଭିତରେ ଲୁଚି ରହିଲେ । କୁନ୍ତୀ ମାଦ୍ରୀ ସବୁଦିନ ପରି ରୋଷେଇ ଶେଷ କରି ଗାଧୋଇବାକୁ ଗଲେ । କିଛି ସମୟ ପରେ ପଣ୍ଡୁ ଦେଖିଲେ, ଭୀମ ଧୀରେ ଶେଯରୁ ଉଠିଲା ଓ ରୋଷେଇ ଘରେ ପଶି ବଡ ଆନନ୍ଦରେ ରନ୍ଧା ଦ୍ରବ୍ୟ ସବୁ ଖାଇବାକୁ ଲଗିଲା । ଗୁହୁଁ ଗୁହୁଁ ସବୁ ଖାଦ୍ୟଚଳ ଶେଷ କରି ଦେଇ ଫେରି ଆସିଲା ବେଳକୁ ପଣ୍ଡୁଙ୍କ ଉପରେ ତାର ଦୃଷ୍ଟି ପଡ଼ିଗଲା । ସଙ୍ଗେ ସଙ୍ଗେ ଏକା ଖେପାକେ ଘରପ ଚଣ୍ଟ ଡେଇଁ ଦେ ଦୌଡ଼ । ପଣ୍ଡୁ ତା ପଛରେ ଗୋଡ଼ାଇଲେ । ଭୀମ ପବନ ବେଗରେ ଛୁଟି ଯାଉଛି । ପଣ୍ଡୁ ବ ଛାଡ଼ିବା ଲୋକ ନୁହନ୍ତି । ବାପ ପୁଅ ଦୁହେଁ ଏପରି ଦୌଡ଼ ଯାଉ ଯାଉ ଭୀମ ଗୋଟାଏ ଖାଲରେ ପଡ଼ିଗଲା । ଯେତେହେଲେ ତ ପିଲାଲୋକ । ବଡ଼ ମଣିଷ ସଙ୍ଗରେ କେତେ ବା ଦୌଡ଼ିବ ? ପଣ୍ଡୁ ଯାଇ ତାକୁ ଧରି ପକାଇଲେ । ତାଙ୍କର ରାଗରେ ବ୍ରହ୍ମ ଜଳୁଛି । ସଙ୍ଗେ ସଙ୍ଗେ ଖଣ୍ଡା କାଢ଼ି ଭୀମକୁ ହାଣିବାକୁ ବସିଲେ ।

ଶୂନ୍ୟରୁ ଅଗ୍ନି ଦେବତା ବାପପୁଅଙ୍କର ଏ ଦୌଡ଼ା ଦୌଡ଼ି ଦେଖୁଥିଲେ । ତାଙ୍କୁ ଏହାଦେଖି ବଡ଼ ମଜା ଲଗୁଥିଲା । ମାତ୍ର ପଣ୍ଡୁ ଯେତେବେଳେ ଭୀମକୁ ମାରିବାକୁ ବସିଲେ, ଅଗ୍ନି ଦେବତା ହଠାତ୍ ଗୋଟିଏ ବୁଢା ବ୍ରାହ୍ମଣ ବେଶରେ ସେଠାରେ ପହଞ୍ଚି ପଣ୍ଡୁଙ୍କ ହାତ ଧରିପକାଇ କହିଲେ, "ହାଁ ହାଁ, ଏ କଣ କରୁଛ ! କେଡ଼େ ସୁନ୍ଦର ଗୁଲୁଗୁଲିଆ, ଉଜ୍ଜଳ ତାଉଲ ପିଲାଟିଏ । ଏହାକୁ ମାରିବ କାହିଁକି ? ଇଏ କ ଦୋଷ କଲା ? ପଣ୍ଡୁ ଜଣେ ତେଜସ୍ୱୀନ ବ୍ରାହ୍ମଣଙ୍କୁ ପାଖରେ ଦେଖି କହିଲେ "ଗୋସାଇଁ, ଇଏ ମୋ ପୁଅ । ଏଡ଼େ ଦୁଷ୍ଟ ଯେ ସାରା କୁଟୁମ୍ବ ପାଇଁ ଯେତେ ଖାଦ୍ୟ ରନ୍ଧାହେଉଛି, ଏକା ଏଇ ସବୁସାକ ଖାଇ ଦେଉଛି । ହଅଁ, ଦେବତା, ପିତୃପୁରୁଷଙ୍କୁ ପ୍ରତିଦିନ ଏ ଦୁଷ୍ଟ ଅଇଁଠା ଖୁଆଇଲା । ଛାଡ଼ ତମେ, ତାକୁ ମୁଁ ଆଜ ନିଶ୍ଚେ ମାରିବ ।" ବ୍ରାହ୍ମଣ କହିଲେ "ବାଳୁତ ପିଲା, ମାଛି ସମାନ । ତାର ଗୋଟେ ଅଇଁଠା କଣ ?

ପିତୃଲୋକେ ତ ବାଳୁତର୍ ଉଚ୍ଛିଷ୍ଟକୁ ଆଶା କରଥାନ୍ତି । ଦେବତାମାନେ ମଧ୍ୟ ଏହା ମନରେ ଧରନ୍ତିନାହିଁ । ଏବେ ପୁଅକୁ ନେଇ ଶାନ୍ତ ମନରେ ଘରକୁ ଯାଅ ।" ମାତ୍ର ପଣ୍ଡୁ ମାନଲେ ନାହିଁ । ଶେଷରେ ଅଗ୍ନିଦେବତା ନଜର ପରଚୟ ଦେଲେ, "ଦେଖ ପଣ୍ଡୁ, ମୁଁ ସ୍ୱୟଂ ଅଗ୍ନିଦେବତା । ଏ ପୁଅକୁ ମାରଲେ ତୁମେ ପଛରେ ଘୋର ଅନୁତାପ କରବ । ଦୁଷ୍ଟ ସଂହାର କର ପୃଥିବୀର ଭାର ନବାରଣ ନମିତ୍ତ ଏହାର ଜନ୍ମ । ଏହାଦ୍ୱାରା ଦେବ-କାର୍ଯ୍ୟ ସାଧନ ହେବ । ମୋ କଥାମାନ ଏହାକୁ ଛାଡ଼ ।" ପଣ୍ଡୁ କହଲେ "ଆପଣ ଯଦ ଅଗ୍ନିଦେବତା, ତେବେ ଆପଣଙ୍କର ସ୍ୱରୂପ ପ୍ରକାଶ କରନ୍ତୁ । ତା ହେଲେ ମୁଁ ବଶ୍ୱାସ କରବ ।" ସଙ୍ଗେ ସଙ୍ଗେ ଅଗ୍ନିଦେବତା କୋଟିସୂର୍ଯ୍ୟ ତେଜଧର ଝଟକଶି ଉଠିଲେ । ପଣ୍ଡୁ ମହା ଭୟପାଇ ତାଙ୍କର ସ୍ତୁତ ଆରମ୍ଭ କଲେ । ଅଗ୍ନିଦେବତା ପଣ୍ଡୁଙ୍କ ସ୍ତୁତରେ ସନ୍ତୁଷ୍ଟ ହୋଇ ଶାନ୍ତମୂର୍ତ୍ତି ଧରଲେ ଓ ପିତାପୁତ୍ରଙ୍କୁ ଆଶୀର୍ବାଦ କର ଅନ୍ତର୍ଦ୍ଧାନ ହୋଇଗଲେ । ପଣ୍ଡୁ ଭୀମଙ୍କୁ କାଖରେ ବସାଇ ଘରକୁ ଫେରଲେ । କଛି ଦନ ପରେ କୁନ୍ତୀ ଦେବରାଜ ଇନ୍ଦ୍ରଙ୍କ ପ୍ରସାଦରେ ମହାବୀର ଅର୍ଜୁନଙ୍କୁ ଜନ୍ମଦେଲେ । ଅର୍ଜୁନ ଅତ୍ୟନ୍ତ ସୁନ୍ଦର ଓ ସବୁଗୁଣରେ ପରପୂର୍ଣ୍ଣ ହେଲେ । ସେ ବଷ୍ଣୁକଳା ନେଇ ଜନ୍ମ ହୋଇଥିଲେ । ତେଣୁ ସେ ଭଗବାନ ଶ୍ରୀକୃଷ୍ଣଙ୍କର ଅନ୍ତରଙ୍ଗ ବନ୍ଧୁ ହେଲେ । ମାଦ୍ରୀ ମଧ୍ୟ ସେହି ମନ୍ତ୍ରମାଳା ଜପକର ସ୍ୱର୍ଗବୈଦ୍ୟ ଅଶ୍ୱିନୀକୁମାରଙ୍କଠାରୁ ନକୁଳଙ୍କୁ ପୁତ୍ରରୂପେ ପାଇଲେ ।

## ମାଳ ହେଲା କାଳ

ଦନେ କୁନ୍ତୀ ଖବର ପାଇଲେ ଯେ ଗାନ୍ଧାରୀ ନଜ ସ୍ୱାମୀଙ୍କ ଦୁଃଖରେ ସମଦୁଃଖୀ ହୋଇ ଆପଣା ଆଖିରେ ଅନ୍ଧପୁଟୁଳୀ ବାନ୍ଧଦେଇଛନ୍ତି । ଅନ୍ଧ ସ୍ୱାମୀଙ୍କୁ ସେ ଚଳପ୍ରଚଳ କରାଉଥିଲେ । ଏବେ ସେ ନଜେ ଅନ୍ଧପଟଳ ବାନ୍ଧିବାରୁ ବଚରା ଧୃତରାଷ୍ଟ୍ର ବଡ଼ ଅସୁବଧା ଭୋଗ କରୁଥିବେ । ଏହାଭାବ ଅନ୍ଧପଟଳ ଖୋଲବାକୁ ଗାନ୍ଧାରୀଙ୍କୁ ବୁଝାଇବାପାଇଁ ପଣ୍ଡୁ କୁନ୍ତୀଙ୍କୁ ହସ୍ତିନାପୁର ପଠାଇଲେ । କୁନ୍ତୀ ନଜର ତ୍ରିଗୋଟି ପିଲାଙ୍କୁ ସଙ୍ଗରେଧର ହସ୍ତିନାପୁର ଗଲେ ।

ଏଣେ ଅର୍ଦ୍ଧରାତ୍ର ସମୟରେ ମାଦ୍ରୀ ପଲଙ୍କ ଉପରେ ଶୋଇ ନିଜ ସ୍ୱାମୀ ପାଣ୍ଡୁଙ୍କୁ ମନେ ପକାଉଥାନ୍ତି । ଏ ଘୋର ରାତ୍ରକାଳରେ ପାଣ୍ଡୁ ବଡ଼ବଡ଼ ବଣରେ କେଉଁ ଜନ୍ତୁ ପଛରେ ଗୋଡ଼ାଉଥିବେ କିମ୍ବା କେଉଁଠି କୌଣସି ଶତ୍ରୁକୁ ଘଉଡ଼େଇବାରେ ଲାଗିଥିବେ । ହାୟ, ବିଧାତା ତାଙ୍କ ଜୀବନରୁ ସଂସାର ସୁଖ ସବୁ ପୋଛିଦେଲା । ଏହିପରି ଭାବୁ ଭାବୁ ଦୁର୍ବାସାଙ୍କ ମାଳ ଉପରେ ହଠାତ୍ ତାଙ୍କର ଦୃଷ୍ଟି ପଡ଼ିଲା । ସେ ମାଳାଟିକୁ ଅନ୍ୟମନସ୍କଭାବେ ହାତରେ ଧରି ଗଡ଼ାଇଲେ । କିଛି ସମୟ ପରେ ପାଣ୍ଡୁ ଆସି ତାଙ୍କ ପାଖରେ ହାଜର । ମାଦ୍ରୀ ଏପରି ହଠାତ୍ ଆସିବାର କାରଣ ପଚାରନ୍ତେ ପାଣ୍ଡୁ ତାଙ୍କ ହାତରେ ଥିବା ମନ୍ତ୍ରମାଳାକୁ ଦେଖାଇଦେଲେ । ମାଦ୍ରୀ ଏବେ ନିଜର ଭୁଲ ବୁଝିପାରି ଅତ୍ୟନ୍ତ ବିକଳ ହେଲେ । ପାଣ୍ଡୁ ଜାଣିଲେ ଯେ ତାଙ୍କର ମରଣ ନିକଟ ହୋଇଗଲା । ସେ ମାଦ୍ରୀଙ୍କୁ ପ୍ରବୋଧନ ଦେଇ କହିଲେ, "ଦେବୀ, ଆଉ ଦୁଃଖକରି ଲାଭନାହିଁ । ନିୟତିର ବିଧାନକୁ କେହି ଏଡ଼ି ପାରିବେ ନାହିଁ । ତେବେ ମନରେ ଏତିକିମାତ୍ର ଅବଶୋଷ, ମରିବା ପୂର୍ବରୁ ମୋ ପିଲାମାନଙ୍କୁ ଦେଖିପାରିଲିନାହିଁ । ଛାଡ଼, ଏବେ ଆସ ଆମେ ପୂର୍ଣ୍ଣପ୍ରାଣରେ ମିଳନ ସୁଖ ଉପଭୋଗ କରିବା ଓ ହସି ହସି ମରଣକୁ ବରଣ କରିବା ।" ତାହାହିଁ ହେଲା । ମିଳନର ଶେଷ ପର୍ଯ୍ୟାୟରେ ଏକ କାଣ୍ଡ ଆସି ପଡ଼ି ପାଣ୍ଡୁ ଓ ମାଦ୍ରୀଙ୍କର ଜୀବନ ଦୀପ ଲିଭାଇଦେଲା । ଏତେଦିନେ ଅଗ୍ନିକା ଋଷିଙ୍କର ଅଭିଶାପ ଫଳିଲା ।

ମାଦ୍ରୀଙ୍କର ସଙ୍ଗେ ସଙ୍ଗେ ଗୋଟିଏ ପୁଅ ଜନ୍ମହେଲା । ମାତା ପିତା ମରି ପଡ଼ିଛନ୍ତି । ଅନ୍ୟକେହି ପାଖରେ ନାହାନ୍ତି । ଏହି ସୁଯୋଗରେ ଭୂତ, ପ୍ରେତ, ପିଶାଚମାନେ ଛୁଟି ଆସିଲେ ପିଲାଟିର ପ୍ରାଣ ଶୋଷିନେବାକୁ । ମାତ୍ର ପିଲାଟିର ଚକ୍ଷୁର ତେଜରେ ପାଖରେ ପଶିପାରିଲେ ନାହିଁ । ଖାଦ୍ୟ, ଯତ୍ନ ଅଭାବରେ ପିଲାଟି କେତେ ସମୟ ବା ବଞ୍ଚିବ ? ପିଲାଟିର ଅସହାୟ ଅବସ୍ଥା ଦେଖି ଧର୍ମଦେବତାଙ୍କ ଆଦେଶରେ ସ୍ୱର୍ଗବୈଦ୍ୟ ଅଶ୍ୱିନୀକୁମାର ଆସି ପହଞ୍ଚିଲେ । ସେ ନିଜ ଶରୀରରୁ ଶକ୍ତିନେଇ ପିଲାଟିର ଦେହରେ ସଞ୍ଚାର କରାଇଲେ । ପିଲାଟି ସଙ୍ଗେ ସଙ୍ଗେ ନୂତନ ଜୀବନ ଲାଭକରି ଉଠିଲା । ଅଶ୍ୱିନୀକୁମାର ତାକୁ ସହଦେବ ନାମ ଦେଇ ଓ ସର୍ବଜ୍ଞ ହେବାକୁ ବରଦେଇ ଅନ୍ତର୍ଦ୍ଧାନ ହୋଇଗଲେ । ମା ଛେଉଣ୍ଡ ପିଲାଟି ଅନ୍ୟ ଭାଇମାନଙ୍କ ସହିତ କୁନ୍ତୀଙ୍କ କୋଳରେହିଁ ପାଳିତ ହେଲେ ।



# ସାରଳା ମହାଭାରତ

## ତୃତୀୟ ଅଧ୍ୟାୟ

### ଦ୍ରୋଣ ଓ ଦ୍ରୁପଦ

ଭରଦ୍ୱାଦସ ବା ଭରଦ୍ୱାଜ ମୁନିଙ୍କ ପୁତ୍ର ଦ୍ରୋଣ । ସେ କୃପାଚାର୍ଯ୍ୟଙ୍କ ଭଉଣୀ କୃପୀଙ୍କୁ ବିବାହ କରିଥିଲେ । ପଞ୍ଚାଳ ଦେଶର ରାଜା ଦ୍ରୁପଦ ଶତ୍ରୁ ଦ୍ୱାରା ନିଜ ରାଜ୍ୟରୁ ବିତାଡ଼ିତ ହୋଇ ଦ୍ରୋଣଙ୍କ ସହିତ ଅନେକ ଦିନ ସପରିବାର ବାସ କରିଥିଲେ । ଦୁହିଁଙ୍କ ମଧ୍ୟରେ ପ୍ରଗାଢ଼ ବନ୍ଧୁତା ହୋଇଥିଲା ଓ ଦୁହେଁ ମିତ ବସିଥିଲେ । କିଛିକାଳ ପରେ ଶତ୍ରୁ ରାଜ୍ୟଛାଡ଼ି ଚାଲିଯିବାରୁ ଦ୍ରୁପଦଙ୍କ ଲୋକମାନେ ତାଙ୍କୁ ଫେରାଇ ନେଇ ପୁଣି ରାଜା କଲେ । ଦ୍ରୁପଦ, ଦ୍ରୋଣଙ୍କଠାରୁ ବିଦାୟ ନେଇ ନିଜ ରାଜ୍ୟକୁ ଫେରିବା ସମୟରେ ଦ୍ରୋଣଙ୍କ ଉପକାର ସେ ଜୀବନରେ କେବେ ଭୁଲିବେ ନାହିଁ, ଏହା କହି ନିଜ ରାଜ୍ୟକୁ ଥରେ ବୁଲିଯିବାପାଇଁ ଦ୍ରୋଣଙ୍କୁ ନିମନ୍ତ୍ରଣ କରି ଯାଇଥିଲେ ।

କିଛିକାଳପରେ ଦ୍ରୋଣଙ୍କ ପତ୍ନୀ କୃପୀ ପୁତ୍ର ଅଶ୍ୱତ୍ଥାମାଙ୍କୁ ଜନ୍ମଦେଇ ମରିଗଲେ । ପିଲାଟି ଖାଦ୍ୟ ବିନା ଯେତେବେଳେ କଷ୍ଟ ପାଇଲା, ଦ୍ରୋଣଙ୍କର ମିତ୍ର ଦ୍ରୁପଦଙ୍କ କଥା ମନେ ପଡ଼ିଲା । ସେ ଗୋଟିଏ ଦୁଧିଆଳ ଗାଈ ମାଗିବାପାଇଁ ଦ୍ରୁପଦଙ୍କ ରାଜ୍ୟକୁ ବାହାରିଲେ । ରାଜନଅର ଦ୍ୱାରୀ ତାଙ୍କୁ ବାଟ ଛାଡ଼ିଲାନାହିଁ । ଦ୍ରୋଣ ନିଜକୁ ତାଙ୍କ ରାଜାଙ୍କର ମିତ୍ର ବୋଲି ପରିଚୟ ଦିଅନ୍ତେ ସେଠାରେ ଥିବା ଲୋକେ ତାଙ୍କୁ ବହୁତ ଥଟ୍ଟା କଲେ । କହିଲେ କୁଆଡ଼ର ଭିକାରୀ ବ୍ରାହ୍ମଣ । ଇଏ ପୁଣି

ଆମ ମହାରାଜାଙ୍କ ମିତ୍ର ! ଯାହାହେଉ, ତାଙ୍କ ଭିତରୁ କେହିଜଣେ କହିଲା, ମହାରାଜାତ ବହୁକାଳ ରାଜ୍ୟ ବାହାରେ ଥିଲେ । କେଜାଣି ଅବା କାହା ସଙ୍ଗେ ମିତ୍ର ବସିଥିବେ । ଏହା କହିକରି ତାଙ୍କୁ ମହାରାଜାଙ୍କ ନିକଟକୁ ନେଇଗଲେ । ଦ୍ରୁପଦ ତାଙ୍କୁ ଚିହ୍ନିବାତ ଦୂରର କଥା, ହାଣ୍ଡି ହାତରେ ମାଡ଼ ମରାଇ ତଡ଼ିଦେଲେ । ଦ୍ରୋଣଙ୍କୁ ମାଡ଼ ସେତେ ନବାଧିଲା, ଧନଗର୍ବୀ ଦ୍ରୁପଦଙ୍କର କଦର୍ଯ୍ୟ ବ୍ୟବହାର ବହୁତ ବେଶି ବାଧିଲା । ସେ ପ୍ରତିଶୋଧ ନେବାପାଇଁ ସଙ୍କଳ୍ପ କଲେ ଓ ବ୍ରାହ୍ମଣ କର୍ମଛାଡ଼ି ଅସ୍ତ୍ର ଶସ୍ତ୍ର ସାଧିବା ପାଇଁ ପରଶୁରାମଙ୍କର ଶିଷ୍ୟହେଲେ । ପରଶୁରାମଙ୍କ ପରି ଗୁରୁ ପାଇ ଦ୍ରୋଣ ଅଳ୍ପ କାଳ ମଧ୍ୟରେ ସକଳ ଅସ୍ତ୍ରଶସ୍ତ୍ର ଆୟତ୍ତ କଲେ ଓ ଦ୍ୱିତୀୟ ପରଶୁରାମ ସଦୃଶ ବଳଶାଳୀ ହୋଇ ଉଠିଲେ ।

ଦିନେ ସେ ହସ୍ତିନାପୁରରେ ବୁଲୁ ବୁଲୁ ଦେଖିଲେ, କୌରବ, ପାଣ୍ଡବ ଭାଇମାନେ ଖେଳୁଥିବା ପେଣ୍ଡୁ (ଲଟ) ଟିକୁ ସାତତାଳ ଗଭୀର କୂଅ ଭିତରେ ପକାଇ ଦେଇ ଆଉ କୌଣସି ମତେ ବାହାର କରି ପାରୁ ନାହାନ୍ତି । ଦ୍ରୋଣ ସେଠାରେ ପହଞ୍ଚି କହିଲେ "ପିଲାମାନେ, ବ୍ୟସ୍ତ ହୁଅନାହିଁ । ଦେଖ, ମୁଁ ସଙ୍ଗେ ସଙ୍ଗେ ପେଣ୍ଡୁଟି କୂଅ ଭିତରୁ ବାହାର କରି ଆଣୁଛି ।" ଏହା କହି ସେ ସଙ୍ଗେ ସଙ୍ଗେ କଡ଼ାଏ ଗୁଗୁଚିଆ ଓପାଡ଼ି ଆଣିଲେ । ଗୋଟିଏ ଗୁଗୁଚିଆକୁ ମନ୍ତ୍ରକରି କୂଅରେ ପକାଇଲେ । ସେ ଯାଇ ପେଣ୍ଡୁ ଦେହରେ ଲାଗିଲା । ତାପରେ ଆଉ ଗୋଟିଏ ପକାଇବାରୁ ସେ ଯାଇ ପ୍ରଥମ ଗୁଗୁଚିଆର ଶେଷମୁଣ୍ଡରେ ଲାଗିଲା । ଏହିପରି ଗୋଟିଏ ଗୋଟିଏ କୂଅ ଭିତରକୁ ପକାଇ ସେ ଶେଷ ଗୁଗୁଚିଆକୁ କୂଅର ମୁହଁ ପର୍ଯ୍ୟନ୍ତ ନେଇଆସିଲେ ଓ ତାକୁ ଧରି ଅକ୍ଳେଶରେ ପେଣ୍ଡୁଟିକୁ କୂଅଭିତରୁ ବାହାର କରିଦେଲେ । ଏହା ଦେଖି ସମସ୍ତେ ବଡ଼ ଆଶ୍ଚର୍ଯ୍ୟ ହେଲେ ।

ସେହିଦିନଠାରୁ ଦ୍ରୋଣ କୌରବ ପାଣ୍ଡବଙ୍କର ଅସ୍ତ୍ର ଗୁରୁ ହେଲେ । ଧନୁର୍ବିଦ୍ୟାରେ ସବୁଠାରୁ ଶ୍ରେଷ୍ଠହେଲେ ଅର୍ଜୁନ । ତାଙ୍କ ତଳକୁ କର୍ଣ୍ଣ । ସେମିତି ଗଦା ଯୁଦ୍ଧରେ ଭୀମ ଓ ଦୁର୍ଯ୍ୟୋଧନ ଖୁବ୍ ନିପୁଣ ହେଲେ ।

## ଅସ୍ତ୍ର ପରୀକ୍ଷା

ଦିନେ ଦ୍ରୋଣ ଶିଷ୍ୟମାନଙ୍କୁ ପରୀକ୍ଷା କରିବା ପାଇଁ ଗୋଟିଏ ଉପାୟ କଲେ । ସମସ୍ତଙ୍କର ଅଜଣାରେ ସେ ନିଜ ପାଦରେ ବାଟର ମାଟି ନେଇ

ଗୋଟିଏ ମଟକା ପାଖରେ ପହଞ୍ଚିଲେ । ପର୍ବତ ଉପରେ ଥିବା ଗୋଟିଏ ବଡ଼ ଗଛକୁ ଅଧା କାଟି ତା ଉପରେ ଗୋଟିଏ ଖଡ଼ିକା ଖୋସିଲେ । ଖଡ଼ିକା ଉପରେ ଧାନଶୃଙ୍ଗ, ଧାନଶୃଙ୍ଗ ଉପରେ ଗରଗଡ଼ ଓ ଗରଗଡ଼ ଉପରେ ଗୋଟିଏ ସୋରଷ ରଖିଦେଇ ଆସିଲେ ।

ଶିଷ୍ୟମାନଙ୍କ ଭିତରୁ ଜଣ ଜଣ କରି ଡାକି ପଚାରିଲେ, ଧନୁରେ ନାରାଚ ଯୋଖି ସେ ଆଡ଼କୁ ଲକ୍ଷ୍ୟକରି କହ, କଅଣ ଦେଖୁଛ ? ଅଶ୍ୱତ୍ଥାମା କହିଲେ "ମୁଁ ପର୍ବତ, ତା ଉପରେ ଅଧାକଟା ଗଛ, ଗଛ ଉପରେ ଖଡ଼ିକା ଓ ଖଡ଼ିକା ଉପରେ ଧାନଶୃଙ୍ଗ ଦେଖି ପାରୁଛି ।" କର୍ଣ୍ଣ କହିଲେ "ମୁଁ ଏବୁ ଦେଖୁଛି, ଆଉ ଧାନଶୃଙ୍ଗ ଉପରେ ଗୋଟିଏ ଗରଗଡ଼ ଦେଖୁଛି । ଅନ୍ୟମାନେ ପର୍ବତ ଓ ତାଉପରେ ମେଘମାଳା ଛଡ଼ା ଆଉ କିଛି ଦେଖି ପାରୁନାହାନ୍ତି ବୋଲି କହିଲେ ।

ଶେଷରେ ଉଠିଲେ ଅର୍ଜୁନ । ସେ ଧନୁରେ ନାରାଚ ଯୋଖି ଲକ୍ଷ୍ୟ ସ୍ଥିର କରି କହିଲେ "ଗୁରୁଦେବ, ଏଠାରୁ ଆଠହଜାର ଆଠଶହ ଅଠାଅଶୀ ପାହୁଣ୍ଡ ଦୂରରେ ଗୋଟିଏ ପର୍ବତ ଅଛି । ପର୍ବତ ଉପରେ ଅଧାକଟା ଗଛ, ଗଛ ଉପରେ ଖଡ଼ିକା, ଖଡ଼ିକା ଉପରେ ଧାନଶୃଙ୍ଗ, ଧାନଶୃଙ୍ଗ ଉପରେ ଗରଗଡ଼ ଓ ଗରଗଡ଼ ଉପରେ ସୋରଷ ରହିଛି ।"

ଦ୍ରୋଣ ଏହାଶୁଣି ଅତି ଆନନ୍ଦ ହେଲେ । ସେ ଅର୍ଜୁନଙ୍କୁ ଆଶୀର୍ବାଦ କରି କହିଲେ "ବାବୁ, ବିଶ୍ୱ ବ୍ରହ୍ମାଣ୍ଡରେ ତୁ ଅଦ୍ୱିତୀୟ ବୀର ହେବୁ । ପୃଥିବୀର ଭାର ନିବାରଣ କରିବାକୁ ଯେ ତୁ ଜନ୍ମ ହୋଇଛୁ, ଏହା ମୁଁ ଆଜ ଜାଣିଲି ।" ଏହା ଶୁଣି ଦୁର୍ଯୋଧନ ଆଦି କୌରବ ମାନଙ୍କର ମୁହଁ ଶୁଖିଗଲା ।

ଏହାପରେ ଅର୍ଜୁନ ବଡ଼ ବିନୟରେ କହିଲେ "ଗୁରୁଦେବ, ଏବେ କହନ୍ତୁ ମୁଁ କାହାକୁ ଶର ବିନ୍ଧିବି ? ଦ୍ରୋଣ କହିଲେ "ତୁମେ ଏପରି ଶର ବିନ୍ଧିବ ଯେ ଅନ୍ୟ କୌଣସି ଜିନିଷ ହଲଚଲ ନହୋଇ ସେଠା ସ୍ଥାନରେ ରହିବ । କେବଳ ସୋରଷ ଦୁଇଫାଳ ହୋଇଯିବ ।

ଅର୍ଜୁନ ଗୁରୁଦେବଙ୍କୁ ମନେ ମନେ ନମସ୍କାର କରି ଶର ବିନ୍ଧିଲେ । ତା ପରେ ସମସ୍ତେ ଯାଇ ଦେଖିଲେ ଯେ ସବୁଜିନିଷ ସେମିତି ରହିଛି ।

କେବଳ ସୋରଷ ଦୁଇଫାଳ ହୋଇଯାଇଛୁ । ମାତ୍ର ଋଷିନପଡ଼ି ଯଥା ସ୍ଥାନରେ ରହିଛୁ । ଏହା ଦେଖି ସମସ୍ତେ ଅର୍ଜୁନଙ୍କୁ ଧନ୍ୟ ଧନ୍ୟ କଲେ ।

ଏହି ଗୁପ୍ତ ପରୀକ୍ଷା ପରେ ଆଉଦିନେ ସମସ୍ତଙ୍କ ଆଗରେ ଖୋଲା ଖୋଲି ଅସ୍ତ୍ର ପରୀକ୍ଷା ହେଲା । ଏଥିରେ ମଧ୍ୟ ଅର୍ଜୁନ ବହୁତ ଅସ୍ତ୍ର କୌଶଳ ଦେଖାଇ ସମସ୍ତଙ୍କୁ ଚମତ୍କୃତ କଲେ । ତା ପରେ କର୍ଣ୍ଣ ସେଠାରେ ପହଞ୍ଚି ଯାଇ ଅର୍ଜୁନ ଦେଖାଇଥିବା ସବୁ ଅସ୍ତ୍ର କୌଶଳ ନିଜେ ଦେଖାଇଲେ । ଦୁର୍ଯ୍ୟୋଧନ ତାଙ୍କ ଉପରେ ଭାରି ଖୁସି ହୋଇ ତାଙ୍କୁ ଅଙ୍ଗ ରାଜ୍ୟର ରାଜା କରିଦେଲେ ଓ ଚିରକାଳ ବନ୍ଧୁ କରି ପାଖରେ ରଖିଲେ । ଭବିଷ୍ୟତରେ ଅର୍ଜୁନ ସଙ୍ଗେ ମୁକାବିଲା କରିବାକୁ କେବଳ କର୍ଣ୍ଣ ଯେ ସମର୍ଥ ହେବେ ଏହା ତାଙ୍କର ହୃଦବୋଧ ହେଲା ।

## ଗାନ୍ଧାରୀ ଓ କୁନ୍ତୀ ବିବାଦ

ଦିନେ ଗାନ୍ଧାରୀ ଓ କୁନ୍ତୀ ଯମୁନା ନଈକୁ ଗାଧୋଇ ଗଲେ । ଗାଧୋଇ ସାରି ରତ୍ନେଶ୍ୱର ମହାଦେବଙ୍କୁ ଦର୍ଶନ କରିବାକୁ ଗଲେ । ଗାନ୍ଧାରୀ କୁନ୍ତୀଙ୍କୁ କହିଲେ, "ତୁମେ ବିଧବା, ଭାଗ୍ୟହୀନା, ଏ ମନ୍ଦିରରେ ଚିରକାଳ ମୁଁ ପୂଜା କରି ଆସୁଛି । ତୁମେ ଏଠାରେ ପୂଜାକରି ପାରିବ ନାହିଁ ।" ଏହା ଶୁଣି କୁନ୍ତୀଙ୍କ ମନରେ ଘୋର ଦୁଃଖହେଲା । ସେ ପ୍ରଭୁଙ୍କଠାରେ ହୃଦୟର ଆକୁଳ ନିବେଦନ ଜଣାଇଲେ । ସ୍ୱୟଂ ଶିବ ଆବିର୍ଭୂତ ହୋଇ କହିଲେ ଯେ ଆସନ୍ତାକାଲି ଯେ ପ୍ରଥମେ ଶହେ ସ୍ୱର୍ଣ୍ଣ ଚମ୍ପା ଧରି ମତେ ପୂଜା କରିବ ତାହାରିହିଁ ପୂଜା ଅଧିକାର ଅଛି ବୋଲି ଜଣାଯିବ ।

କୁନ୍ତୀ ବଡ଼ ଚିନ୍ତିତ ହୋଇ ଫେରିଲେ । ଭାବିଲେ, ଗାନ୍ଧାରୀଙ୍କର ସିନା ଶହେ ପୁଅ । ଜଣକେ ଗୋଟିଏ ଲେଖାଏଁ ଆଣିଦେଲେ ତାଙ୍କୁ ଶହେ ସ୍ୱର୍ଣ୍ଣ ଚମ୍ପା ମିଳିଯିବ । ମୋର ମାତ୍ର ପାଞ୍ଚଟି ପୁଅ । ମତେ ଏତେ ସ୍ୱର୍ଣ୍ଣ ଚମ୍ପା ଆଣି କିଏ ଦେବ ?

ଅର୍ଜୁନ ଏକଥା ଶୁଣି କହିଲେ, "ମା, ଏଇ କଥାକୁ ଏତେ ଚିନ୍ତା କରୁଛ ? ତୁମେ କାଲି ଖୁବ୍ ସକାଳୁ ସ୍ନାନ କରି ପୂଜାଦ୍ରବ୍ୟ ନେଇ ମନ୍ଦିରକୁ ଚାଲ । ମୁଁ ସେଠାରେ ତୁମ ପାଖରେ ଶହ ଶହ ସ୍ୱର୍ଣ୍ଣଚମ୍ପା ଆଣି

ଗଡାଇ ଦେବ ।" ପୁଅ କଥାରେ ଭରସା ରଖି କୁନ୍ତୀ ଗଲେ । ଏଣେ ଅର୍ଜୁନ ମନ୍ତ୍ର ବଳରେ ଶରମାରି କୁବେର ପୁରୀର ପଦ୍ମନିଧିକୁ ଭେଦ କଲେ । ପଦ୍ମନିଧିର ବର୍ଷଣ ଫଳରେ ଭୂମି ଉପରେ ଶହ ଶହ ସ୍ୱର୍ଣ୍ଣଚମ୍ପା ଫୁଟି ଉଠିଲା । କୁନ୍ତୀ ବଡ଼ ଆନନ୍ଦରେ ତାହାନେଇ ଶିବଙ୍କୁ ପୂଜାକଲେ ଓ ପୂଜାଶେଷରେ ସନ୍ତୋଷମନରେ ଫେରିଆସିଲେ ।

ଗାନ୍ଧାରୀ ତା ପରେ ଶହେ ସ୍ୱର୍ଣ୍ଣ ଚମ୍ପା ନେଇଯାଇ ମନ୍ଦିରରେ ପହଞ୍ଚି ଦେଖିଲେ ଯେ ଶହ ଶହ ସ୍ୱର୍ଣ୍ଣ ଚମ୍ପା ଏଣେ ତେଣେ ବିକ୍ଷିପ୍ତ ହୋଇ ପଡ଼ିଛି । ସେ କୁନ୍ତୀଙ୍କର ଭାଗ୍ୟକୁ ପ୍ରଶଂସା କଲେ ଓ ମନେ ମନେ ଲଜ୍ଜିତ ହୋଇ ଫେରି ଆସିଲେ ।

## ଏକଲବ୍ୟ

କୌରବ ଓ ପାଣ୍ଡବ ବାରଣାବନ୍ତରେ ରହି ଦ୍ରୋଣଗୁରୁଙ୍କଠାରୁ ଅସ୍ତ୍ରଶିକ୍ଷା କରୁଥାନ୍ତି । ଦିନେ ଜାରା ନାମକ ଏକ ଶବର ଦୁଇଟି ଗଣ୍ଡା ମାରି ଆଣି ଦ୍ରୋଣଙ୍କୁ ଭେଟି ଦେଇ ତାଙ୍କର ଶିଷ୍ୟ ହେବାକୁ ପ୍ରାର୍ଥନା କଲେ । ଯୁଧିଷ୍ଠିର ଆଦି ପାଣ୍ଡବ ଭାଇମାନେ ସେ ରହୁ ବୋଲି କହିଲେ । ମାତ୍ର ଦୁର୍ଯୋଧନ ତ ମହାଗର୍ବୀ । ସେ ରାଗିଯାଇ କହିଲେ, "ଏ କିରାତର ସାହାସ ତ କମ୍ ନୁହେଁ । ରାଜପୁତ୍ରମାନଙ୍କ ସଙ୍ଗେ ମିଶି ଅସ୍ତ୍ରଶିକ୍ଷା କରିବ ! ତାର ଚୁଟିଧରି ନେଇ ବାହାରେ ଛାଡ଼ି ଆସିବାକୁ ସେ ଦୁଃଶାସନକୁ ଆଦେଶ ଦେଲେ । ଆଦେଶ ସଙ୍ଗେ ସଙ୍ଗେ ପାଳିତ ହେଲା ।

ଏହି ଅପମାନର ପ୍ରତିଶୋଧ ନେବାପାଇଁ ଜାରା ମନେ ମନେ ପ୍ରତିଜ୍ଞା କଲା । ତାର ପଲ୍ଲୀ ଠାରୁ ବାରଣାବନ୍ତ ପର୍ଯ୍ୟନ୍ତ ବଣକୁ କାଟି ସଫା କରି ଦେଲା ଓ ଦ୍ରୋଣଙ୍କର ମାଟିର ମୂର୍ତ୍ତିଟିଏ ସ୍ଥାପନ କରି ତାଙ୍କୁ ଗୁରୁମାନି ଅସ୍ତ୍ରଚାଳନା ଅଭ୍ୟାସ କଲା । ଦ୍ରୋଣ ଶିଷ୍ୟମାନଙ୍କୁ ଯେପରି ଶିକ୍ଷା ଦେଉଥାନ୍ତି ଜାରା ଦୂରରୁ ତାହା ଲକ୍ଷ୍ୟକରି ସେହିପରି ଅଭ୍ୟାସ କରୁଥାଏ । ଏହିପରି ଭାବରେ ସେ ଦ୍ରୋଣଙ୍କ ପ୍ରଦତ୍ତ ସବୁ ଅସ୍ତ୍ରବିଦ୍ୟା ଆୟତ୍ତ କରିଦେଲା ।

ଜାରାର ସ୍ତ୍ରୀ ତାରା ଅତ୍ୟନ୍ତ ସୁନ୍ଦରୀ । ସେ ଦିନେ ପାଖ ନଈକୁ ଗାଧୋଇ ଆସିଥିଲା । ଦୈବ ଯୋଗକୁ ସେହିଦିନ ଦ୍ରୋଣଙ୍କ ଆଦେଶରେ

କୌରବ ଭାଇମାନେ ଗଣ୍ଡା ଶିକାର କରିବାକୁ ଆସି ତାରାକୁ ଦେଖିଲେ । ଜଙ୍ଗଲ ଭିତରେ ଗୋଟିଏ ସୁନ୍ଦରୀ ସ୍ତ୍ରୀକୁ ଏକୁଟିଆ ଦେଖି ଏ ଦୁଷ୍ଟମାନେ ତାକୁ ଧରାପରା କଲେ । ସେ ପାଟି କରିବାରୁ ଜାରା ଧାଇଁ ଆସିଲା । ଦୁଃଶାସନ ତାକୁ ଦେଖି କହିଲା "ଏ ସୁନ୍ଦରୀ ସ୍ତ୍ରୀ ରାଜଭୋଗ୍ୟ । ଆମେ ଏହାକୁ ନେଇ ଯାଉଛୁ । ତୁ ଏଠୁ ପଳା । ନଚେତ୍ ମରିବୁ ।"

ଜାରା କ ଏହା ସହେ ! ସଙ୍ଗେ ସଙ୍ଗେ ଶର ଉପରେ ଶର ବର୍ଷି ଶହେ ଭାଇଙ୍କୁ ମାରି ଶୁଆଇ ଦେଲା । ତାପରେ କାହାକୁ ଗୋଇଠାଏ, କାହାକୁ କେଞ୍ଚାଏ ଦେଇ ସ୍ୱାମୀ ସ୍ତ୍ରୀ ଦୁହେଁ ଆନନ୍ଦରେ ନିଜ ପଲ୍ଲୀକୁ ଗଲେ ।

କୌରବ ଭାଇମାନେ ଯଥାସମୟରେ ନ ଫେରିବାରୁ ଦ୍ରୋଣ, ପାଣ୍ଡବ ଭାଇମାନଙ୍କ ସଙ୍ଗରେ ଧରି ଖୋଜି ଖୋଜି ଆସି କୌରବ ଭାଇମାନଙ୍କର ଏ ଅବସ୍ଥା ଦେଖି ବଡ଼ ଆଶ୍ଚର୍ଯ୍ୟ ହେଲେ । ନିଜର ବିଦ୍ୟା ଏଠାରେ ଆଉ କିଏ କପରି ସାଧନା କରିପାରିଛି, ଆଉ ସେହି ବିଦ୍ୟା ବଳରେ ବାଣମାରି ଏକାବେଳେକେ ଶହେ ଭାଇଙ୍କୁ ମାରିଦେଇ ପାରିଲା, ଏହା ଜାଣିବାକୁ ସେ ଅର୍ଜୁନଙ୍କୁ ପଠାଇଲେ । ଅର୍ଜୁନ ଶବର ପଲ୍ଲିରେ ପହଞ୍ଚି ଦେଖିଲେ, ଗୋଟିଏ ପଞ୍ଚହତା ଲୋକ ଅସ୍ତ୍ର ସାଧନା କରୁଛି । ତାଙ୍କୁ ଦେଖି କଅଣ ଗୁଡ଼ାଏ କଡ଼୍ କଡ଼୍ କରି କହି ତାଙ୍କ ଉପରକୁ ମାଡ଼ି ଆସିଲା । ମୋ ଭାଇମାନଙ୍କୁ କିଏ ମାରିଲା ବୋଲି ଅର୍ଜୁନ ତାକୁ ପଚାରିବାରୁ ସେ କହିଲା ଯେ ସେମାନେ ଅନ୍ୟାୟ କରିବାରୁ ସେ ନିଜେ ସେମାନଙ୍କୁ ମାରିଛି । ଅର୍ଜୁନ ତାର ଦାମ୍ଭିକତାକୁ ବେଶି ସମୟ ସହି ନପାରି ତାକୁ ମାରିବାକୁ ଶର ପ୍ରୟୋଗ କଲେ । ଜାରାତ ସଙ୍ଗେ ସଙ୍ଗେ ପ୍ରତିଶର ମାରିଲା । ଏହିପରି ଭାବରେ ଦୁହିଁଙ୍କର ଘମାଘୋଟ ଲଢ଼େଇ ଚାଲିଲା । ଦୁହିଁଙ୍କର ତ ଏକ ଗୁରୁ । ସମାନ ବିଦ୍ୟା । କିଏ କାହାକୁ ଛାଡ଼ୁଛି ?

ଦୁହିଁଙ୍କ ବାଣ ବଜା ଶବ୍ଦରେ ଗୁରିଆଡ଼ କମ୍ପିଲା । ଦ୍ରୋଣ ସେ ଶବ୍ଦ ଶୁଣି ଯାଇ ସେଠାରେ ପହଞ୍ଚିଲେ । ଜାରାତର ଯୁଦ୍ଧ ଦେଖି, ଏ ବିଦ୍ୟାସବୁ ସେ କେଉଁଠୁ ପାଇଲା ଭାବି ବଡ଼ ଆଶ୍ଚର୍ଯ୍ୟ ହେଲେ । ଦୂରରୁ ଡାକ

ଦେଲେ "ଆରେ ହେ ବାବୁ, ରହ, ରହ, ଦଣ୍ଡେ ସମ୍ଭାଳ । ତୁ କାହାଠୁ ଏ ସବୁ ବିଦ୍ୟା ସାଧି ଏତେ ବଡ଼ ଯୁଦ୍ଧ କରୁଛୁ ? କିଏ ତୋର ଗୁରୁ ? କିରାତ ଦ୍ରୋଣଙ୍କୁ ଚିହ୍ନିପାରି ସଙ୍ଗେ ସଙ୍ଗେ ଯୁଦ୍ଧ ବନ୍ଦ କଲା ଓ ଧନୁଶର ଫିଙ୍ଗିଦେଇ ତାଙ୍କ ପାଦତଳେ ଲମ୍ବହୋଇ ପଡ଼ିଗଲା । ତାପରେ ବାରଣା-ବନ୍ତ ଯିବା ଦିନଠାରୁ ଘଟିଥିବା ସବୁ ଘଟଣା ବର୍ଣ୍ଣନ କରିଗଲା । ଦ୍ରୋଣ ଆଶ୍ଚର୍ଯ୍ୟହୋଇ ଦେଖିଲେ ପ୍ରକୃତରେ ତାଙ୍କର ମୂର୍ତ୍ତିଟିଏ ରଖି ସେ ଗୁରୁରୂପେ ପୂଜା କରୁଛି । ଦ୍ରୋଣ ଅତ୍ୟନ୍ତ ଆନନ୍ଦିତ ହୋଇ କହିଲେ, "ବାବୁ ତୁ ତ ମୋର ବିଦ୍ୟା ସାଧନ କରିଛୁ । ଏବେ ଏ କୌରବ ଶହେ ଭାଇଙ୍କୁ ପୁଣି ଶରପେଶି ବଞ୍ଚାଇ ଦେ ।" ମରିଥିବା ଦୁଷ୍ଟଗୁଡ଼ାକ ଦୁର୍ଯ୍ୟୋଧନ ଆଦି କୌରବ ବୋଲି ଜାଣି ଜାରା ମନେ ମନେ ଭାବିଲା, ଏ ଦୁଷ୍ଟ-ଗୁଡ଼ାଙ୍କୁତ ଠିକ୍ ଦଣ୍ଡ ହୋଇଥିଲା । ଏ ଗୁଡ଼ାଙ୍କୁ ପୁଣି ବଞ୍ଚାଇବାକୁ ହେବ । ତେବେ ତ ପୁଣି ଜୀବନରେ ଏମାନେ କେତେ ନାରୀ ଧର୍ଷଣ, କେତେ ଅନ୍ୟାୟ, ଅନୀତି କରିବେ, ମାତ୍ର ଏହା ଯେ ଗୁରୁଙ୍କ ଆଦେଶ । ତେଣୁ ସେ ସଙ୍ଗେ ସଙ୍ଗେ ଜୀବନ୍ୟାସ ଶରପେଶି ଅକାଳମୃତ୍ୟୁ ଲଭିଥିବା ଶହେ ଭାଇଙ୍କୁ ବଞ୍ଚାଇଦେଲା ।

ଦୁର୍ଯ୍ୟୋଧନ ତ ଖଳ ପ୍ରକୃତି । ସେ ଅଭିମାନ କରି କହିଲା ଯେ ଗୁରୁ ଦ୍ରୋଣ ତାକୁ ଓ ତାର ଭାଇମାନଙ୍କୁ ଭଲକରି ଅସ୍ତ୍ରବିଦ୍ୟା ନ ଶିଖାଇ-ବାରୁ ଆଜି କିରାତ ହାତରେ ତାଙ୍କର ଏ ପରାଭବ ହେଲା । ଦ୍ରୋଣ ଅଭିମାନୀ ଦୁର୍ଯ୍ୟୋଧନକୁ ନାନା ପ୍ରକାର ବୁଝାଇ ପ୍ରବୋଧନା ଦେଲେ ।

ଜାରା, ଅତି ବିନମ୍ରର ସହିତ ଦ୍ରୋଣଙ୍କୁ ଗୁରୁ ଦକ୍ଷିଣା ମାଗିବା ପାଇଁ କହିବାରୁ ଦ୍ରୋଣ କହିଲେ "ତୋର ଡାହାଣ ହାତର ବୁଢ଼ା ଆଙ୍ଗୁଠି କାଟି ମତେ ଦକ୍ଷିଣା ସ୍ୱରୂପ ଦେଇ ପାରିବୁ ?" ଜାରା ସଙ୍ଗେ ସଙ୍ଗେ କହିଲା, "ଗୁରୁଦେବ, ଆପଣ ମାଗିଲେ ମୁଁ ମୋର ଶିରକୁ ମଧ୍ୟ କାଟି ଆପଣଙ୍କ ପାଦତଳେ ଆନନ୍ଦରେ ଅର୍ପଣ କରିବ । ତେବେ ଆପଣଙ୍କ ଆଦେଶରେ ଆଜି ଯିନା ଏ ଦୁଷ୍ଟମାନଙ୍କୁ ମୁଁ ବଞ୍ଚାଇଦେଲି । ଦିନେ ପୁଣି ସେମାନଙ୍କୁ ସବଂଶେ ମାରିଥାନ୍ତି । ଆପଣ ମୋର ବୁଢ଼ାଆଙ୍ଗୁଠି ମାଗିନେବା ଦ୍ୱାରା ସେମାନଙ୍କୁ ରକ୍ଷାକରିଦେଲେ । ଏହା କହି ସଙ୍ଗେ ସଙ୍ଗେ ନିଜର ବୁଢା-

ଆଙ୍ଗୁଠି କାଟି ଗୁରୁଙ୍କୁ ପ୍ରଦାନ କଲା । ଦ୍ରୋଣ ତାକୁ ଏକଲବ୍ୟ ନାମ ଦେଇ ଆଶୀର୍ବାଦ କରି କହିଲେ, "ବାବୁ ତୋର ଏହି ଅଲୌକିକ ଗୁରୁ ଭକ୍ତି ଯୁଗଯୁଗାନ୍ତର ଧରି ଲୋକେ ମନେ ପକାଉଥିବେ ।

## ଦ୍ରୋଣ ପ୍ରତିଶୋଧ ନେଲେ

ବିଦ୍ୟାଶିକ୍ଷା ଶେଷ ହେଲାପରେ ଦୁର୍ଯ୍ୟୋଧନ ଦ୍ରୋଣଙ୍କୁ ଗୁରୁ ଦକ୍ଷିଣା ଯାଚିଲେ । ଦ୍ରୋଣ କହିଲେ, "ବାବୁ, ମୋର ଧନ, ସମ୍ପଦ ଲୋଡ଼ା ନାହିଁ । ପଞ୍ଚାଳ ଦେଶର ରାଜା ଦ୍ରୁପଦଙ୍କୁ ବାନ୍ଧି ଆଣି ମୋ ପାଖରେ ହାଜର କରାଇ ପାରିଲେ ତାହାହିଁ ମୋର ଉପଯୁକ୍ତ ଦକ୍ଷିଣା ହେବ ।

ସଙ୍ଗେ ସଙ୍ଗେ ଦୁର୍ଯ୍ୟୋଧନ ପଞ୍ଚାଳ ଦେଶ ଆକ୍ରମଣ କରିବାକୁ କୁରୁଥାଟଙ୍କୁ ସଜ କଲେ । ଅର୍ଜୁନ ଏହା ଦେଖି ହସିଲେ । କାରଣ ପଚାରିବାରୁ ଅର୍ଜୁନ କହିଲେ; "ଏହି ସାମାନ୍ୟ କାମ ପାଇଁ ଏତେ ଲୋକ ଯିବା, ପୁଣି ଯୁଦ୍ଧରେ ସେଥିରୁ କେତେକ ମରିବା ଆବଶ୍ୟକ ନାହିଁ । ମୁଁ ଏକା ଯାଇ ଦ୍ରୁପଦଙ୍କୁ ବାନ୍ଧିଆଣି ପାରିବି ।" ଦୁର୍ଯ୍ୟୋଧନ ଭାବିଲେ ସତେ କଅଣ ଅର୍ଜୁନ ଏକା ଏକାମ କରିପାରିବ ? ଦ୍ରୁପଦଙ୍କର ଅସଂଖ୍ୟ ସୈନ୍ୟ ହାତରେ ସେ ମଲେ ଭଲ । ନାହିଁ ଯଦି ଜୀବନ ଘେନି ପଳାଇ ଆସେ ତେବେ ତାକୁ ବହୁତ ଲଜ୍ଜା ହେବ ? ଏହା ଭାବି ସେ ଏ ପ୍ରସ୍ତାବରେ ରାଜି ହୋଇଗଲେ ।

ଅର୍ଜୁନ ପଞ୍ଚାଳ ଦେଶରେ ପହଞ୍ଚି ଯୁଦ୍ଧ ପାଇଁ ପ୍ରସ୍ତୁତ ହେବାକୁ ଦ୍ରୁପଦଙ୍କ ନିକଟକୁ ବାର୍ତ୍ତା ପଠାଇଲେ । ସେ ଯାଇ ସମ୍ବାଦ ଦେଲା "ଦେବତା ପରି ତେଜସ୍ୱୀ ଜଣେ ଯୁବକ ଏକା ଏକା ଆସି ଯୁଦ୍ଧ ମାଗୁଛି ।" ଦ୍ରୁପଦ ମହା ଗର୍ବରେ ତାଙ୍କର ବିରାଟ ସୈନ୍ୟ ବାହିନୀ ଧରି ଯୁଦ୍ଧକୁ ବାହାରିଲେ । ପର୍ବତ ଉପରୁ ଅର୍ଜୁନ ଏହି ବିରାଟ ବାହିନୀ ଦେଖି ଦ୍ରୁପଦଙ୍କର ଅତୁଳ ବିଭବକୁ ମନେ ମନେ ପ୍ରଶଂସା କଲେ । ଏହି ନିରୀହ ଲୋକମାନଙ୍କୁ ପ୍ରାଣରେ ନ ମାରି ମୁଁ ମୋର କାର୍ଯ୍ୟ ସାଧନ କରିବି, ଏହା ମନରେ ଭାବି ସଙ୍ଗେ ସଙ୍ଗେ ମୋହନା ଶରକୁ ମନ୍ତ୍ରପଢି ପ୍ରୟୋଗ କଲେ । ଦ୍ରୁପଦଙ୍କର ଏଡ଼େ ବଡ଼ ଥାଟ କ୍ଷଣକେ ଅଚେତନ

ହୋଇ ପଡ଼ିଲେ । ଅର୍ଜୁନ ଦ୍ରୁପଦଙ୍କ ନିକଟରେ ପହଞ୍ଚିଯାଇ କହିଲେ, "ଆପଣ ମୋର ପିତୃ ପ୍ରତିମ । ମୋର ଦୋଷ ଧରିବେ ନାହିଁ । ଗୁରୁଙ୍କ ଆଜ୍ଞାରେହିଁ ଆପଣଙ୍କୁ ବାନ୍ଧିନେବି" । ଦ୍ରୁପଦ ଏତେବେଳେ ବୁଝିଲେ, ଏ ଅଦ୍‌ଭୁତ କର୍ମା ଯୁବକ ତୃତୀୟ ପାଣ୍ଡବ ଅର୍ଜୁନ । ସେ ବିନା ଦ୍ୱିଧାରେ ନିଜର ହାତକୁ ପ୍ରସାରି ଦେଲେ । ଅର୍ଜୁନ ତାଙ୍କୁ ଗୋଟିଏ ଦଉଡ଼ିରେ ବାନ୍ଧି ନେଇ ବାରଣାବନ୍ତ ଫେରିଲେ ।

ସେତେବେଳେ ଦ୍ରୋଣ ପଲଙ୍କରେ ନିଦ୍ରା ଯାଇଥାନ୍ତି । ଅର୍ଜୁନ ଦ୍ରୁପଦଙ୍କୁ ସେହି ପଲଙ୍କ ଖୁରାରେ ବାନ୍ଧି ନିତ୍ୟକର୍ମ କରିବାକୁ ଗଲେ ।

ଦୁର୍ଯ୍ୟୋଧନ ଆଦି ଶତେ ଭାଇ ଏହା ଦେଖି ଖୁବ୍ ଆଶ୍ଚର୍ଯ୍ୟହେଲେ ଓ ବନ୍ଦୀ ହୋଇଥିବା ଦ୍ରୁପଦଙ୍କୁ ମାରଧର କରିବା ଆରମ୍ଭ କରିଦେଲେ । ଦ୍ରୁପଦଙ୍କର ଆକୁଳ ଚିତ୍କାରରେ ଦ୍ରୋଣଙ୍କ ନିଦ୍ରାଭଙ୍ଗ ହେଲା । ସେ ତତ୍‌କ୍ଷଣାତ୍ ଉଠି "ଆହା ମଇତ୍ର, କେତେ ଦୁଃଖ ପାଇଲ" ବୋଲି କହି ସଙ୍ଗେ ସଙ୍ଗେ ଦ୍ରୁପଦଙ୍କ ବନ୍ଧନ ଖୋଲିଦେଲେ । ଦ୍ରୁପଦ ଘୋର ଲଜ୍ଜାରେ ଆଉ ଘରକୁ ନଫେରି ଦ୍ରୋଣଙ୍କୁ କିପରି ବଧ କରିବେ ଏହି କାମନା କରି ବଣକୁ ତପସ୍ୟା କରିବାପାଇଁ ଚାଲିଗଲେ ।

—*—



# ସାରଳା ମହାଭାରତ

## ୪ର୍ଥ ଅଧ୍ୟାୟ

## ଭାନୁମତୀ ବିବାହ ।

ବିଜୟପୁ ନଗର ରାଜା ଭୂମନୁଙ୍କର କନ୍ୟାର ନାମ ଭାନୁମତୀ । ସେ ଅତ୍ୟନ୍ତ ରୂପବତୀ ଓ ସର୍ବସୁଲକ୍ଷଣା । ତାଙ୍କ ହାତରେ ଶଙ୍ଖନିଧି ଓ ପଦ୍ମନିଧି ଥିବାରୁ ସେ ପଥର ଛୁଇଁଲେ ପାଣି ହୋଇ ଯାଉଥିଲା କିମ୍ବା ଇଚ୍ଛାକଲେ ସୁନା ମୂଲ୍ୟବାନ୍ ରତ୍ନ ପାଲଟି ଯାଉଥିଲା । ପୁଣି ସେ ରାନ୍ଧିଲେ ଖାଦ୍ୟ ଯେତେ ଲୋକ ଖାଇଲେ ମଧ୍ୟ ଶେଷ ହେଉ ନଥିଲା ।

ଏପରି ଏକ କନ୍ୟାରତ୍ନକୁ ଉପଯୁକ୍ତ ପାତ୍ରରେ ବିଭା ଦେବାପାଇଁ ଭୂମନୁ ଏକ ସ୍ୱୟମ୍ବର କଲେ । ଭାନୁମତୀ କହିଲେ ଯେଉଁ ରାଜାଙ୍କ ହାତରେ ଶଙ୍ଖ ପଦ୍ମନିଧି ଥିବ ତାଙ୍କୁହିଁ ସେ ପତିରୂପେ ବରଣ କରିବେ । ମାତ୍ର ସ୍ୱୟମ୍ବରକୁ ଆସିଥିବା ଲକ୍ଷେ ରାଜାଙ୍କ ମଧ୍ୟରୁ କାହାରି ହାତରେ ସେ ଚିହ୍ନ ନଥିଲା । ଜଣେ ରାଜା କହିଲେ 'ସେ ଚିହ୍ନ କେବଳ ପ୍ରଭୁ ରାମଚନ୍ଦ୍ରଙ୍କ ହାତରେ ଥିଲା । ବିଷ୍ଣୁ କଳାନେଇ ଜନ୍ମ ନହେଲେ ସାଧାରଣ ମଣିଷ ହାତରେ ସେ ଚିହ୍ନ ଅସମ୍ଭବ । ଆଉ ଜଣେ ରାଜା କହିଲେ, ବିଷ୍ଣୁ କଳାରେ ଜନ୍ମ ନହେଲେ କେହି ରାଜା ହୋଇ ପାରେ ନାହିଁ । ତେଣୁ ଆମ ସମସ୍ତଙ୍କ ହାତରେ ଶଙ୍ଖପଦ୍ମନିଧି ରହିଛି । ଭାନୁମତୀ ଆମ ଭିତରୁ ଯାହାକୁଇଚ୍ଛା ବରଣ କରିପାରନ୍ତି ।

ଏହିପରି ବାଦାନୁବାଦ ହେବାରୁ ନିଜେ ଭାନୁମତୀ ସଭାସ୍ଥଳରେ ଉପସ୍ଥିତ ହୋଇ କହିଲେ ଯେ ଯାହାଙ୍କ କରସ୍ପର୍ଶରେ ପଥର ପାଣି ହୋଇଯିବ କିମ୍ବା ସୁନା ପାଲଟିବ ତାଙ୍କର ହାତରେ ପ୍ରକୃତରେ ଶଙ୍ଖପଦ୍ମନିଧି ଅଛି ବୋଲି ଜଣାଯିବ ଏବଂ ତାଙ୍କର ଗଳାରେ ସେ ବରଣ-ମାଳା ଦେବେ । ମାତ୍ର ଉପସ୍ଥିତ କୌଣସି ରାଜା ଏ ପରୀକ୍ଷାରେ କୃତ-କାର୍ଯ୍ୟ ହେଲେ ନାହିଁ । ଫଳରେ ଭୂମନୁ କାହାକୁ କନ୍ୟାଦାନ କରିବେନାହିଁ ବୋଲି କହିବା ସଙ୍ଗେ ସଙ୍ଗେ ଭୀଷଣ ଗୋଳମାଳ ଆରମ୍ଭ ହେଲା । ଦୁଷ୍ଟ ରାଜାମାନେ ଭୂମନଙ୍କୁ ମାରି ଭାନୁମତୀଙ୍କୁ ବଳାତ୍କାରରେ ନେଇଯିବାପାଇଁ ଯୁଦ୍ଧ ଆରମ୍ଭ କଲେ । ଧର ଧର ମାର ମାର ଶବ୍ଦରେ ସ୍ୱୟଂବର ଗର୍ଜିଲା ।

ଏହି ସମୟରେ ରଇବ୍ରତ ପର୍ବତ ଉପରେ ରହି କର୍ଣ୍ଣ ଓ କୌରବ ଭାଇମାନେ ବଳରାମଙ୍କଠାରୁ ଗଦାଯୁଦ୍ଧ ଶିକ୍ଷା କରୁଥିଲେ । ସ୍ୱୟମ୍ବର ସଭାର ଗୋଳମାଳ ସେମାନେ ଶୁଣିପାରିଲେ । ସଭାସ୍ଥଳକୁ ଆସି ସବୁ ଜାଣିଲା ପରେ କର୍ଣ୍ଣ ଏକାକୀ ଯୁଦ୍ଧକରି ଲକ୍ଷେ ରାଜାଙ୍କୁ ଘଉଡ଼ାଇଦେଲେ । ଭୂମନୁ ମହାଆନନ୍ଦରେ କର୍ଣ୍ଣଙ୍କୁ ପତିରୂପେ ବରଣ କରିବାକୁ ଭାନୁମତୀଙ୍କୁ କହିଲେ । ମାତ୍ର କର୍ଣ୍ଣ କହିଲେ ଯେ କେବଳ ଦୁର୍ଯ୍ୟୋଧନହିଁ ଭାନୁମତୀଙ୍କର ଯୋଗ୍ୟ ବର । କାରଣ ସେ ବିଷ୍ଣୁ ଅଂଶୀ ଓ ପୂର୍ବଜନ୍ମର ପନ୍ନଗ-ନାରାୟଣ । ତାଙ୍କ ହସ୍ତରେ ଶଙ୍ଖନିଧି, ପଦ୍ମନିଧି ରହିଛି । ସମସ୍ତେ ଏହା ଜାଣି ଆନନ୍ଦିତ ହେଲେ । ମହାସମାରୋହରେ ଦୁର୍ଯ୍ୟୋଧନଙ୍କ ସହିତ ଭାନୁମତୀଙ୍କର ବିବାହ ହେଲା । ବିବାହ ପରେ ବରକନ୍ୟା ସୈନ୍ୟସାମନ୍ତ ସହିତ ଏକ ବିରାଟ ପଟୁଆର କରି ହସ୍ତିନା ଫେରିଲେ ।

## ଫେରିବା ବାଟରେ ବିପତ୍ତି

ଫେରିବା ବାଟରେ ଅଜଙ୍ଗପାଦ ନାମକ ଏକ ବଣ ପଡ଼ିଲା । ସେ ବଣରେ ବିରୂପାକ୍ଷ ଅସୁର ବାସ କରେ । ବ୍ରହ୍ମାଙ୍କ ବରରେ ସେ ମହା-ବଳବନ୍ତ । ଦୁର୍ଯ୍ୟୋଧନଙ୍କ ଆଡ଼ମ୍ବର ଶୋଭାଯାତ୍ରା ତାର ସହ୍ୟ ହେଲାନାହିଁ । ସେ ଯୁଦ୍ଧ ଆରମ୍ଭ କରିଦେଲା ଓ ଅଳ୍ପ ସମୟ ମଧ୍ୟରେ ସମସ୍ତ ସୈନ୍ୟ, ଦୁର୍ଯ୍ୟୋଧନ ଆଦି ଶହେ ଭାଇ, କର୍ଣ୍ଣଙ୍କ ପରି ମହାବୀର, ସମସ୍ତଙ୍କୁ ମାରି ଶୁଆଇ ଦେଲା । କେବଳ ଦ୍ରୋଣପୁତ୍ର ଅଶ୍ୱତ୍ଥାମାଙ୍କ ତପସ୍ୟା ପ୍ରଭାବ ହେତୁ ତାଙ୍କୁ ପ୍ରାଣରେ ମାରିନପାରି ନିଜ ରଥଖୁରାରେ ବାନ୍ଧିପକାଇଲା ।

ଛାପରେ ଦେଖିଲା, ରଥରେ ଏକ ଦିବ୍ୟସୁନ୍ଦରୀ ନାରୀ । ଅସୁର ତାଙ୍କୁ ଦେଖି ମୋହିତ ହୋଇଗଲା ଓ ଆଁ କରି ଗୃହିଁରହିଲା । ହୁଏତ ମନେ ମନେ ଭାବିଲା, ଏ ମଣିଷ ନାଁ ସୁନ୍ଦର କଣ୍ଢେଇଟିଏ !

ଏହି ସମୟରେ ଦେବର୍ଷି ନାରଦ ମନଯାନରେ ବସି ଆକାଶ ପଥରେ ଯାଉ ଯାଉ ଏ କାଣ୍ଡସବୁ ଦେଖିଲେ । ସେ ସଙ୍ଗେ ସଙ୍ଗେ ବାରୁଣାବନ୍ତ ଉଡ଼ିଯାଇ ଯୁଧିଷ୍ଠିରଙ୍କୁ ସବୁବିଷୟ ଜଣାଇଦେଲେ । କୌରବ ଭାଇମାନେ ମରିଯିବାର ଶୁଣି ଯୁଧିଷ୍ଠିର ଅତ୍ୟନ୍ତ ବ୍ୟାକୁଳ ହେଲେ । ନିଜର ଚାରିଭାଇଙ୍କୁ ସଙ୍ଗରେଧରି ସଙ୍ଗେ ସଙ୍ଗେ ଘଟଣାସ୍ଥଳକୁ ଧାଇଁଲେ ।

ବାଟରେ ଯାଉ ଯାଉ ଭୀମ ଅର୍ଜୁନ କହିଲେ, "କୌରବମାନେ ତ ସବୁବେଳେ ଆମକୁ ହିଂସା କରୁଛନ୍ତି । ଆମେ ସେଠାକୁ କଅଣ ପାଇଁ ଯିବା । ମରନ୍ତୁ ସେମାନେ ।" ଯୁଧିଷ୍ଠିର କହିଲେ "ଆହା, ସେପରି କହନାହିଁ । ଯେତେହେଲେ ସେମାନେ ପରା ଆମ ଭାଇ । ଭାଇଙ୍କୁ ସାହାଯ୍ୟ କରିବା ଭାଇର କର୍ତ୍ତବ୍ୟ । ସେମାନେ ଧର୍ମ ଛାଡ଼ିବାରୁ ଧର୍ମ ତାଙ୍କୁ ପରାଭବ ଦେଉଛି । ଆମେ ଆମର କର୍ତ୍ତବ୍ୟ ଛାଡ଼ିବା କାହିଁକି ?"

ଭୀମ ଅର୍ଜୁନ ସେ ସ୍ଥାନରେ ପହଞ୍ଚି ଅସୁର ସହିତ ପ୍ରବଳ ଯୁଦ୍ଧ କଲେ । କର୍ଣ୍ଣ ତ ମରି ପଡ଼ିଥିଲେ । ସକାଳେ ସୂର୍ଯ୍ୟୋଦୟ ହେବାରୁ ସୂର୍ଯ୍ୟକିରଣ ଲାଗି ତାଙ୍କର କାନରେ ଜନ୍ମରୁ ଲାଗିଥିବା ଅମୃତ କୁଣ୍ଡଳରୁ ଅମୃତ ଝରିଲା ଓ ସେ ସଙ୍ଗେ ସଙ୍ଗେ ବଞ୍ଚି ଉଠିଲେ । ସେ ମଧ୍ୟ ଭୀମ ଅର୍ଜୁନଙ୍କ ସହିତ ମିଶି ଅସୁର ସଙ୍ଗେ ବହୁତ ଯୁଦ୍ଧ କଲେ । ଅଶ୍ୱତ୍ଥାମା ଏହି ସୁଯୋଗ ଦେଖି ବନ୍ଧନରୁ ଖସିଆସି ଅସୁର ସଙ୍ଗେ ଲଢ଼ିଲେ । ମାତ୍ର ବ୍ରହ୍ମାଙ୍କ ବରରେ ବଳୀୟାନ୍ ଦୁର୍ଦ୍ଦାନ୍ତ ଅସୁରକୁ କେହିହେଲେ ଜିଣି ପାରିଲେ ନାହିଁ ।

ଯୁଧିଷ୍ଠିର ବଡ଼ ବ୍ୟସ୍ତ ହୋଇ ସହଦେବଙ୍କୁ ଅସୁରର ମୃତ୍ୟୁ ଭେଦ ପଚାରିଲେ । ସହଦେବ ସର୍ବଜ୍ଞ । ମାତ୍ର କେହି ନ ପଚାରିଲେ ସେ ନିଜଆଡ଼ୁ କିଛି କହନ୍ତି ନାହିଁ । ଯାହାହେଉ ସେ କହିଲେ ଯେ ବ୍ରହ୍ମାଙ୍କ ବରରେ

ଅସୁରର ନାଭିଚକ୍ର ଭିତରେ ଅମୃତ ଲଗା ରହିଛି, ଅଗ୍ନିଶରମାରି ତାକୁ ଭେଦ କରିବାକୁ ହେବ । ଅସୁରର ହୃଦୟକୁ ପାଶୁପତ ଓ ବେକକୁ ଅର୍ଦ୍ଧଚନ୍ଦ୍ର ବାଣ ମାରିବାକୁ ହେବ । ଏ ତିନି ମହାଶରକୁ ଏକାବେଳେକେ ପ୍ରୟୋଗ କଲେ ଅସୁର ମରିବ । ଯୁଧିଷ୍ଠିର ଏହାଶୁଣି ବଡ଼ ଚିନ୍ତିତ ହେଲେ । ତେବେ ତାଙ୍କର ଭରସା ହେଲା ହୁଏତ ଅର୍ଜ୍ଜୁନ ଏହା କରି ପାରିବେ । ତେଣୁ ସେ ଅର୍ଜ୍ଜୁନଙ୍କୁ ଇସାରାରେ ତାହା ଜଣାଇଦେଲେ । ସଙ୍ଗେ ସଙ୍ଗେ ଅର୍ଜ୍ଜୁନ ମନ୍ତ୍ର ପଢ଼ି ସେହି ତିନିଶରକୁ ଏକାବେଳେକେ ମାରିଲେ । ଅସୁର ମରି ଢଳି ପଡ଼ିଲା । ସ୍ୱର୍ଗରୁ ଦେବତାମାନେ ଅର୍ଜ୍ଜୁନଙ୍କ ଉପରେ ପୁଷ୍ପବୃଷ୍ଟି କଲେ ।

ଏବେ ଚିନ୍ତା ପଡ଼ିଲା କୌରବମାନେ ବଞ୍ଚିବେ କିପରି ? ଯେ ତାଙ୍କୁ ମାରିଛି ସେହି ଏକା ସଞ୍ଜୀବନୀ ଶରମାରି ତାଙ୍କୁ ବଞ୍ଚାଇ ପାରେ । ମାତ୍ର ତାଙ୍କୁତ ଅସୁର ମାରିଛି । ତେଣୁ ଅନ୍ୟ କାହାର ସଞ୍ଜୀବନୀ ଶରଦ୍ୱାରା ସେ-ମାନେ ବଞ୍ଚିବେ ନାହିଁ । ଯୁଧିଷ୍ଠିରଙ୍କର ଜିଦ୍, ସେମାନେ ନବଞ୍ଚିବା ପର୍ଯ୍ୟନ୍ତ ସେ ଏ ସ୍ଥାନ ଛାଡ଼ି ଯିବେନାହିଁ । ବରଂ କୌରବ ଭାଇମାନଙ୍କ ସଙ୍ଗେ ନିଜେ ମରିବେ ।

ଶେଷରେ ସହଦେବଙ୍କ ପରାମର୍ଶରେ ଅର୍ଜ୍ଜୁନ ନିଜ ପିତା ଦେବରାଜ ଇନ୍ଦ୍ରଙ୍କୁ ସ୍ମୃତି କଲେ । ଇନ୍ଦ୍ର ଅମୃତ ସିଞ୍ଚନ କରିବାରୁ କୌରବ ଶହେ-ଭାଇ,ସୈନ୍ୟ ସାମନ୍ତ ସମସ୍ତେ ବଞ୍ଚିଉଠିଲେ । ଦୁର୍ଯ୍ୟୋଧନ କର୍ଣ୍ଣଙ୍କଠାରୁ ସବୁ ଘଟଣା ଶୁଣିଲେ, ମାତ୍ର ପାଣ୍ଡବ ଭାଇମାନଙ୍କପ୍ରତି କୃତଜ୍ଞତା ପ୍ରକାଶ କରିବା ପରିବର୍ତ୍ତେ ମନରେ ଈର୍ଷ ଭାବ ଧରି ସୈନ୍ୟସାମନ୍ତ ସହିତ ସିଧା ହସ୍ତିନାକୁ ଚାଲିଗଲେ । ଯୁଧିଷ୍ଠିର ଏହାଦେଖି ମନରେ କୌଣସି ଦୁଃଖ କଲେନାହିଁ । ନିଜର କର୍ତ୍ତବ୍ୟ ଶେଷ ହେଲାଜାଣି ସେ ମଧ୍ୟ ନିଜ ଭାଇମାନଙ୍କୁ ସଙ୍ଗରେ ଧରି ବାରଣାବନ୍ତ ଫେରିଲେ ।





# ମ ହା ଭା ର ତ

## ସାରଳା

### ୫ମ ଅଧ୍ୟାୟ

## ଝିମାଣି ଖେଳ

କଥାରେ କହନ୍ତି, ଝିମାଣି ଖେଳରୁ ମହାଭାରତ । ପ୍ରକୃତରେ ଏହି ଝିମାଣି ଖେଳ ପରଠାରୁ କୌରବ, ପାଣ୍ଡବ ମଧ୍ୟରେ ଖୋଲ୍ ଖୋଲି ଶତ୍ରୁତା ଆରମ୍ଭ ହୋଇଗଲା । ଆଉ ତାହା ମହାଭାରତ ଯୁଦ୍ଧରେହିଁ ଶେଷହେଲା ।

ଥରେ କୌରବ, ପାଣ୍ଡବ ମିଶି ଝିମାଣି ଖେଳ ଖେଳିଲେ । ଖେଳରେ ଜଣେ ଦୌଡ଼ି ଆଉ ଜଣକୁ ଛୁଇଁବା କଥା । ଏହା ପ୍ରାୟ ଆଜି କାଲିର ଖୋ ଖୋ ଖେଳ ଭଳି । ପ୍ରଥମେ ଦୁଃଶାସନ ଯୁଧିଷ୍ଠିରଙ୍କୁ ଗୋଡ଼ାଇ ଯାଇ ଛୁଇଁଦେବା ଆଳରେ ଏପରି ଗୁଡ଼ପୋଡ଼ା ମାରିଲା ଯେ ବିଚରା ଯୁଧିଷ୍ଠିର ତଳେ ପଡ଼ିଯାଇ ରକ୍ତ ବାନ୍ତି କରିପକାଇଲେ । ଏହା ଦେଖି ଅନ୍ୟ ଗୁରୁଭାଇ ଭାରି ବିକଳ ହେଲେ । ଭୀମ, ରାଗରେ ଦାନ୍ତ କଡ଼ମଡ଼ କରି ଉଠିଲେ । ମାତ୍ର ଖେଳ ତ ହେଉଛି । କରିବେ କଣ ? ଯୁଧିଷ୍ଠିର ମଧ୍ୟ ଭାଇମାନଙ୍କୁ ଶାନ୍ତ ହେବାପାଇଁ କହିଲେ । ଖେଳରେ ଯେତେବେଳେ ଭୀମଙ୍କର ଦୌଡ଼ିବାପାଳି ପଡ଼ିଲା, ସେ କୌରବ ଶହେ ଭାଇଙ୍କୁ ଗୋଡ଼ାଇ ପ୍ରତ୍ୟେକଙ୍କୁ ଏପରି ବ୍ରହ୍ମ ଗୁଡ଼ପୋଡ଼ା ମାରିଲେ ଯେ ସମସ୍ତେ ତଳେ ପଡ଼ି ରକ୍ତବାନ୍ତି କରିବା ସଙ୍ଗେ ସଙ୍ଗେ ଅଚେତ ହୋଇଗଲେ । ପରେ ଧୃତରାଷ୍ଟ୍ର ଏ ଖବର ପାଇ ଆସି ପୁଅମାନଙ୍କୁ ସାଷ୍ଟମ କରି ଘରକୁ ନେଲେ ।

ସେହିଦିନଠାରୁ ଧୃତରାଷ୍ଟ୍ରଙ୍କ ମନରେ ଦକା ପଶିଲା । ସେ ବୁଝିଲେ, ବେଳହୁଁ ଗୋଟାଏ କିଛି ଉପାୟ ନକଲେ ଏହି ଭୀମ ହାତରେ ନିଜର ଶହେ ପୁଅଯାକ ଦିନେ ନିଶ୍ଚୟ ମରିବେ । ସେ ବଳରାମଙ୍କୁ ସ୍ମରଣ କଲେ । ବଳରାମ ପହଞ୍ଚିବାରୁ ତାଙ୍କ ଆଗରେ ଭୀମର ଉପଦ୍ରବସବୁ ବର୍ଣ୍ଣନା କଲେ । ବଳରାମ କୌରବ ଶହେ ଭାଇଙ୍କୁ ଆଶୀର୍ବାଦ କରି କହିଲେ ଯେ ଏଣିକି ଏ ପିଲାମାନଙ୍କର ଦାୟିତ୍ୱ ସେ ନିଜେ ଗ୍ରହଣ କଲେ । ପାଣ୍ଡବଙ୍କୁ ସଂହାରକରି ସେ କୌରବଙ୍କୁ ରାଜଚକ୍ରବର୍ତ୍ତୀ କରିବେ ।

ବଳରାମ ଦ୍ୱାରକା ଫେରିଯାଇ ଶ୍ରୀକୃଷ୍ଣଙ୍କୁ ଏ ବିଷୟ କହିଲେ । ଶ୍ରୀକୃଷ୍ଣଙ୍କ ସହିତ ତୃତୀୟ ପାଣ୍ଡବ ଅର୍ଜ୍ଜୁନଙ୍କର ଅଭେଦ ପ୍ରୀତି ବିଷୟ ବଳରାମ ଜାଣନ୍ତି ନାହିଁ । ଶ୍ରୀକୃଷ୍ଣ ବଡ଼ଭାଇଙ୍କର ପ୍ରତିଜ୍ଞା ଶୁଣି ବଡ ଚିନ୍ତିତ ହେଲେ ଓ ଅର୍ଜ୍ଜୁନଙ୍କୁ ଗୋପନରେ ଡ଼ାକି ସବୁ ବିଷୟ ବୁଝାଇଦେଇ ଖୁବ୍ ସତର୍କରେ ଚଳିବାକୁ ପରାମର୍ଶ ଦେଲେ ।

ଦିନେ ଧୃତରାଷ୍ଟ୍ର କୁନ୍ତୀଙ୍କୁ ଡ଼ାକି କହିଲେ, "ମା, ଦୁର୍ଯ୍ୟୋଧନ ଆଉ ଭୀମର କେବେହେଲେ ପଡ଼ିଲାନାହିଁ । ଦୁଷ୍ଟପଣରେ କିଏ କାହାକୁ କମ୍ ନୁହନ୍ତି । ମୁଁ ଭାବୁଛି, ତମେ ହସ୍ତିନାରୁ ପୁଅମାନଙ୍କୁ ନେଇଯାଇ ଇନ୍ଦ୍ର-ପ୍ରସ୍ଥରେ ରହିଲେ ଭଲହୁଅନ୍ତା । ଅବଶ୍ୟ ପୁଅମାନେ ପ୍ରତିଦିନ ରାଜସଭାରେ ବସି ଉପଯୁକ୍ତ ସମ୍ମାନର ଅଧିକାରୀ ହୁଅନ୍ତେ ।

କୁନ୍ତୀ ଏହା ଧୃତରାଷ୍ଟ୍ରଙ୍କର ଆଦେଶ ବୋଲି ଧରିନେଇ ପୁଅମାନଙ୍କୁ ନେଇଯାଇ ଇନ୍ଦ୍ରପ୍ରସ୍ଥରେ ବାସକଲେ । ଏଣିକି ପାଣ୍ଡବ ପାଞ୍ଚଭାଇ ଧୃତରାଷ୍ଟ୍ରଙ୍କ ଆଦେଶମତେ ପ୍ରତିଦିନ ରାଜସଭାରେ ଆସି ଯୋଗଦେଲେ ।

## ଘରଛିଦ୍ର ପଦାରେ

ଦୁର୍ଯ୍ୟୋଧନଙ୍କର ତ ଖଳପ୍ରକୃତି । କୌଣସି ଗୋଟାଏ ଆଳରେ ଅନର୍ଥ ଭିଆଇବା, ପାଣ୍ଡବମାନଙ୍କୁ ଅପମାନିତ କରିବା, ତାଙ୍କର ଉଦ୍ଦେଶ୍ୟ । ଦିନେ ପାଣ୍ଡବମାନେ ରାଜସଭାକୁ ଆସିବାବେଳେ ସେ ଆଗ ଯୁଧିଷ୍ଠିରଙ୍କୁ ଲକ୍ଷ୍ୟକରି କହିଲେ "ବସ ହେ ଧର୍ମପୁତ୍ର ।" ଭୀମଙ୍କୁ କହିଲେ "ହେ ପବନ ପୁତ୍ର, ବସ ।" ଅର୍ଜ୍ଜୁନଙ୍କୁ ଲକ୍ଷ୍ୟକରି କହିଲେ "ଇନ୍ଦ୍ରପୁତ୍ର,

ବସ ।” ନକୁଳ, ସହଦେବଙ୍କୁ କହିଲେ “ଅଶ୍ୱିନୀକୁମାର ପୁତ୍ର, ବସ ।” ତେଣିକି ପ୍ରତିଦିନ ସେ ଏହିପରି କହିବାକୁ ଲାଗିଲେ । ଅନ୍ୟଭାଇମାନେ ଅବଶ୍ୟ ଏ କଥାରେ ଗୁରୁତ୍ୱ ଦେଲେନାହିଁ । ମାତ୍ର ଭୀମଙ୍କୁ ଏହା ବଡ଼ ଅଡୁଆ ଲାଗିଲା । ସେ ଏହାର କାରଣ କିଛି ସ୍ଥିର କରିପାରିଲେ ନାହିଁ । ଦିନେ ଘରକୁ ଫେରିଯାଇ ମା କୁନ୍ତୀଙ୍କୁ ଏକଥା ପଚାରିଲେ । କୁନ୍ତୀ ବୁଝାଇଦେଲେ, ମହାରାଜ ପଣ୍ଡୁ ଏହି ପଞ୍ଚଦେବତାଙ୍କର କୃପାନେଇ ଜନ୍ମ ହୋଇଥିଲେ । ତୁମେମାନେ ସମସ୍ତେ ଦେବଅଂଶୀ । ଦୁର୍ଯ୍ୟୋଧନ ଯାହା କହୁଛି, ଭଲ କହୁଛି । ସେଥିରେ ବ୍ୟସ୍ତ ହେବାର କିଛି ନାହିଁ ।

ମାତ୍ର ଭୀମଙ୍କ ମନ ଏଥିରେ ମାନିଲା ନାହିଁ । ଭୀମ ମନେ ମନେ ଭାବିଲେ, ଆମେ ଏକ ବାପାଙ୍କର ପାଞ୍ଚପୁଅ । ବାପା ପଣ୍ଡୁଙ୍କ ନାମ ଦିନେ ହେଲେ ପଡୁନାହିଁ । ଅଥଚ ପାଞ୍ଚଭାଇଙ୍କ ବାପାବୋଲି ପାଞ୍ଚପ୍ରକାର ନାମ ପ୍ରତିଦିନ ଶୁଣିବାକୁ ମିଳୁଛି । ଏହା କିପରି କଥା ?

ଦିନେ ଭୀମ ଘରେ କବାଟ କିଳି ଶୋଇଲେ । ଯେ ଯେତେ ଡାକିଲେ ମଧ୍ୟ ଆଉ ଉଠିଲେ ନାହିଁ କି କବାଟ ଫିଟାଇଲେ ନାହିଁ । ଦିନଯାଇ ସନ୍ଧ୍ୟା ହେଲା । ତଥାପି କବାଟ ଫିଟିଲାନାହିଁ । ବେଳାକୁ ଷାଠିଏ ପୌଟି ଅନ୍ନ ଯେଉଁ ଭୀମକୁ ନଅଣ୍ଟ ହୁଏ ତାର ପୁଣି ଦିନସାରା ଉପବାସ । ଏଥିରେ କି ମା’ ଭାଇଙ୍କ ଦେହ ସହେ ! ଭୀମ ବଟର ଭୋକରେ ଆଉଟୁ ପାଉଟୁ ହେବଣି ଭାବି ମା ଓ ଭାଇମାନେ ବଡ଼ ବ୍ୟାକୁଳ ହେଲେ । ମାତ୍ର ଭୀମର ଏକା ଜିଦ୍ । ସେ ଭୋକ ଉପାସରେ ମରିବ, ମାତ୍ର କବାଟ ଫିଟାଇବ ନାହିଁ । ସମସ୍ତେ ନିରୁପାୟ ହୋଇ ଶେଷରେ ଶ୍ରୀକୃଷ୍ଣଙ୍କୁ ସ୍ମରଣ କଲେ । ଶ୍ରୀକୃଷ୍ଣ ଆସି ପହଞ୍ଚି ଭୀମକୁ ବହୁତ କଅଁ ନେଇ ସଅଁ ନେଇ ଡାକିଲେ “ଭାଇ ଭୀମ, କବାଟ ଖୋଲ । ଖା ପିଅ କର । ମୁଁ ତମର ସବୁ ସମସ୍ୟା ନିଶ୍ଚୟ ସମାଧାନ କରିଦେବି ।” ଶ୍ରୀକୃଷ୍ଣଙ୍କ କଥାରେ ଭୀମଙ୍କର ଭରସା ହେଲା । ସେ କବାଟ ଫିଟାଇଲେ । ଖାଇପିଇସାରି ଶ୍ରୀକୃଷ୍ଣଙ୍କୁ ତାଙ୍କର ଦୁଃଖର କାରଣ ଜଣାଇଲେ । ଶ୍ରୀକୃଷ୍ଣ ତାଙ୍କୁ ଏକାନ୍ତରେ କହିଲେ “ଦୁର୍ଯ୍ୟୋଧନ ଯେତେବେଳେ ତୁମକୁ କହିବ, ବସହେ ପବନ ପୁତ, ତୁମେ ସଙ୍ଗେ ସଙ୍ଗେ କହିବ, ‘ବସୁଛହେ ଗୋଲକ

ସୁତ' । ଏତିକ କହିଲେ ସେ ଚୁପ୍ ହୋଇଯିବ । ଆଉଦିନେ ତୁମକୁ ନେସପର କହିବ ନାହିଁ ।"

ଭୀମଙ୍କ ମନ ଭାରି ଖୁସି ହୋଇଗଲା । କାଳେ ଭୁଲିଯିବେ ବୋଲି ଧନସାର ଗୋଲକ ସୁତ ବୋଲି ମନେ ମନେ ଘୋଷି ହୋଇ ରାତିରେ ଶୋଇଲେ । ସକାଳେ ଉଠିଲା ବେଳକୁ ଆଉ ସେ ନାଁଟି ମନେ ପଡ଼ିଲା ନାହିଁ । ଶ୍ରୀକୃଷ୍ଣ ତ ଦ୍ୱାରକାକୁ ଫେରିଗଲେଣି । ଭୀମକୁ ଆଉ ବୁଦ୍ଧି ଦିଶିଲାନାହିଁ । ହଠାତ୍ ଖିଆଲ ହେଲା, ସହଦେବ ତ ସର୍ବଜ୍ଞ । ସେ ନିଶ୍ଚେ ସେ ନାଁ ଟି କହିପାରିବ । ଦୌଡ଼ିଯାଇ ସହଦେବଙ୍କୁ ପଚାରିଲେ "ବାବୁରେ, ଗତକାଲି ଶ୍ରୀକୃଷ୍ଣ ମତେ ଗୋଟାଏ ନାଁ କହିଗଲେ । କଅଣ ସେ ନାଁ ଟା କହିଲୁ ।" ସହଦେବ ସଙ୍ଗେ ସଙ୍ଗେ କହିଲେ, "ଗୋଲକ ସୁତ ।" "ପାଇଗଲି ରେ" ବୋଲି କହି ଏକା ଡିଆଁକେ ଭୀମ ଯାଇ ରାଜ ସଭାରେ ହାଜର । ଭୀମଙ୍କୁ ଦେଖି ପ୍ରତିଦିନ ପରି ଦୁର୍ଯ୍ୟୋଧନ କହିଲେ "ବସ ହେ ପବନ ପୁତ ।" ଭୀମ ସଙ୍ଗେ ସଙ୍ଗେ ସମସ୍ତେ ଶୁଣିବାଭଳି ବଡ଼ ପାଟିରେ କହିଲେ "ବସୁଛି ହେ ଗୋଲକ ସୁତ ।" ଏହାଶୁଣି ଭୀଷ୍ମ, ଦ୍ରୋଣ, ବିଦୁର ଆଦି ଜାଣିବା ଶୁଣିବା ବ୍ୟକ୍ତିମାନେ ହସିପକାଇଲେ । ପରସ୍ପର ଭିତରେ କଥାବାର୍ତ୍ତା ହେଲେ' ',ଭୀମା ଏ ଭେଦ କେଉଁଠୁ ପାଇଲା ? "

ଏଣେ ଦୁର୍ଯ୍ୟୋଧନଙ୍କୁ ବହୁତ ଲଜ୍ଜା ହେଲା । ସେ ମହାମାନୀ ମାନଗୋବିନ୍ଦ । ଏ ଦାରୁଣ ଅପମାନ କ ତାଙ୍କର ସହ୍ୟ ହୁଅନ୍ତା ? ସେ ସଙ୍ଗେ ସଙ୍ଗେ ସଭା ଛାଡ଼ି ଚାଲିଯାଇ ନଖାଇ ନପିଇ କବାଟ କିଳି ଶୋଇଲେ । ଯେ ଯେତେ ବୁଝାଇଲେ ମଧ୍ୟ କବାଟ ଫିଟାଇଲେ ନାହିଁ । ଶେଷରେ ମା' ଗାନ୍ଧାରୀ ଆସି ବହୁତ ଡାକିବାରୁ କବାଟ ଫିଟାଇଲେ ଓ ମା'ଙ୍କୁ ଡାକିନେଇ ଏକାନ୍ତରେ ପଚାରିଲେ "କହ ମା, ଭୀମା ମୋତେ ରାଜସଭାରେ ଗୋଲକସୁତ ବୋଲି ଚିଙ୍ଗାସି କରି କାହିଁକି କହିଲା ? ଏହା ଶୁଣି ସମସ୍ତେ ହସିଲେ । ଏହାର ଅର୍ଥ କଅଣ ?"

"ମନକଥା ସେ ଜାଣଇ ଗୋ ହୃଦରେ ଯେତେ ପାପ,
ମାତାକଥା ସେ ଜାଣଇ ଗୋ ପୁତ୍ରର ଯେତେ ବାପ ।"

ଗାନ୍ଧାରୀ ଏହା ଶୁଣି ବଡ଼ ଶଙ୍କିତ ହେଲେ । ଏଣେ କହିବାକୁ ସଙ୍କୋଚ ଲାଗୁଛି । ତେଣେ ଦୁର୍ଯ୍ୟୋଧନ ଯେପରି ଜିଦ୍‌ଖୋର ସେ ନଶୁଣି କେବେ ଛାଡ଼ିବ ନାହିଁ । ଶେଷରେ ଗାନ୍ଧାରୀ କହିଲେ, "ପୁତ୍ର, ତୁ ବଡ଼ ମନ୍ଦ କାର୍ଯ୍ୟ କଲୁ । ଯୁଧିଷ୍ଠିର ତୋର ଜ୍ୟେଷ୍ଠ ଭ୍ରାତା ଓ ଅତ୍ୟନ୍ତ ଭଦ୍ର । ତାଙ୍କର ଅପମାନ କଣ ତୋର ଅପମାନ ନୁହେଁ ? ତାଙ୍କୁ ସବୁବେଳେ ଛିଦ୍ର ଦେଖାଇ କହିଲୁ । ଅନ୍ୟଭାଇମାନଙ୍କୁ ମଧ୍ୟ ସେପରି କହିଲୁ । ସେମାନେ କେତେ ସହନ୍ତେ ?

ଆପଣା ଶରୀରେ ବାଘୁ ପଡ଼ିଛୁ ଅଁ ସାଇ,
ପରକୁ ହସୁଛୁ ନାସିକାରେ ହସ୍ତ ଦେଇ ?"

"ହେଉ, ତୁ ଏବେ ଉଠି ମଣୋହି କର । ମୁଁ ତୋତେ ସବୁ କହିଦେବି କହିବ ।" ମାତ୍ର ଦୁର୍ଯ୍ୟୋଧନ ସଙ୍ଗେ ସଙ୍ଗେ ଶୁଣିବାକୁ ଜିଦ୍ କରିବାରୁ ଗାନ୍ଧାରୀ ଅଗତ୍ୟା କହିଲେ ଯେ ସେ ଉଆଁସୀ କନ୍ୟାହେତୁ ତାଙ୍କର ଭାବି ବରମାନେ ମରିଯିବାରୁ ତାଙ୍କୁ ପ୍ରଥମେ ସାହାଡ଼ା ଗଛକୁ ବିଭା କରାଗଲା । ସାହାଡ଼ା ଗଛ ମରିଯିବାରୁ ସେ ଧୃତରାଷ୍ଟ୍ରଙ୍କୁ ବିଭାହେଲେ । ସାହାଡ଼ାଗଛର ଅନ୍ୟ ଏକ ନାମ ହେଲା ଗୋଲକ ବୃକ୍ଷ । ଏବେ ତୁ ପରର ଛିଦ୍ର କହି ଆପଣାର ଛିଦ୍ରକୁ ପଦାରେ ପକାଇ ଦେଲୁ ।"

ଏହା ଶୁଣି ଦୁଃଖ ଓ କ୍ରୋଧରେ ଦୁର୍ଯ୍ୟୋଧନ ଅସ୍ଥିର ହୋଇ-ପଡ଼ିଲେ । ସେହିଦିନୁ ଆଉ ରାଜସଭାକୁ ଗଲେନାହିଁ । ତାଙ୍କର ସବୁଠାରୁ ବେଶି ରାଗହେଲା ନିଜର ଅଜା ଗାନ୍ଧାରସେନଙ୍କ ଉପରେ । କାରଣ ସେ ଜାଣିଶୁଣି ଉଆଁସୀ କନ୍ୟାକୁ ତାଙ୍କର ପିତାଙ୍କୁ ବିଭାକରାଇ କନ୍ୟାଦାୟରୁ ମୁକ୍ତ ହୋଇଗଲେ । ଏହା ହେଲା ତାଙ୍କର ବଡ଼ ଅପରାଧ ।





ମ
ହା
ଭା
ର
ତ

ସାରଳା

୭ଷ୍ଠ ଅଧ୍ୟାୟ

## ଶକୁନି

ଦୁର୍ଯ୍ୟୋଧନ ପ୍ରତିଶୋଧ ନେବାପାଇଁ ମନେ ମନେ ଏକ ଯୋଜନା କଲେ । ସେ ଏକ ନବୁଜ ପଥରଘର ତିଆରି କରାଇଲେ । ଗାନ୍ଧାର-ସେନଙ୍କ ରାଜ୍ୟକୁ ଯାଇ ତାଙ୍କୁ ସପରିବାର ନିମନ୍ତ୍ରଣ କରିଆଣି ସେ ଘର ଦେଖାଇ କହିଲେ ଯେ ପାଣ୍ଡବମାନଙ୍କୁ କୌଶଳରେ ଏହା ଭିତରେ ପୂରାଇ ମାରିବାକୁ ସେ ଏକ ଯୋଜନା ପ୍ରସ୍ତୁତ କରିଛନ୍ତି । ଗାନ୍ଧାରସେନ, ତାଙ୍କର ଶହେ ପୁଅ ଓ ଛପ୍ପନବେ ଭାଇ, ଏପରି ଶହେ ସତାନବେ ଜଣ ସେ ଘରେ ପଶି ଦେଖୁଥିବା ସମୟରେ ଦୁର୍ଯ୍ୟୋଧନ କୌଶଳରେ ଘରର କବାଟକୁ ବଜ୍ରକିଳଣୀ ଦେଇ ବନ୍ଦ କରିଦେଲେ ।

ଗାନ୍ଧାରୀ ଏହା ଶୁଣି ଅତ୍ୟନ୍ତ ଦୁଃଖିତ ହେଲେ । ମାତ୍ର ନିଷ୍ଠୁର ଦୁର୍ଯ୍ୟୋଧନ କ ବୁଝିବା ଲୋକ ? ସେ ସ୍ପଷ୍ଟ କହିଦେଲେ ଯେ ଗାନ୍ଧାରସେନଙ୍କ ପ୍ରତି ସେ କଠୋର ଶାସ୍ତି ବିଧାନ କରିଛନ୍ତି । ଦ୍ରୋହକ ଉପାସରେ ସେହି ଘର ଭିତରେ ସେ ସବଂଶେ ମରିବେ । ଗାନ୍ଧାରୀ ବହୁତ କାନ୍ଦିକାଟି ବୁଝାଇବା ପରେ ଦିନକୁ ଥରେ ଅନ୍ନ ଓ କଳସୀଏ ପାଣି ସେମାନଙ୍କୁ ଦେବା ପାଇଁ ଦୁର୍ଯ୍ୟୋଧନ ରାଜି ହେଲେ । ଗାନ୍ଧାରସେନଙ୍କ ବଡ଼ପୁଅ ଶକୁନି ବଡ଼ ବୁଦ୍ଧିମାନ । ସେ ଜାଣିଲେ ଯେ ଏ ପଡ଼ ତାଙ୍କୁ ସବୁଦିନେ ମିଳିବ ନାହିଁ । ଦୁଷ୍ଟ ଦୁର୍ଯ୍ୟୋଧନ ଦିନେ ହୁଏତ ତାହା ବନ୍ଦ କରିଦେବ । ସତକୁ ସତ କଛିଦିନପରେ ଥରେ ପରିବର୍ତ୍ତେ ଅଙ୍ଗାଏ ଅନ୍ନ ଓ ତା ପରେ

ଦିନକୁ ମାତ୍ର ଥାଳିଏ ଅନ୍ନ ମିଳିଲା । ଗାନ୍ଧାରସେନ ଅତି ଦୁଃଖରେ ଦିନେ କହିଲେ, "ଦିନକୁ ଥାଳିଏ ଅନ୍ନ ତ ଆମ ସମସ୍ତଙ୍କୁ କଦାପି ବଞ୍ଚାଇ ରଖି ପାରିବନାହିଁ । ଆମେ ସମସ୍ତେ ମରିବା । କେବଳ ଶକୁନି ଏ ଥାଳିକ ଅନ୍ନ ଖାଇ ବଞ୍ଚି ରହୁ । ସେ ଏହାର ପ୍ରତିଶୋଧ ନେବ ।" ଶକୁନିକୁ ଆଶୀର୍ବାଦ କରି କହିଲେ, "ଆମ ସମସ୍ତଙ୍କ ଆୟୁଷ ନେଇ ତୁ ବଞ୍ଚିରହ । ମୁଁ ମଲାପରେ ମୋର ଡାହାଣ ହାତର ଅସ୍ଥିକୁ ଗୋପନରେ ସଂଗ୍ରହ କରି ରଖିବୁ । ସେଥିରେ ପଶା କାଠି ତିଆରି କରି ଖେଳିଲେ ତୋତେ ଜଗତରେ କେହି ଜିଣିପାରିବେ ନାହିଁ । ଗଙ୍ଗାଙ୍କଠାରୁ ଏହି ବର ମୁଁ ପାଇଛି," ଏହା କହୁ କହୁ ତାଙ୍କ ପ୍ରାଣ ବାୟୁ ଉଡିଗଲା । କିଛିଦିନ ମଧ୍ୟରେ ଅନ୍ୟ ମାନେ ମଧ୍ୟ ମରିଗଲେ । ପଡ଼ି ଅନ୍ନପେଟିକୁ ନଅଣ୍ଟ ହେଲେ ଶକୁନି ପ୍ରହରୀ କାନ୍ଥରେ ବୋଳିଥିବା ଶୁଖିଲା ଅନ୍ନକୁ ଖାଇ କୌଣସି ପ୍ରକାରେ ବଞ୍ଚି ରହିଲେ ।

## ଶକୁନି ମନ୍ତ୍ରୀ ।

ଦିନେ ଦୁର୍ଯ୍ୟୋଧନ ପରିସ୍ରା କରିବା ପାଇଁ ରାଜବାଟି ଭିତରେ ଥିବା ବରଗଛ ମୂଳକୁ ଗଲେ । ଦାସୀ ଝରିଝରିରେ ପାଣି ନେଇ ସଙ୍ଗରେ ଯାଇ ଥାଏ । ତାଙ୍କ ପରିସ୍ରାରେ ଗୋଟିଏ ବରଫଳ ଭାସିଯିବାରୁ ଦୁର୍ଯ୍ୟୋଧନ ତାକୁଦେଖି ଭାବିଲେ, ଏହି ଫଳ ଭିତରେ ଯେତେ ମଞ୍ଜିଅଛି ସେ ସବୁ ଯଦି ଗଛହୁଏ ତେବେ ସମୁଦ୍ର ଯାକର ପାଣି ବର୍ଷିଲେ ମଧ୍ୟ ସେ ସବୁ ଗଛର କିଛି କ୍ଷତିକରି ପାରିବ ନାହିଁ । ଅଥଚ ସାମାନ୍ୟ ପରିସ୍ରାରେ ଏ ମଞ୍ଜି ଭାସିଯାଉଛି । ଏହା ଭାବି ଦୁର୍ଯ୍ୟୋଧନ ହସି ପକାଇଲେ । ରାଜା ହସିବାରୁ ପାଖରେ ଠିଆହୋଇଥିବା ଦାସୀ ମଧ୍ୟ ହସିଲା । ଦୁର୍ଯ୍ୟୋଧନ ତ ରାଗିଆ-ଲୋକ । ଦାସୀକୁ ପଚାରିଲେ "କହ, କାହିଁକି ହସିଲୁ ?" ଦାସୀ ଭୟରେ କହି ପକାଇଲା "ତୁମ୍ଭେ ହସିବାରୁ ମୁଁ ହସିଦେଲି ।" ଦୁର୍ଯ୍ୟୋଧନ ତାକୁ କହିଲେ, "ତେବେ କହ ମୁଁ କାହିଁକି ହସିଲି ? ଏକଥା କାଲି ସକାଳ ସୁଦ୍ଧା ମତେ ନ କହିଲେ ତୋ ନାକ, କାନ କାଟିଦେବି ।"

ସେହି ଦାସୀ ପ୍ରତିଦିନ ଶକୁନିଙ୍କୁ ପଡ଼ିଅନ୍ନ ଦେବାକୁ ଯାଏ । ସେ ଦିନ ଅନ୍ନନେଇ ଗଲାବେଳେ ଶକୁନିଙ୍କୁ କହିଲା; "ଆଜିକ ମୋ ହାତରୁ ଖାଇ-ଥାଅ । କାଲିକ ଏ ସଂସାରରେ ମୁଁ ଆଉ ନଥିବି ।" ଶକୁନି କାରଣ କଣ

ପଗ୍ଭରବାରୁ ଦାସୀ ସବୁ ଘଟଣା କହିଗଲା । ଶକୁନି ତାକୁ ଆଶ୍ୱାସନାଦେଇ କହିଲେ "କାଲି ରାଜାଙ୍କୁ ତୁମେ କହିବ —ମଣିମା, ଗୋଟିଏ ବରଫଳରୁ ଅସଂଖ୍ୟ ବରଗଛ ହୋଇ ପାରିବ । ଅଥଚ ସେହି ବରଫଳ ପୁଣି ପରସ୍ପରରେ ଘଷି ଯାଉଛି । ଆପଣ ବୋଧହୁଏ ଏଇଆ ଭାବ ହସିଲେ ।"

ଦାସୀ ଏହା ଶୁଣି ଆସି ସକାଳେ ରାଜାଙ୍କୁ ସେଇଆ କହିଲା । ଦୁର୍ଯ୍ୟୋଧନ ଏହା ଶୁଣି ଆଶ୍ଚର୍ଯ୍ୟ ହେଲେ ଓ କିଏ ଏହା ବତାଇଲା ବୋଲି ଦାସୀକୁ ପଗ୍ଭରିଲେ । ଦାସୀ ଶକୁନିଙ୍କ ନାମ କହିଲା । ଦୁର୍ଯ୍ୟୋଧନ ଦାସୀକୁ ବିଦାୟ ଦେଇ ସିଧା ଶକୁନିଙ୍କ ପାଖକୁ ଗଲେ ଓ ତାଙ୍କୁ ବହୁତ ଆଦର ଗୌରବ କରି ଆଣି ରତ୍ନଅଳଙ୍କାରରେ ମଣ୍ଡିତ କରି ମହାମନ୍ତ୍ରୀ ପଦରେ ଅଭିଷିକ୍ତ କରାଇଲେ । ସେହି ଦିନଠାରୁ ଶକୁନିମାମୁଁଙ୍କ ପରାମର୍ଶରେ ସବୁ କାର୍ଯ୍ୟ ଗ୍ଭଲିଲା । ଏ ଖବର ଗାନ୍ଧାରୀ ଶୁଣି ଦୁଃଖରେ ବହୁତ କାନ୍ଦିଲେ । କାରଣ ସେ ବୁଝିଲେ ଯେ ତାଙ୍କର ପିତୃକୁଳ ଧ୍ୱଂସ ହୋଇଥିଲା । ଏଥର ନିଜର କୁଳ ଧ୍ୱଂସ ହେବ ।

## ଜତୁଗୃହ ।

ଦୁର୍ଯ୍ୟୋଧନ, ଶକୁନି, କର୍ଣ୍ଣ ଓ ଅଶ୍ୱତ୍ଥାମାଙ୍କର ବିଗ୍ଭର ଗ୍ଭଲିଲା, କିପରି ପାଣ୍ଡବମାନଙ୍କୁ ମାରିବେ । ବଳରେ ମାରିବାତ ସମ୍ଭବ ନୁହେଁ । କଳ କୌଶଳ କରି ମାରିବାକୁ ହେବ । ପୁରୋଚନ ନାମକ ଜଣେ ଦୁଷ୍ଟ ଲୋକର ପରାମର୍ଶରେ ଦୁର୍ଯ୍ୟୋଧନ, ଜଉ, ଝୁଣା, ଗୁଆଘିଅ ଓ ଛଣପଟ ମିଶାଇ ତାହାଦ୍ୱାରା ଏକ ଘର ତିଆରି କଲେ । ଧୃତରାଷ୍ଟ୍ରଙ୍କ ଆଦେଶରେ ପାଣ୍ଡବମାନେ ମା'ଙ୍କ ସହିତ ସେହିଘରେ ବାସ କଲେ । ଘରଟି ବାହାରକୁ ଏତେ ସୁନ୍ଦର ହୋଇଥାଏ ଯେ ଭୀମ ତାକୁ ଦେଖି ଭାରି ଖୁସି ହୋଇଗଲେ । ଦୁର୍ଯ୍ୟୋଧନ ପ୍ରତି ତାଙ୍କର ଆଉ ଶତ୍ରୁଭାବ ରହିଲା ନାହିଁ । ଯୁଧିଷ୍ଠିର ମଧ୍ୟ ଏହା ଲକ୍ଷ୍ୟକରି ଭାରି ଖୁସିହେଲେ । ସେ ମନରେ ଭାବିଲେ, ଯାହାହେଉ, ଭୀମ କୌରବଙ୍କ ସଙ୍ଗରେ ଆଉ କଳିଗୋଳ କରିବ ନାହିଁ ।

ମାତ୍ର ଅର୍ଜ୍ଜୁନଙ୍କୁତ ଶ୍ରୀକୃଷ୍ଣ ପୂର୍ବରୁ ସତର୍କ କରିଦେଇଛନ୍ତି । ତାଙ୍କ ମନରେ ସନ୍ଦେହ ହେଲା । ସେ ଭାବିଲେ, ଦୁଷ୍ଟ ଦୁର୍ଯ୍ୟୋଧନର ଆମ ପ୍ରତି ଏତେ ଶ୍ରଦ୍ଧା କାହିଁକି ? କାହିଁକି ସେ ଏତେ ସୁନ୍ଦର ଘରଟିଏ ଆମପାଇଁ

ଓଆର କଲା ? ସହଦେବ ତ ସର୍ବଜ୍ଞ । ସେ ଦୁର୍ଯ୍ୟୋଧନର କପଟ ଜାଣି ମନେ ମନେ ବଡ଼ ଦୁଃଖିତହେଲେ । ମାତ୍ର କେହି ନ ପଚାରିଲେ ତ ସେ ନିଜ ଆଡ଼ୁ କିଛି କହିବେ ନାହିଁ । ତାଙ୍କର ସର୍ବଦା ବିରସ ମୁହଁ ଦେଖି ଯୁଧିଷ୍ଠିର ତାଙ୍କୁ ଏକାନ୍ତରେ କାରଣ ପଚାରିବାରୁ ସେ ଦୁର୍ଯ୍ୟୋଧନର ସବୁ ଚକ୍ରାନ୍ତ କହିଗଲେ । ଯୁଧିଷ୍ଠିର ତ ଶୁଣି ଅବାକ୍ । ସହଦେବଙ୍କୁ ବାରଣ କଲେ "ବାବୁରେ, ତୁ ଏ କଥା ଆଉ କାହାକୁ କହନା । ଭୀମ ଯଦି ଏ କଥା ଜାଣିବ, ସଙ୍ଗେ ସଙ୍ଗେ ଯାଇ କୌରବ ଶହେ ଭାଇଙ୍କର ତଣ୍ଟି ଚିପି ମାରଦେଇ ଆସିବ । ଅନ୍ଧ ବଡ଼ ବାପାଙ୍କର ପୁତ୍ରଶୋକ ମୁଁ କଦାପି ସହ୍ୟକରି ପାରିବ ନାହିଁ ।"

ତଥାପି ଯୁଧିଷ୍ଠିର ନିଶ୍ଚିନ୍ତ ରହିପାରିଲେ ନାହିଁ । ତାଙ୍କ ସଙ୍ଗରେ ରହିଲେ କାଳେ କେତେବେଳେ ଭୀମ ଏକଥା ଜାଣିପକାଇବ । ଏଥିପାଇଁ ଗୋଟିଏ ଗଣ୍ଡା ଶିକାର କରି ଧୃତରାଷ୍ଟ୍ରଙ୍କୁ ଉପହାର ଦେବା ନିମିତ୍ତ ଭୀମକୁ ହସ୍ତିନାପୁର ପଠାଇ ଦେଲେ । ମାତ୍ର ସେଠାରେ ଏକ ଅଘଟଣ ଘଟିଲା ।

ଭୀମଙ୍କୁ ଏକୁଟିଆପାଇ ଦୁର୍ଯ୍ୟୋଧନ, ଶକୁନି ତାଙ୍କୁ ବିଷଦେଇ ମାରି-ଦେବାକୁ ମସୁଧା କଲେ । ଉତ୍କଟ ବିଷଦେଇ ପ୍ରଚୁର ମିଷ୍ଟାନ୍ନ ପ୍ରସ୍ତୁତକରି ଭୀମକୁ ଖାଇବାକୁ ଦେଲେ । ଭୀମ ତ ଅତି ସରଳ, ନିଷ୍କପଟ ଓ ପୁଣି ଅତ୍ୟନ୍ତ ଖାଦ୍ୟଲୋଭୀ । ବିଷମିଶା ମିଷ୍ଟାନ୍ନ ପେଟଭରି ଖାଇଦେଇ ସଙ୍ଗେ ସଙ୍ଗେ ମରି ଢଳି ପଡ଼ିଲେ । ଦୁର୍ଯ୍ୟୋଧନ ଲୋକଦ୍ୱାରା ତାଙ୍କୁ ଟେକିନେଇ ଯମୁନା ଜଳରେ ଫିଙ୍ଗିଦେଲେ । ଭୀମ ମଲେ ବୋଲି ନିଶ୍ଚିନ୍ତ ମନରେ ରହିଲେ ।

ଧର୍ମୋରକ୍ଷତି ଧାର୍ମିକଂ ।

ଧର୍ମ ଧାର୍ମିକକୁ ରକ୍ଷାକରେ । ଏଣେ କଣ ହୋଇଛି ନା ପାତାଳରାଜା ଅନନ୍ତନାଗଙ୍କ ଝିଅ ବେଲବାଳୀ ନିଜ ସଖିମାନଙ୍କ ସହିତ ଜଳକେଳୀ କରୁ କରୁ ଦେଖିଲେ ଏକ ଦିବ୍ୟ ସୁନ୍ଦର ପୁରୁଷ ବୁଡ଼ି ବୁଡ଼ି ତଳକୁ ଯାଉଛି । ବେଲବାଳୀ ତାଙ୍କର ରୂପରେ ମୁଗ୍ଧ ହୋଇ ତାଙ୍କୁ ସେ ମନେ ମନେ ପତି ରୂପେ ବରଣ କଲେ ଓ କୋଳ କରି ନେଇଯାଇ ନିଜ ବାପାଙ୍କ ପାଖରେ ପହଞ୍ଚିଲେ । ଅନନ୍ତନାଗ ଭୀମଙ୍କ ମୁହଁରେ ଅମୃତ ଢାଳିବାରୁ

ସେ ବଞ୍ଚି ଉଠିଲେ ଓ ନଦରୁ ଉଠିଲାପରେ ଆଖି ମଳି ଚାରିଆଡ଼କୁ ଚାହିଁଲେ । ପାଖରେ ବହୁତ ଅମୃତକୁଣ୍ଡ ଥିଲା । ତାହାକୁ କିଛି ନ ପଚାରି ଏକା ନିଶ୍ୱାସକେ ସବୁ ପିଇ କୁଣ୍ଡ ଖାଲି କରିଦେଲେ । ଅମୃତ ପିଇ ତାଙ୍କର ଶକ୍ତି ଶହେ ଗୁଣ ବଢ଼ିଗଲାପରି ତାଙ୍କୁ ଲାଗିଲା ।

ବେଲାବାଳୀ ଓ ତାଙ୍କର ସଖୀମାନେ ଏ ଦୃଶ୍ୟକୁ ଆନନ୍ଦରେ ଉପ-ଭୋଗ କରୁ ଥାନ୍ତି ଭୀମ ଦେଖିଲେ ଚାରିଆଡ଼େ ପାଣି । ନାଗକନ୍ୟାମାନେ ତାଙ୍କୁ ଘେରି ବସିଛନ୍ତି । ମନରେ ଭାବିଲେ, ଏମାନଙ୍କ ତୋଟି ଚିପି ମାରି ପକାଇବେ । ପୁଣି ଭାବିଲେ, ପାଣି ଭିତରୁ ବାହାରିବା ପାଇଁ ବାଟତ ମିଳିବ ନାହିଁ । ତେଣୁ ଏମାନଙ୍କ ସଙ୍ଗେ ବନ୍ଧୁତା କରିବା ଉଚିତ୍ । ସେ ଶାନ୍ତ ଭାବରେ ପଚାରିଲେ ଯେ, ସେତ ଜଣେ ମଣିଷ, ଏ ଜଳରାଜ୍ୟକୁ ଆସିଲେ କିପରି ? ବେଲାବାଳୀ ସବୁ ଘଟଣା କହିଗଲେ । ଅନନ୍ତନାଗ ନିଜ କନ୍ୟାକୁ ବାହା ଦେବାପାଇଁ ଭୀମଙ୍କୁ ଅନୁରୋଧ କଲେ । ଭୀମ କହିଲେ "ଆପଣ ମୋର ପ୍ରାଣ ଦାତା, ଆପଣଙ୍କ ଆଦେଶ ମୁଁ ଅବଶ୍ୟ ପାଳନ କରିବି ।" ବେଲାବାଳୀଙ୍କ ସଙ୍ଗେ ଭୀମଙ୍କର ବିବାହ ହେଲା । ଭୀମ ପାତାଳ ପୁରରେ ମହା ସୁଖରେ ରହି ନିଜ ଭାଇମାନଙ୍କୁ ଭୁଲିଗଲେ । ଫେରିବା-କଥା ଆଉ ମନରେ ଧରିଲେ ନାହିଁ ।

## ପାଣ୍ଡବାସୁର ବଧ

ଭୀମ ଯଥା ସମୟରେ ନଫେରିବାରୁ ଯୁଧିଷ୍ଠିର ନିଜେ ଆସି ଧୃତରାଷ୍ଟ୍ରଙ୍କୁ ପଚାରିଲେ । ଧୃତରାଷ୍ଟ୍ର କହିଲେ ଯେ ଭୀମ ଯେଉଁଦିନ ଗଣ୍ଡା-ଧରି ଆସିଥିଲା, ଠିକ୍ ସେହିଦିନ ଫେରିଯାଇଛି । ଯେ ଯେତେ ଖାଇବାକୁ ଡାକିଲେ ମଧ୍ୟ ଶୁଣିଲାନାହିଁ । ଚାରିଭାଇ ମିଶି ଭୀମଙ୍କୁ ବହୁତ ଖୋଜିଲେ । ମାତ୍ର କେଉଁଠି ହେଲେ କିଛି ସନ୍ଧାନ ମିଳିଲାନାହିଁ । ତେବେ ଯୁଧିଷ୍ଠିରଙ୍କ ମନରେ ଦୃଢ଼ ବିଶ୍ୱାସ ଥାଏ ଯେ ତାଙ୍କର ପ୍ରିୟ ଭାଇକୁ ଧର୍ମ ନିଶ୍ଚୟ ରକ୍ଷା କରିବ ଓ ସେ ଦିନେ ତାଙ୍କ ପାଖକୁ ଫେରିଆସିବ ।

ଏହାର କିଛିଦିନ ପରେ କୌରବମାନଙ୍କ ଉପରେ ଏକ ବଡ଼ ବିପତ୍ତି ପଡ଼ିଲା । ପାଣ୍ଡବାସୁର ନାମରେ ଏକ ମହାବଳଶାଳୀ ବ୍ରହ୍ମରାକ୍ଷସ ହସ୍ତିନାପୁର ଆକ୍ରମଣ କଲା । କୌରବ ଶହେଭାଇ, କର୍ଣ୍ଣ, ଅଶ୍ୱତ୍ଥାମା

ଆହ୍ୱ ମହା ମହା ବୀରମାନେ ଅସୁର ସଙ୍ଗେ ଯୁଦ୍ଧ କରି ହାରିଗଲେ । ଅସୁର ସମସ୍ତଙ୍କୁ ମାରିଦେଇ ସେମାନଙ୍କର ଶବକୁ ଧାଡ଼ିକରି ପର୍ବତ ଉପରେ ଶୁଆଇଦେଲା ଓ ଗାଧୋଇ ସାରି ଆସି ଗୋଟି ଗୋଟି କରି ଖାଇବ ବୋଲି ଠିକ୍ କରି ଆଗ ଗାଧୋଇବାକୁ ଗଲା ।

ଦୈବଯୋଗକୁ ଯୁଧିଷ୍ଠିର ଭୀମଙ୍କୁ ଖୋଜି ଖୋଜି ଆସି ପର୍ବତ ଉପରେ ପଡ଼ିଥିବା ଶବଗୁଡ଼ିକୁ ଚିହ୍ନି ପାରି ବିକଳହୋଇ କାନ୍ଦିଲେ ଓ ଭୀମଙ୍କୁ ବହୁତ ମନେ ପକାଇଲେ । ଯୁଧିଷ୍ଠିରଙ୍କ ଆକୁଳ ସ୍ମରଣ ଫଳରେ ପାତାଳରେ ଭୀମଙ୍କ ଦେହ କମ୍ପି ଗଲା ଓ ଭାଇମାନଙ୍କ କଥା ମନେପଡ଼ି ଭାରି ବିକଳ ହେଲା । ସେ ବେଲାବଳୀଠାରୁ ବିଦାୟ ନେଇ ସଙ୍ଗେ ସଙ୍ଗେ ଯିବାକୁ ବାହାରିଲେ । ବେଲାବଳୀ କହିଲେ, "ସ୍ୱାମୀ, ଆପଣଙ୍କ ପ୍ରତି କର୍ତ୍ତବ୍ୟର ଆହ୍ୱାନ ଆସିଗଲା । ମୁଁ ଆପଣଙ୍କୁ କେବେ ବାଧା ଦେବ-ନାହିଁ । ତେବେ ଆପଣଙ୍କର ସନ୍ତାନ ମୋ ଗର୍ଭରେ ରହିଛି । ମତେ ପଛରେ ଅସତୀ ଅପବାଦ ଦେବେନାହିଁତ ? ଭୀମ ଅତି ଆଦରରେ ବେଲାବାଳୀଙ୍କୁ କୋଳାଗ୍ରତ କରି କହିଲେ, "ଦେଖ, ମୋର ମା' ମୋର ଜନ୍ମଦାତ୍ରୀ, ମାତ୍ର ତୁମେ ମୋର ପ୍ରାଣଦାତ୍ରୀ । ମୋତେ ପ୍ରାଣଦାନ ଦେଇଛ । ମୁଁ ତୁମ ଋଣ କଦାପି ସୁଝି ପାରିବନାହିଁ । ତୁମର ନିଶ୍ଚୟ ପୁତ୍ର ସନ୍ତାନ ହେବ । ମୁଁ ମହାବଳୀ, ତମେ ବେଲାବାଳୀ । ଆମ ଦୁହିଁଙ୍କ ନାମକୁ ମିଶାଇ ପୁଅର ନାମ ଦେବ "ବେଲାଳସେନ" ।

ନାଗକନ୍ୟାଙ୍କ ମାୟାବଳରେ ଭୀମ ମୁହୂର୍ତ୍ତମଧ୍ୟରେ ଭୂପୃଷ୍ଠରେ ପହଞ୍ଚିଲେ ଓ ସଙ୍ଗେ ସଙ୍ଗେ ବାରଣାବନ୍ତ ଗ୍ଲେଲେ । ତତଣେ ଅର୍ଜ୍ଜୁନ ଏକା ଅସୁର ସଙ୍ଗେ ଯୁଦ୍ଧ କରି କରି ହାଲିଆ ହେଲେଣି । ଏତିକବେଳେ ଭୀମ ଯାଇ ପହଞ୍ଚିବାରୁ ଯୁଧିଷ୍ଠିରଙ୍କୁ କୋଟିନିଧି ପାଇଲାପରି ଲାଗିଲା ।

କୌରବମାନେ ମରିବାର ଶୁଣି ଭୀମ ଭାରି ଖୁସିହୋଇ କହିଲେ, "ଭାଇ, ଆମର ବଇରୀକୁ ପର ମାରୁଛି । ତାଙ୍କ ଶବସବୁ ଅସୁର ଗିଳି-ଯାଉ । ଆମ କଣ୍ଟା ଯିବ । ମୁଁ ଅର୍ଜ୍ଜୁନକୁ ଯୁଦ୍ଧରୁ ଫେରାଇ ଆଣୁଛି ।" ମାତ୍ର ଯୁଧିଷ୍ଠିର ବୁଝାଇଲେ, "ବାବୁ, ତାଙ୍କୁତ ଦଇବ ଦଣ୍ଡୁଛି । ଆମ ସ୍ତ୍ରୀ ଅକାରଣରେ ଅହଲ୍ୟା କରିବାରୁ ଏଇତ ପ୍ରତ୍ୟକ୍ଷ ଫଳ ଫଳିଲା ।

"ବାୟୁରେ ଅଣଉପକାଶ୍ୱ ପରନ୍ହଂସକ ଯେଉଁ ପ୍ରାଣୀ
ଆପଣେ ନକଲେ ଏହା ଦଇବ ବହଇ ଯେ ଆଣି ।"

ଆମ ଭାଇଙ୍କୁ ଜଣେ ମାରିବ । ଆମେ ମରିବ ରହିପାରିବା ? ଯାଅ, ଶୀଘ୍ର ଅସୁରକୁ ମାର ।" ଭୀମ ଆଉ କଣ କରିବେ ? ଭାଇଙ୍କର ଆଦେଶ । ସେ ସଙ୍ଗେ ସଙ୍ଗେ ଶିର ଝୁଣି ଉଠିଲେ । ସହଦେବଙ୍କୁ ପଗ୍ଭର ବୁଝିନେଲେ ଯେ ଅସୁର କାଳୀଙ୍କ ବରରେ ବଳୀୟାନ୍ । ତାର ନିଜ ଶସ୍ତ୍ରକୁ ତାର ହାତରୁ ଛଡ଼ାଇ ନେଇ ସେଥିରେ ହାଣିଲେ ସେ ମରିବ ।

ଅର୍ଜ୍ଜୁନକୁ ଆଡ଼େଇ ଦେଇ ଭୀମ ଅସୁର ଉପରକୁ ଝାମ୍ପି ପଡ଼ିଲେ । ଦୁହେଁ ବହୁତ ମରାମରି ଗଡ଼ା ଗଡ଼ି ହେଲେ । ବନ ପର୍ବତ ଚୂରମାର ହୋଇଗଲେ । ମହାବଳୀ ଭୀମଙ୍କ ସଙ୍ଗେ ଲଢ଼ି ଅସୁର କ୍ଲାନ୍ତ ହୋଇ-ଯିବାରୁ ଗୋଟାଏ ଖଣ୍ଡା ହାତରେ ଧରିଲା । ଭୀମତ ସେହି ସୁଯୋଗକୁ ଅପେକ୍ଷା କରୁଥିଲେ । ସଙ୍ଗେ ସଙ୍ଗେ ଖଣ୍ଡା ଛଡ଼ାଇନେଇ ସେହି ଖଣ୍ଡାରେ ଅସୁରକୁ ହାଣିଦେଲେ । ଦେବରାଜ ଇନ୍ଦ୍ରଙ୍କ ଅନୁଗ୍ରହରୁ କୌରବମାନେ ପୁଣି ଜୀବନ ପାଇଲେ । ସେମାନେ ଲଜ୍ଜାରେ ମୁହଁପୋଛି ହସ୍ତିନାକୁ ଫେରିଗଲେ ।



# ମ
# ହା
# ଭା
# ର
# ତ

ସାରଳା

୭ମ ଅଧ୍ୟାୟ

## ଜତୁଗୃହ ଦାହ

ଥରେ ବିଦୁର, ଧୃତରାଷ୍ଟ୍ରଙ୍କୁ ଭେଟି କହିଲେ "ବଂଶର ବଡ଼ପୁଅ ହେଉଛି ଯୁଧିଷ୍ଠିର । ସେ ଧାର୍ମିକ ଓ ବିବେକବନ୍ତ । ପୁଣି ତାଙ୍କର ବାପା ପାଣ୍ଡୁଙ୍କର ବାହୁବଳରେହିଁ ଏ ରାଜ୍ୟ ରକ୍ଷା ହୋଇଛି । ତେଣୁ ଯୁଧିଷ୍ଠିରଙ୍କୁ ରାଜପଦରେ ଅଭିଷିକ୍ତ କଲେ ପ୍ରଜାମାନେ ଖୁସିହେବେ ।" ମାତ୍ର ଧୃତରାଷ୍ଟ୍ରଙ୍କରତ ନିଜପୁଅ ଦୁର୍ଯ୍ୟୋଧନଙ୍କୁ ରାଜା କରିବାର ଇଚ୍ଛା । ତେଣୁ ସେ ବିଦୁରଙ୍କର ପରାମର୍ଶକୁ ଶୁଣି ନଶୁଣିଲାପରି ରହିଲେ । ବିଦୁର ବହୁତ ବୁଝାଇ କହିବାରୁ ଧୃତରାଷ୍ଟ୍ର ରାଗିଯାଇ ତାଙ୍କୁ ବାଣିବାକୁ ବାହାରିଲେ । ବିଦୁର ଧର୍ମ ଧର୍ମ କହି ଫେରି ଆସିଲେ ।

ଦୁର୍ଯ୍ୟୋଧନଙ୍କର ପୁଣି ଚକ୍ରାନ୍ତ ଚାଲିଲା, କପରି ପାଣ୍ଡବଙ୍କ ସହିତେ ଜତୁଗୃହ ଦାହ କରିବେ । ସେ ପୁରୋଚନକୁ ଡକାଇ କପଟରେ ପାଣ୍ଡବଙ୍କ ରୋଷେଇଆ ହୋଇ ରହିବାକୁ ନିର୍ଦ୍ଦେଶ ଦେଲେ । ଏ କୂଟ ଚକ୍ରାନ୍ତ ବିଦୁର କୌଣସି ସୂତ୍ରରୁ ଜାଣି ପାଣ୍ଡବଙ୍କୁ ସତର୍କ କରିଦେଲେ ଓ ଏ ବିଷୟ ପ୍ରକଟ ନକରିବାକୁ ଉପଦେଶ ଦେଲେ ।

ପୁରୋଚନକୁ କୁନ୍ତୀ କହିଲେ, "ବାବୁ, ଆମେ ବହୁକାଳ ବଣ ଜଙ୍ଗଲରେ ରହିବା ହେତୁ ଆମେ ବଣ ଫଳମୂଳ ଖାଇ ରହିବା ଅଭ୍ୟାସ ହୋଇଯାଇଛି । ଘରେତ ଚୂଲି ଜଳୁନାହିଁ । ତମେ ଆଜି ରୋଷେଇ କରିବ

କଅଣ ?" ପୁରୋଚନ ଫେରିଯାଇ ଦୁର୍ଯ୍ୟୋଧନଙ୍କୁ ସେହିକଥା କହିଲା । ଆଖପାଖରେ ନିଆଁ ତ ମିଳିବ ନାହିଁ । ସେ ନିଶାରାତିରେ ନିଆଁ କେଉଁଠୁ ପାଇବ ଯେ ଘର ପୋଡ଼ିବ ? ଶକୁନିଙ୍କ ପରାମର୍ଶରେ ଦୁର୍ଯ୍ୟୋଧନ ବାରୁଣାବନ୍ତରେ ବହୁତ କମାରଶାଳ ବସାଇ ବନ୍ଧାଣୀମାନଙ୍କୁ ସାଞ୍ଜୁ ଓ ଅସ୍ତ୍ର ଶସ୍ତ୍ର ତିଆରି କାମରେ ଲଗାଇଲେ । ଉଦ୍ଦେଶ୍ୟ ହେଲା, ପୁରୋଚନ ନିଶାରାତିରେ କମାରଶାଳରୁ ନିଆଁ ଆଣି ଜତୁଘରେ ଲଗାଇଦେବ ।

ବିଦୁର ଓ ପାଣ୍ଡବମାନେ ବସି ବିଚାର କଲେ, କୌରବ ଉତ୍ପାତ ଏଡ଼ିବାକୁ ପାଣ୍ଡବମାନେ କିଛିଦିନ ଅଜ୍ଞାତ ବାସ କରିବା ଭଲ । ବିଦୁର ତାର ଉପାୟ ଚିନ୍ତା କରିବାକୁ ଲାଗିଲେ । ବହୁଦିନ ପୂର୍ବେ ପ୍ରଭୁ ଶ୍ରୀକୃଷ୍ଣ ଯେତେବେଳେ ଗୋପପୁରରେ ଥିଲେ, ଗୋଟିଏ କୌତୁକପୂର୍ଣ୍ଣ ଘଟଣା ଘଟିଥିଲା । ଦିନେ ମଥୁରାରେ ବସନ୍ତ ଉତ୍ସବ ପାଳିତ ହେଉଥାଏ । ଗୋପାଳମାନେ ଦହି ଦୁଧ ନେଇ କଂସଙ୍କୁ ଭେଟି ଦେବା ନିମିତ୍ତ ମଥୁରା ଯାଇଥାନ୍ତି । ଶ୍ରୀରାଧାଙ୍କ ଶାଶୁମଧ୍ୟ ସେଦିନ ଝିଅ ଘରକୁ ଯାଇଥାନ୍ତି । ଏହି ସୁଯୋଗରେ ରାଧା ନିଶ୍ଚୟ ଆସିବେ ଜାଣି ଶ୍ରୀକୃଷ୍ଣ ତାଙ୍କୁ ଯମୁନା-ତଟ ମାଧବୀ କୁଞ୍ଜରେ ଅପେକ୍ଷା କରିଥାନ୍ତି ।

ରାଧା ଦେଖିଲେ, ଘରେ ଶାଶୁ, ସ୍ୱାମୀ କେହି ନାହାନ୍ତି । ତେଣୁ ନିଜେ ବାହାରିକୁ ନଯାଇ ବରଂ କୃଷ୍ଣଙ୍କୁ ଘରକୁ ଡାକି ଆଣିବା । ଏହା-ଭାବି ସେ ତାଙ୍କର ଜଣେ ବୟସ୍କା ଦୂତିକା, ସରିହସୁନ୍ଦରୀକୁ କୃଷ୍ଣଙ୍କୁ ଡାକି ଆଣିବାପାଇଁ ପଠାଇଲେ । କୃଷ୍ଣ, ବିଶ୍ୱାସ ଯିବେ ବୋଲି ନିଜର ଅଳଙ୍କାର ଶାଢି ଦୂତିକାକୁ ପିନ୍ଧାଇଦେଲେ । ଦୂତିକା ଅନ୍ଧାର ରାତିରେ କୃଷ୍ଣଙ୍କୁ ଡାକି ଆଣିବା ପାଇଁ ଯମୁନା କୂଳକୁ ଗଲେ । କୃଷ୍ଣତ ରାଧାଙ୍କ ବାଟ ଚାହିଁ ଚାହିଁ ଅତି ଆତୁର ଅବସ୍ଥାରେ ଥିଲେ । ଦୂତିକାକୁ ରାଧାବୋଲି ଭାବି ଧାଇଁଯାଇ ତାକୁ କୁଣ୍ଢାଇ ପକାଇଲେ ଓ ତା ସଙ୍ଗେ ରମଣରେ ମାତିଲେ । ଶ୍ରୀକୃଷ୍ଣଙ୍କ ଅଙ୍ଗ ସଙ୍ଗଲଭି, କୋଟି ଜନ୍ମର ପୁଣ୍ୟଫଳ ଭାବି ଦୂତିକା କାଳେ ଚାଲି ପଡ଼ିଯିବ ବୋଲି ଆଦୌ ପାଟି ଫିଟାଉ ନଥାଏ । କୃଷ୍ଣତ ଏକବାର ଭୋଳ । ଦୂତିକାର ପାଚିଲା ବାଳ ତାଙ୍କୁ ରାଧାଙ୍କ ଜୁଡ଼ାର କେତକୀ ପାଖୁଡ଼ା ପରି ଦେଖା ଯାଉଥାଏ ।

ଶେଷରେ ଯେତେବେଳେ କୃଷ୍ଣ ଦୂତିକାବୋଲି ଜାଣିଲେ ତାଙ୍କୁ ବଡ଼ ଲଜ୍ଜ ଲାଗିଲା । ସେ ମନକୁ ମନ ହସି ପକାଇଲେ । ଭାବିଲେ, ରାଧା ଏକଥା ଜାଣିଲେତ ବଡ଼ ଲଜ୍ଜା କଥା ହେବ । ତେବେ କୌଣସି ନାରୀ ତାର ଗୁପ୍ତ ଶୃଙ୍ଗାର ବିଷୟ ଅନ୍ୟ ନାରୀ ଆଗରେ କଦାପି ପ୍ରକାଶ କରିବ ନାହିଁ, ଏହା ଭାବି ନିଶ୍ଚିନ୍ତ ହେଲେ । ଦୂତିକା ମଧ୍ୟ ଲଜ୍ଜ ଭୟରେ ତରତର ହୋଇ ପଳାଇଲାବେଳେ ଭୁଲରେ କୃଷ୍ଣଙ୍କ ଲୁଗାପିନ୍ଧି ପଳାଇଲା ।

ଏଣେ ରାଧା କୃଷ୍ଣଙ୍କ ପଥଚାହିଁ ବସିଛନ୍ତି । ଦୂତିକାକୁ ଏକାକୀ ଦେଖି କୃଷ୍ଣ କାହାନ୍ତି ବୋଲି ପଚାରିଲେ । ଦୂତିକା କହିଲା "ସେ କଣ ଆସିଲେ କି ? ତମର ତାଙ୍କଠି ସିନା ଏତେ ମନ । ତାଙ୍କର ତମଠି ସେତେ ସରାଗ କାହିଁକି ଦେଖି ପାରୁନାହିଁ ?"

ରାଧା—ତୋ ଓଠରେ ଚୁମ୍ବନ ଦାଗପରି କଣ ଲାଗିଛି ।

ଦୂତିକା—ତାଙ୍କୁପରା ଆସିବା ପାଇଁ ବହୁତ ନେହୁରା ହୋଇ କହି କହି ମୋ ଓଠ ସେମିତି ଶୁଖି ଯାଇଛି ।

ରାଧା—ଗଲାବେଳେ ତୋ ଜୁଡ଼ାକୁତ ଭଲକରି ବାନ୍ଧି ଦେଇଥିଲି । ଜୁଡ଼ା ଫିଟି ବାଳ ଆଲୁରୁ ବାଲୁରୁ ହୋଇ ମୁହଁରେ ପଡ଼ିଲା କେମିତି ?

ଦୂତିକା—ତାଙ୍କ ଗୋଡ଼ତଳେ ପଡ଼ି ମିନତି କଲାବେଳେ ମୋ ଜୁଡ଼ାକୁ ପରା ସେ ଝିଙ୍କି ପକାଇଲେ ।

ରାଧା—ତୋ ଗଳାରେ ରତ୍ନମାଳୀ ଦେଇଥିଲି । ମାଳୀର ଥୋପଟା ଆଗକୁ ରହି ମାଳୀଗୁଡ଼ାକ ପିଠି ପଟକୁ ପଡ଼ିଲା କିପରି ? ପୁଣି ତୋ ପିଠିରେ ଏତେ ଧୂଳି କିପରି ଲାଗିଲା ?

ଦୂତିକା—କୃଷ୍ଣପରା ମୋତେ ରାଗରେ ପେଲିଦେଲେ । ମୁଁ ଚିତ୍‌ପଟାଙ୍ଗ ହୋଇ ପଡ଼ିଗଲି ।

ରାଧା—ତୋ ଦେହରେ ଡ କଅଣ ନଖ ଦନ୍ତ ଚିହ୍ନ ହେଲାପରି ଦିଶୁଛି ।

ଦୂତିକା—ନାହିଁମ । କୃଷ୍ଣ ପେଲିଦେଲାବେଳେ ମୁଁ ପରା କଣ୍ଟାରେ ପଡ଼ି ଖଣ୍ଡିଆ ଖାବରା ହୋଇଗଲି ।

ରାଧା—କୃଷ୍ଣ ମୋ ଶାଢ଼ୀ ପିନ୍ଧିଗଲୁ । ପୁରୁଷ ଲୁଗାଟିଏ କଣ ପିନ୍ଧି ଆସିଛୁ ? ବୁଢ଼ୀଙ୍କର ପାଟି ଆପୁ ଆପୁ ହୋଇଗଲା । ସେ ଥଟେଲ ଗଳାରେ କହିଲ ଯେ ବହୁତ ଅନୁନୟ କରିବାରୁ କୃଷ୍ଣ ଶେଷରେ ଆସିବାକୁ ରାଜିହେଲେ ! ମାତ୍ର ଆଜି ନୁହେଁ, କାଲି । ଆଉ ତାଙ୍କର ଏ ପିନ୍ଧାଲୁଗାଟି ସନ୍ତକ ଦେଇଛନ୍ତି । ରାଧା କୃଷ୍ଣଙ୍କର ଲୁଗାଟି ଆନନ୍ଦରେ ଜଡ଼ାଇଧରି ରାତିଟି ପୁହାଇଲେ ।

ସରହ ସୁନ୍ଦରୀର ଗୋଟିଏ ପୁଅହେଲା । ତାର ନାମ ହେଲା ଖନକାର । ବ୍ରହ୍ମା ତାକୁ ଏକ ସିନ୍ଧିକାଠି ଦେଇ କହିଲେ, "ବାବୁ, ତସ୍କର ବୃତ୍ତି ଫଳରେ ତୋର ଜନ୍ମହେଲା । ତେଣୁ ସେହି ବୃତ୍ତି କରି ତୁ ଚଳିବୁ । ପାଣ୍ଡବମାନଙ୍କ କାର୍ଯ୍ୟସାଧନ କରିସାରିଲେ ତୋର ମୁକ୍ତି ହୋଇଯିବ ।

ଦିନେ ବିଦୁର ରାତି ଅଧରେ ନଗର ପରିକ୍ରମା କରୁ କରୁ ଖନକାରକୁ ଭେଟିଲେ । ତାଠାରୁ ସବୁକଥା ଶୁଣି ସେ ଯେ ଦୈବ ପ୍ରେରିତ ଏହା ଭାବି ମନେ ମନେ ଆନନ୍ଦିତ ହେଲେ । ତାହାରି ହାତରେ ଏକ ଦୀର୍ଘ ସୁଡ଼ଙ୍ଗ ଗୋପନରେ ଜତୁଗୃହଠାରୁ ନଦୀକୂଳପର୍ଯ୍ୟନ୍ତ ଖୋଳାଇ ନେଲେ । ନଦୀକୂଳରେ ଜଣେ ନାଉରୀକୁ ରଖି ପାଣ୍ଡବଙ୍କୁ ଖବର ଦେଲେ । ସେଦିନ ରାତିରେ ଦୈବ ଯୋଗକୁ ଗୋଟିଏ ଶବରୀ ତାର ପାଞ୍ଚପୁଅଙ୍କୁ ଧରି ଜତୁଗୃହ ବାରଣ୍ଡାରେ ଶୋଇଥିଲା । ଭୀମ ନିଶାର୍ଦ୍ଧରେ ପାଖ କମାରଶାଳର ନିଆଁ ଆଣି ନିଜେ ଜତୁଗୃହରେ ଲଗାଇ ଦେଇ ପୁରୋଚନକୁ ସେହି ନିଆଁରେ ପକାଇ ମା', ଭାଇଙ୍କୁ ସଙ୍ଗରେ ଧରି ସୁଡ଼ଙ୍ଗ ପଥରେ ନଦୀକୂଳରେ ଯାଇ ପହଞ୍ଚିଲେ ।

## କୁମ୍ଭୀର ଦୈତ୍ୟ ବଧ

ବିଦୁରଙ୍କ ଆଦେଶରେ ନାଉରୀ ନଈକୂଳେ ନାଆ ରଖି ପ୍ରସ୍ତୁତ ହୋଇ ରହିଥିଲେ । କୁନ୍ତୀ ଓ ପାଣ୍ଡବ ଭାଇମାନେ ଜଣକ ପରେ ଜଣେ ନାଆ ଉପରକୁ ଉଠିଲେ । ଶେଷରେ ଭୀମ ଦୁଇ ହାତରେ ଦୁଇଟା ଅତି ଓଜନଦାର ଲୁହାଗଦା ଧରି ନାଆ ଉପରକୁ ଉଠିବା ସଙ୍ଗେ ସଙ୍ଗେ ନାଆ ଭଡ଼ ଭଡ଼ ଶବ୍ଦ କରି ପାଣିରେ ବୁଡ଼ିଗଲା । ଯୁଧିଷ୍ଠିରଙ୍କ ଆଦେଶରେ ଭୀମ

ସେହି ଦୁଇଟା ଗଦାକୁ ସେହିଠାରେ ପାଣିରେ ପକାଇ ଦେଲେ । ତାକୁ ତ ଆଉ କେହି ନେଇ ପାରିବେ ନାହିଁ । କଥା ହେଲା, ଭୀମ ପରେ ଆସି ସେ ଦୁଇଟା ଗଦା ନେଇଯିବେ ।

ନାଆ ଯାଇ ମଝିନଈରେ ହେଲାବେଳକୁ ଏକ ମହା ବିପତ୍ତି ପଡ଼ିଲା । ସେ ନଈରେ ବାସ କରିଥିବା ଜଳପ୍ରିୟ କୁମ୍ଭୀର ପାଟି ମେଲାଇ ଆସିଲା । ସମସ୍ତଙ୍କୁ ଏକାବେଳେକେ ଗିଳିବ । ନାଉରି କହିଲା, ଅନ୍ତତଃ ଜଣକୁ ନଦେଲେ କୁମ୍ଭୀର ମୁହଁରୁ କେହିହେଲେ ବର୍ତ୍ତିବେ ନାହିଁ । ଭାବନା ପଡ଼ିଲା, କାହାକୁ କୁମ୍ଭୀର ମୁହଁରେ ଦିଆଯିବ ? ଯୁଧିଷ୍ଠିର ଭୀମଙ୍କୁ ପୁଚ୍ଛିଲେ । ମନରେ ହୁଏତ ଭାବିଲେ, ମହାବଳୀ ଭୀମ, ଏହାର ଗୋଟାଏ କିଛି ଉପାୟ କରିବ । ଭୀମ ଆଗ ଟିକିଏ ରହସ୍ୟ କରିବାକୁ କହିଲେ, "ସହଦେବ ସବୁକଥା ଜାଣି ମଧ୍ୟ ନପଚାରିଲେ କହେନାହିଁ । ଏହା ତାର ବଡ଼ ଦୋଷ । ସେ ଯଦି ପୂର୍ବରୁ ସତର୍କ କରିଦେଇଥାନ୍ତା ତେବେ ଆମେ ଏ କୁମ୍ଭୀର କବଳରେ ପଡ଼ିନଥାନ୍ତେ । ତେଣୁ ତାକୁହିଁ କୁମ୍ଭୀର ମୁହଁରେ ଦେବା ।" ଏହାଶୁଣି ଯୁଧିଷ୍ଠିର ବଡ଼ ବ୍ୟଥିତ ହୋଇ କହିଲେ, "ସେ ଆମର କୋଳପୋଛା ସାନଭାଇ, ପୁଣି ସର୍ବଜ୍ଞ । ଏଭଳି ଭାଇକୁ କୁମ୍ଭୀର ମୁହଁରେ ଦେବାକୁ ତୁ କହିପାରୁଛୁ ?"

ଭୀମ—ତେବେ ନକୁଳଟା ଭାରି ସୁକୁମାରିଆ । ବଣ ଜଙ୍ଗଲରେ ଆମ ସଙ୍ଗରେ ଚାଲିପାରିବନାହିଁ । ତେଣୁ ତାକୁହିଁ ଦେଇଦେବା ।

ଯୁଧିଷ୍ଠିର—ସାବତମା'ଙ୍କର ପୁଅକୁ ମରଣ ମୁହଁକୁ ଠେଲିଦେଇ ମୁଁ ନିଜେ ବଞ୍ଚିରହିବି ? ଏହା ତ କଦାପି ସମ୍ଭବ ନୁହେଁ ।

ଭୀମ—ଏ ଦୁଷ୍ଟ ଅର୍ଜୁନ ଶରଣ ପଶିବା ଶତ୍ରୁକୁ ଆଉ ନିଶସ୍ତ୍ର ଶତ୍ରୁକୁ କେବେ ମାରେନାହିଁ । ତେଣୁ ଯା ହାତରେ ଭବିଷ୍ୟତରେ ଶତ୍ରୁନିଧନ କରିହେବନାହିଁ । ଯାକୁହିଁ କୁମ୍ଭୀରକୁ ଦେଇଦେବା ।

ଯୁଧିଷ୍ଠିର—ଦ୍ରୋଣଗୁରୁ କହିଛନ୍ତି ଅର୍ଜୁନ ତ୍ରିଲୋକ ଜିଣିବ । ତା ପରି ଭାଇକୁ ମୁଁ ମରଣ ମୁହଁକୁ ଦେବି ?

ଭୀମ—ତେବେ ଧର, ଏ ନାଉରିକୁ କୁମ୍ଭୀର ମୁହଁରେ ପକାଇ ଦେବା ।

ଯୁଧିଷ୍ଠିର—ଆହା, ଉପକାରୀ ଜନ ଇଏ । ଆମକୁ ନଈ ପାର କରିବାକୁ କେତେଦିନରୁ ଜଗି ରହିଥିଲା । ତାକୁ ଦେଇଦେବାକୁ ତୁ କିପରି କହୁଛୁ ?

ଭୀମ—ତା ହେଲେ ମା' କୁନ୍ତୀ ତ ବୁଢ଼ୀ ହୋଇ ଗଲେଣି । ଆଉ କେତେ-ଦିନ ବା ବଞ୍ଚିବେ ? ତାଙ୍କୁହିଁ ଦେଇଦେବା ।

ଯୁଧିଷ୍ଠିର ଚଡ଼ଉଠି କହିଲେ, "ଭୀମ, ତୋର ଟିକିଏ ହେଲେ ଅକଲ ନାହିଁ । ଗର୍ଭଧାରୀ ମା'ଙ୍କୁ କୁମ୍ଭୀର ମୁହଁରେ ଦେବାକୁ କହିବାପାଇଁ ତୋ ପାଟି ଲେଉଟିଲା କିପରି ?

କୁନ୍ତୀଙ୍କୁ ତ ଭୀମର ବଳ ଜଣା । ସେ ସଙ୍ଗେ ସଙ୍ଗେ କହିଲେ, "ଏକା ଭୀମାକୁ ତ ଷାଠିଏ ପଇଟି ଅନ୍ନ ନିଅଣ୍ଟ । ବିଦେଶରେ ତାକୁ ଏତେ ଖାଇ-ବାକୁ କିଏ ଦେବ ? ତାକୁହିଁ କୁମ୍ଭୀର ମୁହଁରେ ଦିଅ ।"

"ଆଜ୍ଞା ତେବେ ମା', ଭାଇଙ୍କ ଇଚ୍ଛା, ମୋତେ କୁମ୍ଭୀର ଖାଉ" ଏହା କହି ଶ୍ରେଷ୍ଠ ମୂର୍ତ୍ତିଟିଏ ହୋଇ ଖପ୍‌କରି ପାଣିକୁ ଡେଇଁ ପଡ଼ିଲେ । କୁମ୍ଭୀର ଆଗ ଦୁଇଗୋଡ଼ରେ ଭୀମଙ୍କୁ ଉପରକୁ ଫିଙ୍ଗିଦେଇ ପାଟି ମେଲାଇ ଖପ୍ କରି ଗିଳିଦେଲା । ଏ ଭୀଷଣ ଦୃଶ୍ୟ ଦେଖି କେବଳ କୁନ୍ତୀଙ୍କ ଛଡ଼ା ଅନ୍ୟ-ମାନେ ହା ହାକାର କଲେ । ମାତ୍ର ରାତି ପାହି ଆସୁଥିବାରୁ ଚିହ୍ନା ପଡ଼ିବା ଭୟରେ ନାଆରୁ ଓହ୍ଲାଇ ଚାଲିବାକୁ ଲାଗିଲେ ।

କୁମ୍ଭୀର ପେଟ ଭିତରେ ଭୀମ ନିଜ ପିତା ବାୟୁଦେବଙ୍କୁ ସ୍ମରଣ କରି ନିଜ ଦେହକୁ ବଢ଼ାଇବାକୁ ଲାଗିଲେ । ତାଙ୍କର ଦେହ ଏତେ ବଢିଗଲାଯେ କୁମ୍ଭୀର ପେଟ ଫାଟିଗଲା । ଭୀମ ମଲା କୁମ୍ଭୀର ଛାଲକୁ ନିଜ ଦେହରେ ଘୋଡ଼ାଇ ଭାଇମାନଙ୍କୁ ଡରାଇଲେ । କୁମ୍ଭୀର ବୋଲି ଭାବି କୁନ୍ତୀଙ୍କ ଛଡ଼ା ସମସ୍ତେ ଦୌଡ଼ି ପଳାଇଲେ । ଭୀମ ଆସି ମା'ଙ୍କୁ ଓଳଗି ହେଲେ । ଯୁଧିଷ୍ଠିର ଭୀମଙ୍କୁ ଆନନ୍ଦରେ କୁଣ୍ଢାଇ ପକାଇଲେ । ମା' ଓ ଭାଇମାନେ ଶୋକରେ ଚାଲି ନପାରିବାରୁ ଭୀମ ସମସ୍ତଙ୍କୁ କାନ୍ଧରେ, କାଖରେ ବସାଇ ଡଗ ଡଗହୋଇ ଚାଲିବାକୁ ଲାଗିଲେ । ତେଣେ ଜତୁଗୃହ ଭିତରେ ପୋଡ଼ି ମରିଥିବା ଶବରଣୀ ଓ ତାର ପାଞ୍ଚପୁଅଙ୍କୁ କୁନ୍ତୀ ଓ ପାଣ୍ଡବ ମନେ କରି ଲୋକେ ହାହାକାର କଲେ । ମାତ୍ର କୌରବମାନେ ନିଶ୍ଚିନ୍ତ ହେଲେ ।

## କ୍ମାନ୍ମରଦୈତ୍ୟ ବଧ ।

ବାଟରେ ମା' ଓ ଭାଇମାନଙ୍କ ଭାର ଶୋଷ ହେବାରୁ ଭୀମ, ସେମାନଙ୍କୁ ବସାଇଦେଇ ପାଣି ଖୋଜିବାକୁ ବାହାରିଲେ । ପାଖରେ ପାଣି ନମିଳିବାରୁ ଦୂରକୁ ଚାଲିଗଲେ । ଦେଖିଲେ ସରଯୂ ନଦୀ ବହି ଯାଉଛି । ତା' କୂଳରେ ବିରାଟ ମଧୁବନ ତୋଟା । ଗଛମାନଙ୍କରେ ଫଳ ଭର୍ତ୍ତି ହୋଇଛି । ଭୀମଙ୍କ ଆନନ୍ଦ ଦେଖେ କିଏ ? ଆଗ ପେଟେ ପାରିଲା ଫଳ ଖାଇଗଲେ । ତା ପରେ ମା ଓ ଭାଇମାନଙ୍କପାଇଁ ଘରେ ଫଳ ଓ ପତ୍ର-କଲସୀରେ ପାଣି ଧରି ଫେରିଲା ବେଳକୁ ଘୂ ଘୂ ଶବ୍ଦ ଶୁଭିଲା ।

ମଧୁବନ ତୋଟାର ମାଲିକ ହେଉଛି କନ୍ମର ଦୈତ୍ୟ । କୁମ୍ମୀର, କନ୍ମର, ହିଡ଼ିମ୍ବ ଓ ବକାସୁର, ଏମାନେ ହେଲେ ଚାରି ଭାଇ । କୁମ୍ମୀରତ ଆଗରୁ ମରିସାରିଛି । ମଣିଷ ଗନ୍ଧ ପାଇ କନ୍ମର ଛୁଟି ଆସିଲା । ଗିଳିବବୋଲି ଭୀମଙ୍କୁ ଜାବୁଡ଼ି ଧରିଲା ବେଳକୁ ଭୀମ ତାକୁ ତଳେ ପକାଇ ମାଡ଼ିବସିଲେ ଓ କିଛି ସମୟ ଗଡ଼ା ଗଡ଼ି ହେଲାପରେ ଅସୁରର ତଣ୍ଟି ଚିପି ମାରିଦେଲେ । ମା' ଓ ଭାଇମାନେ ଫଳଖାଇ, ପାଣିପିଇ ଟିକିଏ ସୁସ୍ଥ ହେବାରୁ ଭୀମ ସବୁ ଘଟଣା କହିଲେ । ସମସ୍ତେ ଭୀମଙ୍କୁ ବହୁତ ପ୍ରଶଂସା କଲେ ।





ମ
ହା
ଭା
ର
ତ

ସାରଳା

୮ମ ଅଧ୍ୟାୟ

## ହିଡ଼ିମ୍ବାସୁର ବଧ

ପାଣ୍ଡବମାନେ ମଧୁବନରେ କିଛିଦିନ ବିଶ୍ରାମ କରି ପୁଣି ଆଗେଇ ଚାଲିଲେ । କେତେଦୂର ଯିବାପରେ ଅତି ସୁନ୍ଦର ବନଟିଏ ପଡ଼ିଲା । ଗଛଗୁଡ଼ିକ ଫଳ ଭାରରେ ନଇଁ ପଡ଼ୁଛନ୍ତି । କିନ୍ତୁ ଖାଇବାକୁ କେହି ନାହାନ୍ତି । ଅବସନ୍ତରେ ବସନ୍ତ ପବନ ବହୁଛି । ଏହା ଦେଖି ପାଣ୍ଡବମାନେ ସେଠାରେ କିଛିଦିନ ବାସ କରିବାକୁ ସ୍ଥିର କଲେ । ପାଚିଲାଫଳ ପେଟଭରି ଖାଇ ସାରିଲା ପରେ ସେମାନଙ୍କୁ ନିଦ ଘାରିଲା । ଭୀମଙ୍କୁ ଛାଡ଼ି ଆଉ ସମସ୍ତେ ଶୋଇ ପଡ଼ିଲେ ।

ଛାଇ ଲେଉଟା ବେଳ ଆସି ହେଲା, ମା' ଓ ଭାଇମାନଙ୍କ ବନବାସ ଦୁଃଖ ଦେଖି ଭୀମଙ୍କ ମନଟା ବଡ଼ ଗୋଳେଇ ହେଲା । ମା' ତାଙ୍କର ରାଜାର ଝିଅ ଆଉ ରାଜାର ରାଣୀ । ପୁଣି ଜଗତ ଜଣନ୍ତା ପାଞ୍ଚପୁଅର ମା' । ତା ଭାଗ୍ୟରେ ଥିଲା ବାଘ ଭାଲୁପୂର୍ଣ୍ଣ ବଣ ଭିତରେ ପତ୍ର ପାରି ଶୋଇବା । ଅଜାତ ଶତ୍ରୁ ଧର୍ମ ନନ୍ଦନ ଯୁଧିଷ୍ଠିର । ସ୍ୱୟଂ ନାରାୟଣ ଯାହାଙ୍କ ପଦ ବନ୍ଦନା କରନ୍ତି, ତାଙ୍କ ଭାଗ୍ୟରେ ପୁଣି ଏ ବନବାସ କଷ୍ଟ । ଧନୁଶର ଧରିଲେ ଯେଉଁ ଅର୍ଜୁନ ତ୍ରିଲୋକ ଜିଣିପାରେ ତା ଭାଗ୍ୟରେ ଏତେ କଷ୍ଟ । ଅତି ସୁକୁମାର ଭାଇ ନକୁଳ, ଦେହରେ ମାଛିଟିଏ ବସିଗଲେ ଯେ ଶରୀରେ ପଲ ଚନ୍ଦନ ଘସେ, ପଲଙ୍କ ସୁପାତିରେ ଯାହାକୁ ନିଦ

ହୁଏ ନାହିଁ, ତା ଭାଗ୍ୟରେ ଏ ପତ୍ର ଶଯ୍ୟା ! ଅତି ଆଦରର ସାନ ଭାଇ ସହଦେବ, କରକୁ ଛୁଇଁଦେଲେ ଯାହାକୁ ଚଉଦ ବ୍ରହ୍ମାଣ୍ଡ ଦଶେ ତାର ପୁଣି ଏତେ ଦୁଃଖ ! ଏକା ଦୁଷ୍ଟ ଦୁର୍ଯ୍ୟୋଧନ ଆମର ଏ ଦୁରବସ୍ଥା ପାଇଁ ଦାୟୀ । ବଡ଼ ଭାଇଙ୍କ ଆଦେଶ ଥରେ ଯଦି ମିଳିଯାନ୍ତା, ତେବେ ଏକା ଥରକେ ମୁଁ କୌରବ ଶହେ ଭାଇଙ୍କ ତଣ୍ଟି ଚିପି ଦେଇ ଆସନ୍ତି । ସେମାନେ ପୁଣି ମହା ଐଶ୍ୱର୍ଯ୍ୟରେ ଥିଲାବେଳେ ତାଙ୍କର ଚକ୍ରାନ୍ତରେ ଆମେ ଏ ବନବାସ କଷ୍ଟ ଭୋଗୁଛୁ ।

ଏହିପରି ଭାବ ଭାବ ଭୀମଙ୍କ ମନଟା ଅତି ଖରାପ ହୋଇ ଆସିଲା-ବେଳକୁ କିଏ କେଉଁଠି କହିଲାପରି ଶୁଣାଗଲା, ପୃଥିବୀରେ ଦୁଷ୍ଟ ସଂହାର କରି ଧର୍ମ ସଂସ୍ଥାପନା କାର୍ଯ୍ୟରେ ସ୍ୱୟଂ ଭଗବାନଙ୍କୁ ସାହାଯ୍ୟ କରିବାପାଇଁ ଦେବ ଅଂଶରେ ତୁମମାନଙ୍କର ଜନ୍ମ ହୋଇଛି । ଆଉ ଅଳ୍ପଦିନ ଅପେକ୍ଷା କର ।

ଏହି ସମୟରେ ଏକ ଅଦ୍ଭୁତ ଘଟଣା ଘଟିଲା । ଜଣେ ଅନିନ୍ଦ୍ୟସୁନ୍ଦରୀ ନାରୀ କେଉଁଆଡ଼ୁ ଆସି ଭୀମଙ୍କ ପଦତଳେ ପ୍ରଣାମ କରି ତାଙ୍କୁ ସ୍ୱାମୀରୂପେ ପାଇବାକୁ ପ୍ରାର୍ଥନା କଲା । ଭୀମ ଆଶ୍ଚର୍ଯ୍ୟ ହୋଇ କହିଲେ "ହେ ସୁନ୍ଦରୀ, ତୁମେତ ସ୍ୱର୍ଗର ଦେବୀପରି ଦେଖାଯାଉଛ । ମୁଁ ଜଣେ ମନୁଷ୍ୟ, ପୁଣି ମହା ଦୁଃଖୀ । ମା' ଓ ଭାଇମାନଙ୍କ ସହିତ ବନବାସ କରୁଛି । ମୋ ହାତ ଧରି ତୁମେ କେବଳ ଦୁଃଖ ପାଇବ ସିନା । ତୁମର ଭଲପାଇଁ କହୁଛି, ମୋ ଆଶା ଛାଡ଼ି ତୁମେ ଚାଲିଯାଅ ।"

"ହେ ବୀର, ମୋର ଅନ୍ୟତ୍ର ଯିବାର ଆଉ ଉପାୟ ନାହିଁ, ପ୍ରଥମ ଦର୍ଶନରେ ମୁଁ ଆପଣଙ୍କୁ ପତି ରୂପେ ବରଣ କରି ସାରିଛି" । ପତିଙ୍କ ଚରଣ ବିନା ମୋର ଅନ୍ୟ ଗତି ନାହିଁ । ଆପଣ ମୋତେ ବିଶ୍ୱାସ କରନ୍ତୁ । ଆପଣମାନଙ୍କ ଉପରକୁ ଏକ ମହା ବିପଦ ଘନେଇ ଆସୁଛି । ମୁଁ ଆପଣଙ୍କୁ ମୋର ପ୍ରାଣଦେଇ ସାହାଯ୍ୟ କରିବି ।"

ଭୀମ ପ୍ରଥମେ ଟିକିଏ ଆଶ୍ଚର୍ଯ୍ୟହୋଇ ଭାବିଲେ ଏହା ହୁଏତ ଏ ନାରୀର ଛଳନା ହୋଇ ପାରେ । ପ୍ରକାଶ୍ୟରେ କହିଲେ, "ବିପଦ ସହିତ ମୁକାବିଲା କରିବାରେ ମୁଁ ଚିରକାଳ ଅଭ୍ୟସ୍ତ ।" କହି ତେବେ, ସେ

ବିପଦ କଅଣ ? ତାହା କେଉଁଠାରୁ ଆସୁଛି ?" "ମୋର ପ୍ରକୃତ ପରିଚୟ ପାଇଲେ ମୋତେ ଘୃଣା କରିବ ନାହିଁ, ଏତିକି ମୋର ନିବେଦନ । ମହା ବଳଶାଳୀ ହିଡ଼ିମ୍ବାସୁର ଏ ବନରେ ବାସ କରେ । ମୁଁ ତାହାର ଭଉଣୀ ହିଡ଼ିମ୍ବୀ । ମନୁଷ୍ୟର ଗନ୍ଧପାଇ ସେ ମୋତେ ପଠାଇ ଥିଲା, ମନୁଷ୍ୟଙ୍କୁ ଧରି ନେବାପାଇଁ ମୁଁ ଆସି ପ୍ରଥମ ଦର୍ଶନରେ ଅନୁଭବ କଲି, ସତେ ଯେପରି ଆପଣ ମୋର ଜନ୍ମଜନ୍ମାନ୍ତରର ସ୍ୱାମୀ । ଆପଣଙ୍କ ପାଦତଳେ ମୁଁ ମୋର ପ୍ରାଣ ବିକିଦେଇଛି । ଆଉ ସାମାନ୍ୟ ବିଳମ୍ବ ହେଲେ ଭାଇ ହୁଏତ ନିଜେ ଆସି ପହଞ୍ଚିଯିବେ । ଶିବଙ୍କ ବରରେ ସେ ମହା ଶକ୍ତିଶାଳୀ । ପୁଣି ଅତି ନିଷ୍ଠୁର । ତାଙ୍କ ହାତରୁ କାହାର ନିସ୍ତାର ନାହିଁ । ମୋ ବିଶ୍ବରରେ ଆପଣ ମା' ଓ ଭାଇଙ୍କୁ ଏଠାରୁ ନେଇ ସଙ୍ଗେ ସଙ୍ଗେ ଚାଲିଯାନ୍ତୁ । ଭାଗ୍ୟରେ ଥିଲେ କେବେ ପୁଣି ଦେଖାହେବ ।

ଏହା ଶୁଣି ଭୀମଙ୍କ ମନରେ ହିଡ଼ିମ୍ବୀ ପ୍ରତି କିଛି ଶ୍ରଦ୍ଧା ଓ ବିଶ୍ୱାସ ଜାତ ହେଲା । ସେ ତାଙ୍କୁ ପୁଣି ପରୀକ୍ଷା କରିବାକୁ କହିଲେ, "ତୁମ ଭାଇତ ଶିବଙ୍କ ବରରେ ଅତି ବଳୀୟାନ୍ । ତାଙ୍କ ମୃତ୍ୟୁଭେଦ ତ ତୁମକୁ ଅବଶ୍ୟ ଜଣାଥିବ ?" "ହଁ, ଜଣାଅଛି ; ଶିବ ମୋ ଭାଇଙ୍କ ଉପରେ ମନ୍ତ୍ରଜଳ ଢାଳିବାରୁ ତାଙ୍କ ସମସ୍ତ ଶରୀର ଅକ୍ଷୟ ଓ ବଜ୍ରପରି କଠିନ ହୋଇ-ଯାଇଛି । କେବଳ ତାଙ୍କ ଗଳାର ନାଭିରେ ଜଳ ପଡ଼ିନଥିବାରୁ ସେହି ସ୍ଥାନକୁ ଶୂଳଦ୍ୱାରା ପ୍ରଚଣ୍ଡ ଆଘାତ କଲେ ସେ ପ୍ରାଣ ଛାଡ଼ିପାରନ୍ତି ।" ଏହି ବନ ଭିତରେ ଶୂଳ କେଉଁଠୁ ପାଇବି ବୋଲି ଭୀମ କହିବାରୁ ହିଡ଼ିମ୍ବୀ ଅସୁରୀ ମାୟା ବଳରେ ସଙ୍ଗେ ସଙ୍ଗେ ଶୂନ୍ୟକୁ ହାତ ବଢ଼ାଇ ଏକ ଶୂଳ ଧରିଲା ।

ଠିକ୍ ଏହି ସମୟରେ ଗଛ ବାଉ ହିଡ଼ିମ୍ବୀ ଜାଣିଲା ଯେ ତାର ଫେରିବା ଡେରି ହେବାରୁ ହିଡ଼ିମ୍ବ ନିଜେ ଝପଟି ଆସୁଛି । ସେ ସଙ୍ଗେ ସଙ୍ଗେ ଭୀମକୁ କହିଲା, "ଆଉ ରକ୍ଷା ନାହିଁ । ଆପଣମାନେ ସମସ୍ତେ ମୋ କାନ୍ଧରେ ବସନ୍ତୁ । ମୁଁ ଆପଣମାନଙ୍କୁ ନେଇ ଆକାଶରେ ଉଡ଼ିଯିବି ।" ଏହା କହି ବିଶାଳ ରୂପ ଧରିଲା । ଭୀମ ବ୍ୟଙ୍ଗ କରି କହିଲେ, "ଆମକୁ ଧରିନେଇ ବାଟରେ ବେକ ମୋଡ଼ି ଗୋଟି ଗୋଟି କରି ଯଦି ଖାଇବୁ

ତେବେ ଆମ୍ଭେ କଣ କରିବୁ ? ବରଂ ଏଠାରେ ମୃତ୍ୟୁ ବରଣ ନ କରିବୁ କାହିଁକି ?” ହିଡ଼ିମ୍ବୀ ଭୀମଙ୍କର ବ୍ୟଙ୍ଗକୁ ବୁଝିନପାରି ବଡ଼ ଦୁଃଖକରି କହିଲା, “ସ୍ୱାମୀ, ଆପଣ ମତେ ଅବିଶ୍ୱାସ କରୁଛନ୍ତି । ହେଉ, ଯଦି ଆପଣଙ୍କର ଶକ୍ତି ଅଛି ତେବେ ଆତ୍ମରକ୍ଷା କରନ୍ତୁ । ମୁଁ ଆପଣଙ୍କ ଲାଗି ଭାଇ ହାତରେ ମୋ ଜୀବନ ଦେଇଦେବି ।”

ହିଡ଼ିମ୍ବ ଏଥି ମଧ୍ୟରେ ସେଠାରେ ପହଞ୍ଚି ଦୂରରୁ ଲକ୍ଷ୍ୟକଲା ଯେ ବିରାଟ ଶରୀରଧାରୀ ଏକ ସୁନ୍ଦର ମଣିଷ ପାଖରେ ବସି ହିଡ଼ିମ୍ବୀ କଥା ହେଉଛି । ଏହା ଦେଖି ସେ ଭୀଷଣ ରାଗି ଗଲା । ହଠାତ୍ ବାହାରିପଡ଼ି ହିଡ଼ିମ୍ବୀକୁ ଗାଳିଦେଇ କହିଲା, “ତତେ ମୁଁ ମଣିଷକୁ ଧରି ଆଣିବାକୁ ପଠାଇଲି । ତୁ ବଦମାସ୍ ତା ପ୍ରେମରେ ପଡ଼ିଲୁଣି । ରହ, ତାକୁ ମାରି ପଛରେ ତୋତେ ବଣାବଣି ଦେଉଛି ।” ଏହା କହି ଭୀମ ଆଡ଼କୁ ଝପଟି ଗଲା । ଭୀମ ବଡ଼ ଭାଇଙ୍କ ମୁଣ୍ଡକୁ ନିଜ କୋଳରୁ ଆସ୍ତେ ଖସାଇ ଦେଇ ଅସୁର ଉପରକୁ ଝାମ୍ପି ପଡିଲେ । ଦୁହିଙ୍କର ଘୋରଯୁଦ୍ଧ ଲାଗିଗଲା । ଅନେକ ସମୟ ଯୁଦ୍ଧ କରି ବହୁତ ମଡ଼ାମଡ଼ି ଗଡ଼ାଗଡ଼ି ହୋଇ ମଧ୍ୟ କେହି କାହାକୁ ହଟାଇ ପାରିଲେ ନାହିଁ । ଉଭୟେ ହାଲିଆ ହୋଇ ଅନୁଭବ କଲେଣି ଯେ ଶତ୍ରୁ ମହା ବଳୀୟାର । ଅସୁର ଭାବୁଛି, ମନୁଷ୍ୟମାନେ ମୋର ଖାଦ୍ୟ । ଏପରି ଗୋଟିଏ ଅଦ୍ଭୁତ ମଣିଷ କାହୁଁ ଆଇଲା ? ଭୀମ ଭାବୁଛନ୍ତି କେତେ ଅସୁର ମୁଁ ମାରିଛି । ଅଥଚ ଏହା ଦେହରେ ଯେତେ ଗଛ ପଥର ପିଟିଲେ ଗୁଣ୍ଡା ହୋଇଯାଉଛି । ମାଡ଼ ବସି ତଣ୍ଟିକୁ ଚିପିଲେ ହାତକୁ ଲାଗୁଛି, ଯେତେ ଯେପରି ମୁଣ୍ଡା ଲୁହା । ହିଡ଼ିମ୍ବୀର କଥା ତେବେ ସବୁ ସତ । ସେ ହତାଶ ହୋଇ ଘୂରିଆଡ଼କୁ ଗ୍ରହିଁଲା ବେଳକୁ ହିଡ଼ିମ୍ବୀ ଶୂଳଧରି ତାଙ୍କ ପାଖକୁ ଧାଇଁଗଲା । ହିଡ଼ିମ୍ବ ତାକୁ ଦେଖି ଡାକିଲା, “ଆ, ଆ, ମୋ ସୁନା ଭଉଣୀଟା । ଶୂଳ ମୋ ହାତକୁ ବଢ଼ାଇ ଦେଲୁ । ଏ ମଣିଷକୁ ଖତମ କରି ଦିଏଁ ।” ମାତ୍ର ହିଡ଼ିମ୍ବୀ ଭୀମଙ୍କ ହାତକୁ ଶୂଳ ବଢ଼ାଇଦେଲା । ଭୀମ କାଳ ବିଳମ୍ବ ନକରି ନିଜର ସମସ୍ତ ଶକ୍ତି ପ୍ରୟୋଗ କରି ଶୂଳକୁ ଅସୁର ନାଭି ଭିତରକୁ ଭୁଷି ଦେଲେ । ଶୂଳ ଫୁଟିଯାଇ ଅସୁରର ପିଠିପଟେ ବାହାରିଲା । ଗୋଟାଏ ଭୟଙ୍କର ରଡ଼ିକରି ଅସୁର ତଳେ ପଡ଼ି ମରିଗଲା ।

ଦେବତାମାନେ ଭୀମଙ୍କ ଉପରେ ପୁଷ୍ପବୃଷ୍ଟି କଲେ । ଭୀମ ଆନନ୍ଦରେ ହିଡ଼ମ୍ବୀକୁ ଆଲିଙ୍ଗନ କଲେ । ହିଡ଼ମ୍ବୀ ଭୀମଙ୍କର ପଦସ୍ପର୍ଶକରି ଅଳ୍ପ ଦୂରରେ ଠିଆହେଲା । ଏତେ କାଣ୍ଡ ହୋଇଗଲା, ଅଥଚ ମା ଓ ଭାଇମାନଙ୍କର ନିଦ ଭାଙ୍ଗି ନାହିଁ ଦେଖି କ୍ଳାନ୍ତ ଦୂର କରିବାକୁ ଭୀମ ଟିକିଏ ବସିପଡ଼ିଲେ । ହିଡ଼ମ୍ବୀ ଗୋଟିଏ ପତ୍ର ବିଞ୍ଚଣାଧରି ତାଙ୍କୁ ଅତି ଆଦରରେ ବିଞ୍ଚିବାକୁ ଲାଗିଲା ।

ମା ଓ ଭାଇମାନେ ନିଦରୁ ଉଠିବାରୁ ଭୀମ ସମସ୍ତ ଘଟଣା ବର୍ଣ୍ଣନା କଲେ । ଭୀମଙ୍କ ସହିତ ହିଡ଼ମ୍ବୀର ବିବାହ ପାଇଁ କୁନ୍ତୀ ଓ ଯୁଧିଷ୍ଠିର ଆନନ୍ଦରେ ଅନୁମତି ଦେଲେ । ସମସ୍ତେ ସେଠାରେ କିଛିକାଳ ଶାନ୍ତିରେ କଟାଇଲେ । ହିଡ଼ମ୍ବୀର ଘଟୋତ୍କଚ ନାମକ ଏକ ମହା ବଳବାନ୍ ପୁଅ ଜନ୍ମ ହେଲା । ଯଥା ସମୟରେ ସାକ୍ଷାତ ହେବ ବୋଲି କହି ହିଡ଼ମ୍ବୀଠାରୁ ବିଦାୟ ନେଇ କୁନ୍ତୀ ଓ ପାଣ୍ଡବମାନେ ସେ ସ୍ଥାନ ଛାଡ଼ିଲେ ।

—*—





ମ
ହା
ଭା
ର
ତ

ସାରଳା

୯ମ ଅଧ୍ୟାୟ

## ଦ୍ରୁପଦଙ୍କ ବରଲାଭ

ଦ୍ରୁପଦ, ଦ୍ରୋଣଙ୍କଠାରୁ ଅପମାନ ପାଇ ତାର ପ୍ରତିଶୋଧ ନେବାକୁ ବଣରେ ଘୋର ତପସ୍ୟା କରି ଶିବଙ୍କୁ ସନ୍ତୁଷ୍ଟ କଲେ । ଶିବ ତାଙ୍କୁ ନିଜର ସମସ୍ତ ଅସ୍ତ୍ରଶସ୍ତ୍ର ପ୍ରଦାନ କରିସାରି କହିଲେ ଯେ ସ୍ୱର୍ଗ ନିବାରଣ ପାଇଁ ପୃଥିବୀରେ ଅର୍ଜୁନର ଜନ୍ମ । ତେଣୁ ତାଙ୍କୁ କେହି ପରାସ୍ତ କରି-ପାରିବେ ନାହିଁ । ଦ୍ରୁପଦ ଯଜ୍ଞ କଲେ ତହିଁରୁ ଏକ କନ୍ୟା ସମ୍ଭବିବ । ତାଙ୍କୁ ଅର୍ଜୁନ ସହିତ ବିବାହ ଦେଇ ଜାମାତା ରୂପେ ବରଣ କରିବେ । ଦୁଇଟି ପୁତ୍ର ମଧ୍ୟ ଜାତ ହେବେ । ଜଣେ ଦ୍ରୋଣଙ୍କୁ ବଧ କରି ପିତୃ ଅପମାନର ପ୍ରତିଶୋଧ ନେବ । ଆଉ ଜଣେ ଭୀଷ୍ମଙ୍କ ମରଣର କାରଣ ହେବ ।

ମହାଦେବଙ୍କ ବର ଲାଭକରି ଦ୍ରୁପଦ ମହା ବଳବାନ୍ ହୋଇଗଲେ । ସେ ବହୁତ ରାଜ୍ୟ ଜୟକରି ବିପୁଳ ଧନରତ୍ନ ସଂଗ୍ରହ କଲେ ଏବଂ ଯଥା ସମୟରେ ବ୍ୟାସଦେବଙ୍କୁ ଡକାଇ ଯଜ୍ଞ କଲେ । ତାଙ୍କର ଯାଜ୍ଞସେନୀ ବା ଦ୍ରୌପଦୀ ନାମରେ ଏକ କନ୍ୟାରତ୍ନ ଜାତହେଲା । ଶିଖଣ୍ଡୀ ଓ ଧୃଷ୍ଟଦ୍ୟୁମ୍ନ ନାମକ ଦୁଇଟି ପୁତ୍ର ମଧ୍ୟ ଜାତ ହେଲେ ।

ଶିଖଣ୍ଡୀ ବିବାହ

ଋଷିଙ୍କୁ ବିବାହ କରି ନପାରି ଯେଉଁ ଅମ୍ବା କନ୍ୟା ଋଷିଙ୍କ ମୃତ୍ୟୁକାମନା କରି ଗଙ୍ଗାରେ ଝାସ ଦେଇଥିଲି, ସେହି କନ୍ୟା ଶିଖଣ୍ଡୀ ରୂପେ ଜନ୍ମ ହୋଇଥିଲି । ଜନ୍ମରୁ ସେ ନପୁଂସକ । ଅର୍ଥାତ୍ ତା'ର ଶରୀରରେ ପୁରୁଷ କିମ୍ବା ସ୍ତ୍ରୀର କୌଣସି ଚିହ୍ନ ନଥିଲା । ଶିଖଣ୍ଡୀର ଜନ୍ମବେଳେ ଦ୍ରୁପଦ ରାଗିକରି ତାକୁ ମାରି ଦେବାକୁ ବସିଥିଲେ । ମାତ୍ର ବ୍ୟାସଦେବ ତାଙ୍କୁ ବୁଝାଇ କହିଥିଲେ ଯେ ଏ ପୁତ୍ର ଦ୍ୱାରା ଏକ ମହତ କାର୍ଯ୍ୟ ସାଧିତ ହେବ । ସେହିଦିନଠାରୁ ଦ୍ରୁପଦ ଶିଖଣ୍ଡୀକୁ ଅତି ସ୍ନେହରେ ଲାଳନ ପାଳନ କରୁଥାନ୍ତି ।

ଶିଖଣ୍ଡୀ ନପୁଂସକ ହେଲେ ମଧ୍ୟ ଦେଖିବାକୁ ଅତ୍ୟନ୍ତ ସୁନ୍ଦର ଓ ମହାବୀର । ଥରେ ସେ ବଣରେ ପଶି ଶିକାର କରୁଥିଲେ । ଜନ୍ତୁ ପଛରେ ଗୋଡ଼ାଇ ଯାଇ ଉତ୍କଳ ଦେଶରେ ପହଞ୍ଚିଲେ । ଉତ୍କଳ ଦେଶର ରାଜା ତାଙ୍କର ପରିଚୟ ପାଇ ଅତ୍ୟନ୍ତ ଆନନ୍ଦରେ ସହିତ ନିଜର କନ୍ୟା ମଧୁମତୀକୁ ତାଙ୍କ ସହିତ ବିବାହ କରିଦେଲେ । ବିବାହ ପରେ ବହୁତ ଯାନ ଯୌତୁକ ଦେଇ ବିରାଟ ପଟୁଆରରେ ଝିଅ ଜ୍ୱାଇଁଙ୍କୁ ବିଦାୟ କଲେ ।

ଜଗତି ଉପରେ ଥାଇ ଦ୍ରୁପଦ ଏହା ଦେଖି ପ୍ରଥମେ ବଡ଼ ଆନନ୍ଦ ହେଲେ । ମାତ୍ର ପରେ ଶିଖଣ୍ଡୀ ନପୁଂସକ ବୋଲି ମନେ ପଡ଼ିଯିବାରୁ "ହେ ଦୈବ, ହେ ଦୈବ" ବୋଲି କହି ମୁଣ୍ଡରେ ହାତ ଦେଲେ । ମନେ ମନେ ଭାବିଲେ, ବିଭାବେଦୀ ଉପରେ ଲୁଗା ପାଲଟିଲା ବେଳେ ଶିଖଣ୍ଡୀର ନପୁଂସକ ଲକ୍ଷଣ କିପରି କାହାର ନଜରରେ ପଡ଼ିଲାନାହିଁ ? ଏବେ ତ ଆଉ କିଛି ଉପାୟ ନାହିଁ । ଯାହା ଭାଗ୍ୟରେ ଥିବ । ଏହିପରି ମନରେ ଚିନ୍ତାକରି ସମସ୍ତ ବିଧିବିଧାନରେ ପୁଅ ବୋହୂଙ୍କୁ ବନ୍ଦାପନା କରି ଉଆସକୁ ନେଲେ ।

ତିନିବର୍ଷ ପରେ ମଧୁମତୀ ରଜୋବତୀ ହେଲେ । ସପ୍ତମ ଦିନରେ ଶୁଦ୍ଧ ସ୍ନାନ କରି ମଧୁଶଯ୍ୟା ରାତିରେ ସ୍ୱାମୀଙ୍କ ସଙ୍ଗେ ଏକ ପଲଙ୍କରେ ପହୁଡ଼ିଲେ । ମାତ୍ର ଶିଖଣ୍ଡୀର ତ ପୁରୁଷ ଅଙ୍ଗ ନାହିଁ । ସ୍ୱାମୀ-ସ୍ତ୍ରୀ ସମ୍ଭୋଗ ବା ହେବ କିପରି ? ଯାହାହେଉ ମଧୁମତୀ ତ ବାଳୁତ କୁମାରୀ ଥିଲା ।

ସ୍ତ୍ରୀ, ପୁରୁଷ ସମ୍ଭୋଗ ବିଷୟ ତାଙ୍କୁ ବିଲ୍‌କୁଲ୍ ଜଣାନାହିଁ । ତେଣୁ ଖାଲି ହସ ଖୁସିରେ ଦୁଇବର୍ଷ କଟିଗଲା । ମାତ୍ର ଏପରି ପରିସ୍ଥିତି ସବୁଦିନେ ବା କିପରି ରହିବ ? ନବ ଯୌବନା ବିବାହିତା ସ୍ତ୍ରୀ ପକ୍ଷରେ ନାରୀପୁରୁଷ ସମ୍ପର୍କ କଥା ଜାଣିବାକୁ ଡେରି ହେଲାନାହିଁ । କ୍ରମେ ମଧୁମତୀ ନିଜର ସଖୀମାନଙ୍କଠାରୁ ସବୁକଥା ଜାଣିଲେ । ଦିନେ ସ୍ୱାମୀଙ୍କୁ ଆଲିଙ୍ଗନ କରି ପଚାରିଲେ, "ତୁମେ ମତେ ଦୁଇବର୍ଷହେଲା ତୁମର ଶୃଙ୍ଗାରରୁ ବଞ୍ଚିତ କରିଛ କାହିଁକି, କହ । ନଚେତ୍ ମୁଁ ବିଷଖାଇ ମରିବି ।" ଶିଖଣ୍ଡୀ, ତାଙ୍କୁ ନାନାପ୍ରକାରେ ବୁଝାଇବାକୁ ଚେଷ୍ଟା କରୁ କରୁ ନିଦରେ ଶୋଇ-ପଡିଲେ । ମାତ୍ର ମଧୁମତୀ ଆଖିକୁ ନିଦ ନାହିଁ । ସ୍ୱାମୀ ଶୋଇପଡ଼ିବାରୁ ସେ ତାଙ୍କର ମର୍ମସ୍ଥାନ ଅଣ୍ଡାଳି ଦେଖିଲା ବେଳକୁ ପୁରୁଷର ଲକ୍ଷଣ କିଛି ହେଲେ ନାହିଁ । ଏହା ଦେଖି ସେ ଅତି ଦୁଃଖରେ ସଜ୍ଞାହୀନ ହୋଇ-ଗଲେ । ପରେ ଚେତା ପାଇ ଅତି ବିକଳ ହୋଇ କାନ୍ଦିଲେ ।

ବିବାହବେଳେ ପିତାଘରର ଯେଉଁ ମୃଦୁସୁଲା ସଙ୍ଗରେ ଆସିଥିଲା ମଧୁମତୀ ତାଙ୍କୁ ନିଜର ପିତା ଘରକୁ ସମ୍ବାଦ ଦେଇ ପଠାଇଲେ । ମଧୁକେଶର ରାଜା ଏହା ଶୁଣି ମହା କ୍ରୋଧରେ ଶିଖଣ୍ଡୀଙ୍କୁ ଧରିଆଣି ମାରି-ଦେବା ପାଇଁ ପାଞ୍ଚାଳ ଦେଶକୁ ଆକ୍ରମଣ କଲେ । ସେ କହିଲେ ଯେ ତାଙ୍କର ନିରୀହ, ନିରପରାଧ ଝିଅଟି ଯଦି ବିଷଖାଇ ମରିବ ବା ନିଆଁରେ ପଶିବ ତେବେ ସେ ନପୁଂସକଟା ବଞ୍ଚିଥିବ କାହିଁକି ? ପୁଣି ଆଉ କେତେ ବେଳେ କେଉଁ ଝିଅକୁ ଧୋକା ଦେବ । ତେଣୁ ତାଙ୍କୁ ଆଗ ମାରିସାରିଲେ ତାପରେ ଯେଉଁ କଥା ।

ଦ୍ରୁପଦଙ୍କ ରାଣୀ ପଦ୍ମାବତୀ ଚର ମୁଖରୁ ମଧୁକେଶର ରାଜାର ଏ ପ୍ରତିଜ୍ଞା ଶୁଣି ଭୟରେ ନିଜପୁତ୍ର ଶିଖଣ୍ଡୀଙ୍କୁ ସଙ୍ଗରେ ନେଇ ରାତାରାତି ରାଜନଅର ଛାଡ଼ି ଜଙ୍ଗଲକୁ ପଳାଇଲେ । ଜଙ୍ଗଲ ଭିତରେ ଚାଲି ଚାଲି ଗନ୍ଧମାର୍ଦନ ପର୍ବତରେ ପହଞ୍ଚିଲେ । ସେଠାରେ କରିବେ ବା କଅଣ ? କେବଳ ପୁଅର ମୁଖକୁ ଚାହିଁ ଅତି ବିକଳ ସ୍ୱରରେ କାନ୍ଦିବାକୁ ଲାଗିଲେ । ସତୀ, ସାଧ୍ୱୀ ନାରୀର ଆକୁଳ କ୍ରନ୍ଦନ ଫଳରେ ହୁଏତ ଭଗବାନଙ୍କର ଆସନ ଟଳିଲା ।

ଦୈବ ଯୋଗକୁ ସେହି ପର୍ବତରେ ଭୂଳାକର୍ଣ୍ଣ ନାମକ ଏକ ଗନ୍ଧର୍ବ ଘୋର ମନୋଦୁଃଖରେ ବାତୁଳ ପ୍ରାୟ ହୋଇ ଏଣେ ତେଣେ ବୁଲୁଥିଲା । ରାଣୀଙ୍କର କାନ୍ଦଣା ଶୁଣି ତାଙ୍କ ପାଖକୁ ଆସି ତାଙ୍କ ଦୁଃଖର କାରଣ ପଚାରିଲା । ରାଣୀ ନିଜର ପରିଚୟ ଦେଇ ସବୁ ଘଟଣା କହିଗଲେ । ଗନ୍ଧର୍ବ କହିଲା, "ମୋର ମା'ଙ୍କର ନାମ ପଦ୍ମାବତୀ । ଆପଣଙ୍କ ନାମ ଚନ୍ଦ୍ରାବତୀ । ତେଣୁ ଆପଣ ମୋର ମାଉସୀ ହେଲେ । ଶିଖଣ୍ଡୀ ମୋର ସାନ ଭାଇ ହେଲା । ମୁଁ ମୋର ମା'ଙ୍କ ପ୍ରତି ଅଜାଣତରେ ଘୋର ଅନ୍ୟାୟ କରିଛି । ସେହି କାରଣରୁ ଅନୁତାପାନଳରେ ମୋର ଜୀବନ ଜଳି ପୋଡି ମରୁଛି । ମୋର ଏ ଭାଇ ପ୍ରତି କିଛି ଉପକାର କରିପାରିଲେ କେଜାଣି ଅବା ମୋର ମହା ପାତକର କିଛି ହେଲେ ପ୍ରାୟଶ୍ଚିତ୍ତ ହେବ ।" ଏହା କହି ଶିଖଣ୍ଡୀକୁ ସାଙ୍ଗରେ ଡାକି ନେଇଗଲା । ଏକ ନିର୍ଜନ ସ୍ଥାନରେ ନିଜର ପୁରୁଷ ଅଙ୍ଗକୁ କାଟି ଶିଖଣ୍ଡୀ ଦେହରେ ଯଥାସ୍ଥାନରେ ଲଗାଇଦେଲା ଏବଂ ପାଖରେ ରଖିଥିବା ସଞ୍ଜୀବନୀ ମହୌଷଧକୁ ନିଜ କ୍ଷତ ସ୍ଥାନରେ ଓ ଶିଖଣ୍ଡୀର ଯୋଡାସ୍ଥାନରେ ଲଗାଇଦେଲା । ଏହିପରି ଶିଖଣ୍ଡୀ ଜୀବନର ଏକ ବିରାଟ ଅଭାବ ପୂର୍ଣ୍ଣ ହୋଇଗଲା । ମାତ୍ର ବିଚାରା ଭୂଳାକର୍ଣ୍ଣ ସବୁଦିନ ପାଇଁ ନପୁଂସକ ହୋଇଗଲା ।

ତାପରେ ଉଭୟେ ରାଣୀଙ୍କ ପାଖକୁ ଫେରି ଆସିଲେ । ରାଣୀ ଏ ଚମତ୍କାର ସମ୍ବାଦ ଶୁଣି ପ୍ରଥମେ ନିଜ କାନକୁ ବିଶ୍ୱାସ କରିପାରିଲେ ନାହିଁ । ଭୂଳାକର୍ଣ୍ଣକୁ ସମ୍ବୋଧନ କରି କହିଲେ, "ବାପ, ତୁମେ ଆମ ପାଇଁ ଏତେ ବଡ଼ ସ୍ୱାର୍ଥତ୍ୟାଗ କଲ କାହିଁକି ? ଆମେ କଅଣ ଦେଇ ତୁମର ଏ ଋଣ ପରିଶୋଧ କରିବୁ ?" ଭୂଳାକର୍ଣ୍ଣ କହିଲା, "ମା, ମୁଁ ମୋର ପୂର୍ବ ଦୁଷ୍କୃତର ପ୍ରାୟଶ୍ଚିତ୍ତ କରିବାକୁ ନିଜେ ଏହି ଦଣ୍ଡ ବରଣ କରିଛି । ମୁଁ ମହା ପାତକୀ, ଅତି ଦୁଃଖୀ । ମୋର ଦୁଃଖର କଥା କହୁଛି ଶୁଣନ୍ତୁ । ବିଦ୍ୟାଧରମାନଙ୍କ ମଧ୍ୟରେ ମୁଁ ସବୁଠାରୁ ସୁନ୍ଦର । ମୋ ରୂପରେ ମୁଗ୍ଧ-ହୋଇ ବିଦ୍ୟାଧରୀମାନେ ମତେ ଛାଡ଼ି ଇନ୍ଦ୍ରଙ୍କ ନିକଟକୁ ଆଉ ଗଲେନାହିଁ । ଫଳରେ ଇନ୍ଦ୍ର ମୋ ପ୍ରତି ବଡ଼ ଈର୍ଷାପରାୟଣ ହେଲେ । ମୋର ମଧ୍ୟ ମନରେ କିଛି ଗର୍ବ ହେଲା । ମୋର ମା' ପଦ୍ମାବତୀ ମଧ୍ୟ ଅତ୍ୟନ୍ତ ସୁନ୍ଦରୀ । ଦୈବକୃତ ଫଳରେ ମୁଁ ଦିନେ ଅଜାଣତରେ ମୋର ମା'ଙ୍କୁ ଅନ୍ୟନାରୀ

ଭାବ ତାଙ୍କ ସହିତ ବଳାତ୍କାରରେ ରମଣ କଲି । ପରେ ଯେତେବେଳେ ମୋର ଭୁଲ ଜାଣିପାରିଲି, ମୋର ଆଉ ବଞ୍ଚିରହିବାକୁ ଇଚ୍ଛା ହେଲାନାହିଁ । ସେହି ଅପରାଧରେ ମୋତେ ସ୍ୱର୍ଗପୁରରୁ ବିତାଡ଼ିତ କରି ଦିଆଗଲା । ସେହି ଦିନରୁ ଏଠାରେ ଏମିତି ବୁଲୁଛି । ଆତ୍ମହତ୍ୟାପରି ପୁଣି ଏକ ମହାପାପ କରିବାକୁ ଇଚ୍ଛା ହେଉନାହିଁ । ଅନୁତାପରେ ଘାରିହୋଇ ବଞ୍ଚିରହିବା ମଧ୍ୟ କଷ୍ଟବୋଧ ହେଉଛି । ଯାହାହେଉ ଆଜ ନିଜ ହାତରେ ନିଜର ପୁରୁଷତ୍ୱକୁ ଲୋପକରି କିଛି ପ୍ରାୟଶ୍ଚିତ କଲିବୋଲି ଭାବି ମନରେ କିଛି ପରିମାଣରେ ଶାନ୍ତି ଆସୁଛି । ଭୂଳାକର୍ଣ୍ଣ ଏହା କହୁ କହୁ ସ୍ୱର୍ଗରୁ ବିମାନ ଆସି ପହଞ୍ଚିଲା । ଦେବଦୂତମାନେ ଅତି ଆଦରରେ ଭୂଳାକର୍ଣ୍ଣଙ୍କୁ ରଥରେ ବସାଇ ସ୍ୱର୍ଗକୁ ନେଇଗଲେ ।

ପଦ୍ମାବତୀ ଶିଖଣ୍ଡୀକୁ ସଙ୍ଗରେ ଧରି ଗୋପନରେ ପୁଣି ନଅରକୁ ଫେରିଆସିଲେ ଏବଂ ସଙ୍ଗେ ସଙ୍ଗେ ରଥରେ ଚଢ଼ି ମଧୁକେଶର ରାଜାଙ୍କ ନିକଟରେ ପହଞ୍ଚିଲେ । ଶିଖଣ୍ଡୀ କିଛି ନଜାଣିଲା ପରି ଶ୍ୱଶୁରଙ୍କୁ ଓଳଗି ହୋଇ କହିଲେ, "ଆଜ୍ଞା, ଆପଣଙ୍କର କନ୍ୟା ଅତି ଅଭାଗୀ । ମୁଁ ପରମ-ଯୋଗୀ, ସାଧକ-ପୁରୁଷ । ମୋର ଇଚ୍ଛାରେ ରତି, ଇଚ୍ଛାରେ ବିଭୂତି । ସେ ମୋତେ ଆଦୌ ବୁଝି ସମଝି ପାରିଲା ନାହିଁ । ଯାହାହେଉ, ଅନେଣ ଆଉ ଅଯଥା ଗହଳ ନକରି ସ୍ୱଦେଶ ଫେରିଯାନ୍ତୁ । ମୋ ର ମଧ୍ୟ ସାଧନା-କାଳ ଶେଷ ହୋଇ ଯାଇଛି ।

ମଧୁକେଶର ରାଜା ଏହା ଶୁଣି ଯେତିକି ଆଶ୍ଚର୍ଯ୍ୟ ହେଲେ, ସେତିକି ଆନନ୍ଦ ମଧ୍ୟ ହେଲେ । ତାପରେ ଝିଅ ଜ୍ୱାଇଁ ଅତି ଆନନ୍ଦରେ ରହିଲେ ଦେଖି, ଝିଅଠାରୁ ସବୁ ଭଲ ବୋଲି ନିଜେ ଶୁଣି ଖୁସି ମନରେ ସ୍ୱଦେଶକୁ ଫେରିଗଲେ ।

—*—



# ମହାଭାରତ

ସାରଳା

୧୦ମ ଅଧ୍ୟାୟ

## ଭୀମ-ରାଗ

ପାଣ୍ଡବମାନେ ଋଷ୍ୟମୂକ ବନ ଛାଡ଼ି ଆସି ଗୋଟିଏ ଗାଁରେ ପହଞ୍ଚିଲେ । ବଣରେ ସବୁବେଳେ ଫଳ ମୂଳ ଖାଇ ବଞ୍ଚିରହିବା କଷ୍ଟକର ବୋଧହେଲା । ଯୁଧିଷ୍ଠିରଙ୍କ ଆଦେଶରେ ସମସ୍ତେ ବ୍ରାହ୍ମଣ ବେଶ ଧରିଲେ । ଭିକ୍ଷାବୃତ୍ତି ଯଦିଓ ହୀନବୃତ୍ତି ତଥାପି ନିଜର ଅସଲ ପରିଚୟ ଗୋପନ କରି ଚଳିବାକୁ ତାହାହିଁ ଶ୍ରେୟସ୍କର ମନେ ହେଲା । ଯୁଧିଷ୍ଠିର ଭୀମଙ୍କୁ ବୁଝାଇ କହିଲେ, "ବାବୁ, ତୁ ତ କ୍ଷଣକୋପୀ । ଯେ ଭିକ୍ଷା ନ ଦେଲା, ବା ଅଳ୍ପ ଦେଲା, ତା ଉପରେ କଦାପି ରାଗିବୁ ନାହିଁ ।" ଭୀମ ଭାଇଙ୍କ କଥାଶୁଣି ଟିକିଏ ହସି କହିଲେ, "କେଉଁ କାଳୁ ଟାଳି ବଣର ଫଳ ମୂଳ ଖାଇ ଖାଇ ଆଉ ଦେହରେ ବଳ ଅଛିଯେ ରାଗ ମାଡ଼ିବ ?"

ପାଣ୍ଡବମାନେ ମାତାଙ୍କ ସହିତ ଯାଇ ଶିବପୁର ଗ୍ରାମରେ ବିଷ୍ଣୁକର ପଣ୍ଡା ଘରେ ରହିଲେ । ପଣ୍ଡା ଓ ପଣ୍ଡିଆଣୀ ଦୁହେଁ ଏମାନଙ୍କୁ ବହୁତ ଆଦର ଗୌରବ କଲେ । ସେହିବର୍ଷ ଗୌତମୀ ତୀର୍ଥରେ ସ୍ନାନଯୋଗ ପଡ଼ିଲା । ଯୁଧିଷ୍ଠିର ଆଦି ପାଞ୍ଚଭାଇ ତୀର୍ଥସ୍ନାନ କରିବାକୁ ବାହାରିଲେ । ମାତ୍ର ଭୀମଙ୍କୁ ସାଙ୍ଗରେ ନେବାପାଇଁ କୁନ୍ତୀ ମନାକଲେ । କାରଣ ଭୀମତ ଜତୁଗୃହ ଦାହ, ବନବାସ କଷ୍ଟ ଆଦି ହେତୁ ରାଗରେ ତାତିକରି ଅଛି ।

ଯଦି ସେଠାରେ କୌରବମାନଙ୍କୁ ଦେଖିବ, ତେବେ ଗୋଟି ଗୋଟି କରି ତାଙ୍କ ବେକ ମୋଡ଼ିଦେବ । ତେଣୁ ଭୀମ ଓ କୁନ୍ତୀଙ୍କୁ ଛାଡ଼ି ଅନ୍ୟ ଚାରିଭାଇ ତୀର୍ଥସ୍ଥାନକୁ ବାହାରିଲେ ।

କିଛି ଦିନ ପରେ ସେହି ଗ୍ରାମରେ ଚହଳ ପଡ଼ିଲା ଯେ ନିଷାଦମାନେ ଆସି ଧାଡ଼ି ଦେଲେଣି, ଯୁଦ୍ଧ ହେବ । ଭୀମ ବଷ୍ଟୁଙ୍କର ପଣ୍ଡାଙ୍କୁ କଥା କଅଣ ବୋଲି ପଚାରିଲେ । ପଣ୍ଡାଏ କହିଲେ ଯେ ଅନେକ ଦିନ ତଳେ ସେହି ଗ୍ରାମର ଜଣେ ବ୍ରାହ୍ମଣ, ଅନ୍ୟ ଏକ ଗ୍ରାମକୁ ପୁରୋହିତ କର୍ମ କରି ଯିବାବେଳେ ପର୍ବତ ତଳେ ବାସ କରୁଥିବା ନିଷାଦର ଝିଅ ତାଙ୍କୁ ବାଟରେ ଅଟକାଇ ବଳାତ୍କାରରେ ଶୃଙ୍ଗାର କରାଏ । ଏହାପରେ କରି ତାର ଦଶଟି ପୁଅ ହେଲେ । ସେମାନଙ୍କର ବଂଶ କ୍ରମେ ବଢ଼ି ଗୋଟାଏ ଗାଁ ହୋଇଛି । ସେମାନେ ବେଳେ ବେଳେ ଏହି ଗାଁ ଉପରେ ଚଢ଼ାଉ କରି ଆଇ ଭାଗ ମାଗିବା ଛଳରେ ସବୁ ଧନ ସମ୍ପଦ ଲୁଟି ନେଇଯାନ୍ତି । ଏ ଗାଁ ଲୋକେ ସେମାନଙ୍କୁ ବଳରେ ପାରନ୍ତି ନାହିଁ । ଏ କଥା ଶୁଣି ଭୀମଙ୍କ ବାହୁମୂଳ କମ୍ପି ଉଠିଲା । ଅନେକ ଦିନ ହେଲା କାହା ସଙ୍ଗେ ଯୁଦ୍ଧ ହୋଇ ନାହିଁ । ସେ ପଣ୍ଡାଙ୍କୁ କହିଲେ, "ଏଥର ସେମାନେ ଆସିଲେ ଆଉ ଜୀବନ ନେଇ ଫେରିବେ ନାହିଁ" । ପଣ୍ଡା ତ ଭୀମଙ୍କ ବଳ ଜାଣନ୍ତି ନାହିଁ । ସେ ବାରଣ କରି କହିଲେ "ବାବୁ, ସେ ଗୁଡ଼ାକ ଦେଖିବାକୁ ସାକ୍ଷାତ ଅସୁର ପରି । ବ୍ରାହ୍ମଣମାନେ କେବେ ହେଲେ ତାଙ୍କୁ ବଳରେ ପାରିବେ ନାହିଁ । ପୁଣି ତୁମେ ହେଲ ମୋର ଅତିଥି । ମୁଁ ତୁମକୁ ସେ ଯୁଦ୍ଧକୁ କେବେ ହେଲେ ଛାଡ଼ିବି ନାହିଁ" ।

ସତକୁ ସତ ନିଷାଦମାନେ ବହୁ ସଂଖ୍ୟାରେ ଆସି ଶିବପୁର ଗ୍ରାମ ଆକ୍ରମଣ କଲେ । ଲୋକଙ୍କୁ ମାରି ହାଣି ଲୁଟ ତରାଜ ଆରମ୍ଭ କରି ଦେଲେ । ପଣ୍ଡାଏ ନିଜର ମୂଲ୍ୟବାନ ସମ୍ପତ୍ତି ଧରି ପଳାଇ ଯିବାକୁ ବସିଲେ । କୁନ୍ତୀ ଓ ଭୀମକୁ ମଧ୍ୟ ତାଙ୍କ ସଙ୍ଗେ ପଳାଇ ଯିବାକୁ ଅନୁରୋଧ କଲେ । ମାତ୍ର ଭୀମକି ପଳେଇବା ଲୋକ । ସେ ସଙ୍ଗେ ସଙ୍ଗେ ରୁଦ୍ରମୂର୍ତ୍ତି ଧରି ବାହାରି ପଡ଼ିଲେ । କୁନ୍ତୀ ମା' ହୋଇ ତାଙ୍କୁ ଯୁଦ୍ଧ କରିବାକୁ ଅନୁମତି ଦେବାରୁ ପଣ୍ଡାଏ ଆଉ ବାରଣ କଲେ ନାହିଁ । ଭୀମ ଦୁଇଟା ଗଛ ଉପାଡ଼ି ଦୁଇ ହାତରେ ଧରି ଗୋଟାଏ ପଟୁ ନିଷାଦ ମାନଙ୍କୁ ପିଟି

ଘଉଡ଼େଇ ନେଇ ଗଲେ । କାହାକୁ ମୁଥେ, କାହାକୁ ଗୁପୋଡ଼େ, କାହାକୁ ଗୋଇଠାଏ ମାରି ସିଧା ଯମ ପୁରକୁ ପଠାଇ ଦେଲେ । ଏହିପରି ଅଧା ଅଧି ନିଷାଦ ମରି ଯିବାରୁ ଅନ୍ୟମାନେ ପ୍ରାଣ ବିକଳରେ ପଳାଇଲେ ।

ସେହି ସମୟରେ ସେ ରାଜ୍ୟ ଅରାଜକ ଥିଲା । ଭୀମଙ୍କର ବଳ ବିକ୍ରମ ଦେଖି ସମସ୍ତେ ମିଳି ଭୀମଙ୍କୁ ରାଜା କଲେ । ଭୀମ ରାଜ ଉଆସରେ ମହା ଆନନ୍ଦରେ ରହିଲେ । ଭାଇମାନେ ତୀର୍ଥରୁ ଫେରି ମା'ଙ୍କ ଠାରୁ ସବୁ ଘଟଣା ଶୁଣି ଦିନେ ଭୀମଙ୍କୁ ଦେଖିବାକୁ ଗଲେ । ଦ୍ୱାରୀ ଯାଇ ଭୀମଙ୍କୁ ଜଣାଇଲା ଯେ ଗୃହଜଣ ବ୍ରାହ୍ମଣ ତାଙ୍କର ମା'ଙ୍କ ସହିତ ଦେଖା କରିବାକୁ ଆସିଛନ୍ତି । ଭୀମ ଜାଣିଲେ ଯେ ମା ଓ ଭାଇମାନେ ଆସିଗଲେ । ସାଙ୍ଗରେ ନେଇ ପୁଣି ସେହି କନ୍ଦମୂଳ ଖୁଆଇବେ । ଯେତେ କହିଲେ ମଧ୍ୟ ଏଠାରେ ଆଉ ରହିବେ ନାହିଁ । ସେ କିଛି ନ ଶୁଣିଲା ପରି 'ରାଗିକରି ଦ୍ୱାରୀକୁ କଟମଟ କରି ଚାହିଁଲେ । ଦ୍ୱାରୀ ପଳାଇ ଯାଇ କହିଲା, 'ରାଜା ରାଗିକରି ଅଛନ୍ତି । ଆଉ ଏବେ ଦେଖା ହୋଇପାରିବ ନାହିଁ ।'

ଯୁଧିଷ୍ଠିର ଭୀମଙ୍କୁ ଅନେକ ଦିନ ହେଲା ନଦେଖି ବହୁତ କାନ୍ଦିଲେ । ପୁଣି ମନକୁ ମନ କହି ପ୍ରବୋଧନ ଦେଲେ, 'ବିଚରା ଆମ ସଙ୍ଗେ ରହି ବହୁତ ଦୁଃଖକଷ୍ଟ ପାଉଥିଲା । ସେ ସୁଖରେ ରହିଲା; ହେଉ ଭଲ ହେଲା । ଚାଲ, ଆମେମାନେ ସମସ୍ତେ ବଣକୁ ଫେରିଯିବା । ଗୋଟିଏ ସ୍ଥାନରେ ଦୀର୍ଘକାଳ ରହିଲେ ଲୋକେ ଆମର ପରିଚୟ ପାଇଯିବେ ।'

ବିଦୁରଙ୍କ ନିର୍ଦ୍ଦେଶରେ ସୁମନ୍ତ ପୁରୋହିତ ପାଣ୍ଡବମାନଙ୍କୁ ଦେଖିବାକୁ ଆସିଥିଲେ । ସେ ଏସବୁ ବିଷୟ ଶୁଣି ଏକାନ୍ତରେ ଭୀମଙ୍କୁ ଦେଖାକରି ମା ଓ ଭାଇଙ୍କ କଥା ମନେ ପକାଇ ଦେଲେ । ଭୀମଙ୍କ ମନରେ ବଡ଼ ଅନୁତାପ ହେଲା । ତାଙ୍କର ମନେ ହେଲା, ତାଙ୍କୁ କିଏ ଯେପରି କହୁଛି, 'ଆରେ ମୂର୍ଖ, ଯୁଧିଷ୍ଠିର ପରି ଭାଇଙ୍କୁ ଛାଡ଼ି ଏଠି ରାଜା ହୋଇଛୁ ? ତୋତେ ଲଜ୍ଜା ଲାଗୁନାହିଁ ?'' ମା ଓ ଭାଇଙ୍କ କଥା ମନେ ପଡ଼ି ତାଙ୍କର ମନ ଭାରି ବିକଳ ହେଲା । ସେ ପିଲାଙ୍କ ପରି କାନ୍ଦିଲେ । ସେହି ରାତିରେ ରାଜନଅର ଛାଡ଼ି ମା ଓ ଭାଇଙ୍କ ପାଖକୁ ଚାଲି ଆସିଲେ ଏବଂ ପୂର୍ବପରି ସେମାନଙ୍କୁ କାନ୍ଧରେ, କାଖରେ ବସାଇ ରାତାରାତି ସେ ଗାଁ ଛାଡ଼ି ଚାଲିଗଲେ ।

## ବକାସୁର ବଧ

ପାଣ୍ଡବମାନେ ଶିବପୁରରୁ ଯାଇ ଏକଚକ୍ରା ନାମକ ଆଉ ଏକ ଗ୍ରାମରେ ବାସ କଲେ । ଏହି ଗ୍ରାମଟି ଗୋଟିଏ ଘଞ୍ଚ ଜଙ୍ଗଲରେ ଅବସ୍ଥିତ । ଏଠାରେ ଗରିବ ଲୋକ କେହି ନାହାଁନ୍ତି । ସମସ୍ତେ ଧନଶାଳୀ । ଯେ ଭିକ୍ଷାବୃତ୍ତି କରି ଚଳେ ତା'ର ମଧ୍ୟ ଅଭାବ କିଛି ନାହିଁ । ଦେବଶର୍ମା ନାମକ ଏହିପରି ଜଣେ ଭିକ୍ଷାଶୀ ବ୍ରାହ୍ମଣ ଘରେ ପାଣ୍ଡବମାନେ ଯାଇ ରହିଲେ ।

ଦିନେ ବ୍ରାହ୍ମଣଘରେ ସମସ୍ତେ ଅତି କରୁଣ ସ୍ୱରରେ କାନ୍ଦୁଥିବାର ଦେଖି କୁନ୍ତୀ ତାହାର କାରଣ ଜାଣିବାକୁ ଝରକା ପାଖରେ କାନ ଡେରିଲେ । ସେମାନଙ୍କର କଥାରୁ ଜଣାଗଲା ଯେ ପାଖ ଜଙ୍ଗଲରେ ବକାସୁର ବାସକରେ । ପ୍ରତିଦିନ ତାର ଆହାର ପାଇଁ ଗ୍ରାମବାସୀ ପାଳକରି ଶଗଡ଼େ ଭାତ, ଶଗଡ଼େ ପିଠା, ହଳେ ବଳଦ, ହଳେ ପୋଢ଼ଅ ଓ ଜଣେ ଲୋକ ପଠାନ୍ତି । ଏହାର ବଦଳରେ ଅସୁର, ଗ୍ରାମବାସୀଙ୍କୁ ବିପଦ ଆପଦରୁ ରକ୍ଷାକରେ । ସ୍ୱର୍ଗର ରାଜା ଇନ୍ଦ୍ର ମଧ୍ୟ ଅସୁରକୁ ଡ଼ରି ବେଳ କାଳ ଜାଣି ବର୍ଷା କରନ୍ତି । ଫଳରେ ଗାଁରେ ଧନ ସମ୍ପଦ ଖାଦ୍ୟ ପଦାର୍ଥ ପୂରି ରହିଥାଏ । ସେଦିନ ବ୍ରାହ୍ମଣର ପାଳି ପଡ଼ିଥାଏ । ବ୍ରାହ୍ମଣ କହୁଛି, 'ଭାତ ପିଠା ବଳଦ ପୋଢ଼ଅ ସିନା ଯୋଗାଡ଼ କରିହେବ, ମାତ୍ର ନରବଳି କାହିଁ ମିଳିବ ?' ବ୍ରାହ୍ମଣୀ କହୁଛି, 'ମତେ ବଳିପାଇଁ ପଠାଇ ତୁମେ ଆଉ ଗୋଟିଏ ବିଭାହୁଅ ।' ବ୍ରାହ୍ମଣ କହୁଛି, 'ତୁ ମଲେ ପୁଅ ଝିଅ କାନ୍ଦି କାନ୍ଦି ତୋ ତେ ଝୁରି ଝୁରି ମରିଯିବେ । ସେମାନଙ୍କ କାନ୍ଦଣା ମୁଁ ସହି ପାରିବି ନାହିଁ । ତେଣୁ ତୁ ରହ । ମୁଁ ବଳିକୁ ଯାଉଛି ।' ବାପା ମା' ଙ୍କ ବିକଳ ଦେଖି ଦଶ ବର୍ଷର ପୁଅ କହୁଛି, 'ବାପା ମା ଥିଲେ ପଛରେ ପୁଅ ହେବ । ତେଣୁ ବଳିକୁ ମତେ ପଠାଅ ।' ଏସବୁ ଶୁଣି ଝିଅ କହୁଛି, 'ମୁଁ ତ ପର ଗୋଡ଼ୀ । ଯେଉଁଦିନ ହେଲେ ଘରୁ ଯାଇଥାନ୍ତି । ଏବେ ମତେ ଅସୁର ଖାଉ ।'

କୁନ୍ତୀ ତାଙ୍କ ପାଖକୁ ଯାଇ ପ୍ରବୋଧନା ଦେଇ କହିଲେ, "ଆମେମାନେ ତମଘରେ ଆଶ୍ରୟ ନେଇଛୁ । ତମର ସୁଖ ଦୁଃଖରେ ଆମେ ଭାଗୀ । ତୁମେମାନେ ମନରୁ ଚିନ୍ତାଛାଡ଼ । ମୋର ପାଞ୍ଚପୁଅ ମଧ୍ୟରୁ ମୁଁ ଜଣକୁ ବଳି

ପାଇଁ ପଠାଇବ ।" ବ୍ରାହ୍ମଣ ବ୍ରାହ୍ମଣୀ ଏହା ଶୁଣି କଭ କାମୁଡ଼ ପକାଇଲେ । କହିଲେ, "ଆପଣ ଆମର ଅତିଥି, ଦେବତା । ଆପଣଙ୍କ ପୁଅକୁ ବକକୁ ପଠାଇବୁ ? ଏହାଠାରୁ ବଳକର ପାପ ଆଉ ଦୁନିଆରେ ଅଛି ? ଆମକୁ ନରକରେ ମଧ୍ୟ ସ୍ଥାନ ମିଳିବ ନାହିଁ । ଏହା ଆଉ କହନ୍ତୁ ନାହିଁ ।"

ଯାହାହେଉ, ଶେଷରେ କୁନ୍ତୀ ସେମାନଙ୍କୁ ବହୁତ ବୁଝାଇ ଭୀମକୁ ପିଠା ଓ ଭାତ ଶଗଡ଼ ଦେଇ ବକାସୁର ପାଖକୁ ପଠାଇଲେ । ଯୁଧିଷ୍ଠିରଙ୍କ ମନ ମାନିଲା ନାହିଁ । ସେ ମହାଦେବକୁ ଏକାନ୍ତରେ ପଚାରି ବୁଝିନେଲେ ଯେ ଭୀମ ବକାସୁରକୁ ଅବଶ୍ୟ ମାରିବ ।

ଗ୍ରାମର ମାଇପୀଲୋକମାନେ ଭୀମକୁ ଶଗଡ଼ ଚଳାଇ ଯାଉଥିବାର ଦେଖି ହାହାକାର କଲେ । 'ଆହା କି ସୁନ୍ଦର ପୁଅ । ଏପରି ପୁଅକୁ ମରଣ ମୁହଁକୁ ଦେବାକୁ ମା'ର କେମିତି ସତ ବଳିଲା ମ ? ପୋଷି ନପାରିଲା ଯଦି ଆମକୁ ହେଲେ ଦେଇ ଦେଲାନି ।' କୁନ୍ତୀ ସବୁ ଶୁଣିଲେ । ଧର୍ମଦେବତାଙ୍କୁ ସ୍ମରଣ କରି ଚୁପ ରହିଲେ ।

ଭୀମ ଜଙ୍ଗଲ ପାଖରେ ପହଞ୍ଚି ଶଗଡ଼ ଛିଡ଼ାଇଦେଲେ । ପାଖ ନଈରେ ମୁହଁ ହାତ ଧୋଇ ଆସି ଭାତ, ପିଠା ସବୁ ନିଜେ ଖାଇବାରେ ଲାଗିଲେ । ବକାସୁର ଆସି ଦୂରରୁ ଦେଖିଲା ଯେ ଶଗଡ଼ ଅଡ଼େଇ ଆସିଥିବା ଲୋକଟା ତାର ଖାଦ୍ୟ ସବୁ ଖାଇ ଶେଷ କରିବା ଉପରେ । ସେ ରାଗରେ ଗିରଜୁଣି ଆସି ଭୀମ ଉପରେ ଲାଗ ଲାଗ ଦୁଇଟା ଶୂଳ ପ୍ରହାର କଲା । ଭୀମ ଦେହରେ ଶୂଳ ବାଜି ଭାଙ୍ଗିଗଲା ।

ଭୀମ ଅସୁରକୁ ଅନାଇଁ କହିଲେ, "ଆରେ, ତୁ ଟା ତ ସତେ ବଡ଼ ଦୁଷ୍ଟ । ତୋର ପାପ ପୁଣ୍ୟ ବିଚାର ନାହିଁ । ଖାଇଲା ଲୋକକୁ ବାଧା ଦେଉଛୁ । ଆଉ ଟିକିଏ ରହ । ମୁଁ ଖାଇସାରେଁ । ତାପରେ କଥାବାର୍ତ୍ତା ।" ଏହା କହୁ କହୁ ବାକି ଖାଦ୍ୟତକ ଖାଇ ଶେଷ କରିଦେଲେ । ଅସୁରକି ଏହା ସହେ ? ସଙ୍ଗେ ସଙ୍ଗେ ଭୀମଙ୍କୁ ମାଡ଼ି ବସିଲା । ତଣ୍ଟି କଣାକରି ରକ୍ତ ପିଇବାକୁ ମୁହଁ ଲଗାଇଲା ବେଳକୁ ଭୀମ ଅସୁର ମୁହଁରେ ଏକ ଶକ୍ତ ମୁଥ ବସାଇଦେଲେ । ମୁଥ ମାଡ଼ରେ ଅସୁରର ବଡ଼

ବଡ଼ ଦାନ୍ତସବୁ ଝଡ଼ିପଡ଼ିଲା । ତାପରେ ଭୀମ, ଅସୁରକୁ ଲେଉଟାଇ ମାଡ଼ି ବସିଲେ । କିଛି ସମୟ ଉଭୟଙ୍କ ମଧ୍ୟରେ ପ୍ରବଳ ଯୁଦ୍ଧ ହେଲା । ଶେଷରେ ଭୀମଙ୍କ ହାତରେ ଅସୁର ମଲା ।

ଭୀମ, ଅସୁରର ଚୂଟି ଧରି ଘୋଷାରି ଆଣି ଗାଁ ମୁଣ୍ଡର ଏକ ଗଛ ଦେହରେ ଠିଆକରି ବାନ୍ଧିଦେଲେ । ସକାଳ ହେଲେ ଚହଳ ପଡ଼ିଯିବା ଭୟରେ ମା ଓ ଭାଇଙ୍କୁ ସଙ୍ଗରେ ଧରି ସେହି ରାତିରେ ଗାଁ ଛାଡ଼ି ଚାଲିଗଲେ ।

ରାତି ପାହି ସକାଳ ହେବାରୁ ଲୋକମାନେ ଅସୁର ମୂର୍ତ୍ତିକୁ ଦେଖି ମନେ କଲେ ବୋଧହୁଏ ବ୍ରାହ୍ମଣ ଗତଦିନ ପାଳି ଦେବାରେ କିଛି ତ୍ରୁଟି କରିଛି ବୋଲି ଅସୁର ରାଗିକରି ଆସିଲାଣି, ସମସ୍ତଙ୍କୁ ଖାଇବ । ତେଣୁ ଲୋକେ ଦେବଶର୍ମା ଘରକୁ ଧାଇଁଲେ । ଦେବଶର୍ମା ପୁନର୍ବାର ଖାଦ୍ୟ ପଦାର୍ଥ ଧରି ନିଜେ ଅସୁରର ବଳି ହୋଇ ଆସିଲା । ମାତ୍ର ଅସୁର ଦେହରେ ହାତମାରି ଦେଖିଲା, ତା ଦେହରେ ଜୀବନ ନାହିଁ । କେଉଁ ମହାତ୍ମା ତାକୁ ମାରିଲା ବୋଲି ଲୋକେ ଖୋଜିଲା ବେଳକୁ ପାଣ୍ଡବମାନେ ସେ ଗାଁ ଠାରୁ ବହୁତ ଦୂରକୁ ଚାଲିଯାଇଥିଲେ ।







ମ
ହା
ଭା
ର
ତ

ସାରଳା

୧୧ଶ ଅଧ୍ୟାୟ

## ଦ୍ରୌପଦୀ ସ୍ୱୟମ୍ବର

ପାଞ୍ଚାଳ ଦେଶର ରାଜା ଦ୍ରୁପଦଙ୍କ କନ୍ୟା ଦ୍ରୌପଦୀ ଅନିନ୍ଦ୍ୟ ସୁନ୍ଦରୀ । ପୁଣି ସକଳ ସଦ୍‌ଗୁଣରେ ପରିପୂର୍ଣ୍ଣା । ଶିବଙ୍କ ନିର୍ଦ୍ଦେଶରେ ସେ ଅର୍ଜ୍ଜୁନଙ୍କୁ ବିବାହ କରିବାର କଥା । ମାତ୍ର ପାଣ୍ଡବମାନେ ଜତୁଗୃହରେ ଦାହହେବାର ଶୁଣି ଦ୍ରୁପଦ ଯେତିକି ବ୍ୟଥିତ ହେଲେ ସେତିକି ଆଶ୍ଚର୍ଯ୍ୟ ମଧ୍ୟ ହେଲେ । ସ୍ୱୟଂ ଭଗବାନ୍ ଶିବଙ୍କର କଥାତ ମିଥ୍ୟା ହେବାର ନୁହେଁ । ହେନେ ବ୍ୟାସଦେବ ତାଙ୍କ ନିକଟରେ ପହଞ୍ଚି କହିଲେ ଯେ ପାଣ୍ଡବମାନେ ମରି-ଥିବାର ବିଶ୍ୱାସ ହେଉନାହିଁ । ଦ୍ରୁପଦ ଗୋଟିଏ ସ୍ୱୟମ୍ବର ସଭା କରନ୍ତୁ । ସେଥିରେ ଏକ କଠିନ ଲକ୍ଷ୍ୟବିନ୍ଧା ବ୍ୟବସ୍ଥା ରହିବ । ଯେଉଁବୀର ସେ ଲକ୍ଷ୍ୟ ବିନ୍ଧିବ ସେ ଦ୍ରୌପଦୀଙ୍କୁ ବିଭାହେବ ।

ଗୋଟିଏ ଲମ୍ବା ଖୁମ୍ବ ପୋତା ହୋଇ ତାର ଅଗରେ ଏକ ସୁନାର ମାଛ ଝୁଲାଇ ଦିଆଯିବ । ମାଛ ତଳକୁ ଏକ ଚକ୍ର ଅନବରତ ଘୂରୁଥିବ । ଖୁମ୍ବ ମୂଳରେ ଏକ ପାଣିକୁଣ୍ଡ ରହିବ । ପାଖରେ ଲକ୍ଷେ ବଳର ଏକ ଧନୁ ଥୁଆହେବ । ଯେଉଁ ବୀର ସେହି ଧନୁକୁ ଧରି ଉପରକୁ ମୁଷ୍ଟି ତଳକୁ ଦୃଷ୍ଟି ରଖି ପାଣିକୁଣ୍ଡରେ ମାଛର ଛାଇକୁ ଅନାଇଁ ଶରମାରି ମାଛର ବାମ ଆଖିକୁ ଭେଦ କରିବ ସେ ଦ୍ରୌପଦୀଙ୍କୁ ପତ୍ନୀରୂପେ ପାଇବ ।

ଦ୍ରୁପଦ ଏହା ଶୁଣି ଭାରି ଖୁସି ହେଲେ । ତାଙ୍କ ମନରେ ଆଶା ହେଲା, ଯଦି ପାଣ୍ଡବମାନେ କେଉଁଠି ଅଜ୍ଞାତ ବାସ କରୁଥିବେ ତେବେ ସ୍ୱୟମ୍ବର ସମ୍ବାଦ ପାଇ ନିଶ୍ଚେ ଆସିବେ । ପୁଣି ଏପରି କଷ୍ଟକର ଲକ୍ଷବିନ୍ଧା ଅର୍ଜୁନ ଛଡ଼ା ଆଉ କାହା ପକ୍ଷରେ ହୁଏତ ସମ୍ଭବ ହୋଇନପାରେ । ସେ ମନେ ମନେ ଶିବଙ୍କୁ ପ୍ରାର୍ଥନା କରି ସ୍ୱୟମ୍ବର ଆୟୋଜନରେ ଲାଗିପଡ଼ିଲେ ।

ଶ୍ରୀକୃଷ୍ଣଙ୍କ ନିର୍ଦ୍ଦେଶରେ ବ୍ୟାସଦେବ ଗୋପନରେ ଯାଇ ପାଣ୍ଡବ-ମାନଙ୍କୁ ଏ ଖବର ଦେଇ ଆସିଲେ । ପାଣ୍ଡବମାନେ ଯଥାସମୟରେ ପାଞ୍ଚାଳ ଦେଶରେ ପହଞ୍ଚି ଗୋଟିଏ କୁମ୍ଭାରଶାଳରେ ବସାକରି ରହିଲେ । ମହା ସମାରୋହରେ ଦ୍ରୌପଦୀଙ୍କର ସ୍ୱୟମ୍ବର ଆରମ୍ଭ ହେଲା । ଲକ୍ଷେ ରାଜା ନିମନ୍ତ୍ରିତ ହୋଇ ଆସି ସଭାମଣ୍ଡନ କରିଥାନ୍ତି । ନିମନ୍ତ୍ରଣ ପାଇ ଦ୍ୱାରକାରୁ ଶ୍ରୀକୃଷ୍ଣ ବଳରାମ ମଧ୍ୟ ଆସିଛନ୍ତି । କୌରବ ଶତଭାଇ, ଭୀଷ୍ମ, ଦ୍ରୋଣ, କର୍ଣ୍ଣ, ଅଶ୍ୱତ୍ଥାମା, ଜୟଦ୍ରଥ, ଶିଶୁପାଳ, ଜରାସନ୍ଧ ପ୍ରମୁଖ ମହା ବୀରମାନେ ସମବେତ ହୋଇଥାନ୍ତି । ଦ୍ରୌପଦୀ ସଖୀ ଗହଣରେ ସଭା ମଧ୍ୟକୁ ଆସିଲେ । ଦ୍ରୌପଦୀଙ୍କ ରୂପଦେଖି ସମବେତ ରାଜାମାନେ ମୋହିତ ହୋଇଗଲେ । ନିଜ ନିଜର ଅନ୍ତଃପୁରରେ ଏପରି ଏକ ନାରୀ ରତ୍ନର ଯେ ଅଭାବ ରହିଛି ଏହା ସମସ୍ତେ ଅନୁଭବ କଲେ ।

ତାପରେ ଲକ୍ଷ ବିନ୍ଧା ଆରମ୍ଭ ହେଲା । ସମସ୍ତଙ୍କର ଅଗୋଚରରେ ପାଣ୍ଡବମାନେ ବ୍ରାହ୍ମଣ ବେଶଧରି ବ୍ରାହ୍ମଣଙ୍କ ମେଳରେ ବସିଥାନ୍ତି । ସମସ୍ତଙ୍କ ଅଲକ୍ଷରେ ଅର୍ଜ୍ଜୁନ ଶ୍ରୀକୃଷ୍ଣଙ୍କୁ ପ୍ରଣତି ଜଣାଇଲେ । ଭୀମ ରାଜା-ମାନଙ୍କର ଆଡ଼ମ୍ବର ଓ ବେଶପୋଷାକ ଦେଖି ରାଗରେ ଛଟପଟ ହେଉଥାନ୍ତି । ବିଶେଷକରି ଦୁର୍ଯ୍ୟୋଧନ ଆଦି କୌରବମାନଙ୍କୁ ଦେଖି ତାଙ୍କ ରକ୍ତ ଗରମ ହୋଇ ଉଠୁଥାଏ । ମନେ ମନେ ଭାବୁଥାନ୍ତି ବଡ଼ ଭାଇ ଟିକିଏ ଅନୁମତି ଦିଅନ୍ତେ କି ସେମାନଙ୍କ ବେକ ମୁହୂର୍ତ୍ତିକ ମଧ୍ୟରେ ମୋଡ଼ି-ଦେଇ ଆସନ୍ତି ।

ଲକ୍ଷ ବିନ୍ଧିବାକୁ ପ୍ରଥମେ ଦୁର୍ଯ୍ୟୋଧନ ଉଠିଲେ । ତାଙ୍କ ମୁକୁଟ ଓ ପୋଷାକରେ ଥିବା ମହାମୂଲ୍ୟ ମଣିମୁକ୍ତାମାନ ଝଟକି ଉଠିଲା । ବିକ୍ରମ ସିଂହାସନରେ ସେ ଯାଇ ଧନୁ ରଖାଯାଇଥିବା ସ୍ଥାନ ନିକଟରେ

ପଡ଼ିଥିଲେ । ଦ୍ରୌପଦୀଙ୍କ ମୁହଁକୁ ଅଳ୍ପ ଚାହିଁ ତାଙ୍କ ଆଖି ଝଲସି ଗଲା । ଦିନରେ ତାଙ୍କୁ ଅନ୍ଧପରି ଲାଗିଲା । ଧନୁକୁ ଅଣ୍ଟାଳି ଧରିବାକୁ ଗଲାବେଳକୁ ଗୋଡ଼ରେ ପାଣିକୁଣ୍ଡ ବାଜି ଝୁଣ୍ଟି ପଡ଼ିଲେ । ଧୃଷ୍ଟଦ୍ୟୁମ୍ନ ଥଟ୍ଟାକରି କହିଲେ "ଏ ତ ଆଖି ଥାଉଁ ଥାଉଁ ଅନ୍ଧ । ଧନୁ କଏ, ପାଣିକୁଣ୍ଡ କଏ ବାରି ପାରୁନାହିଁ । ଇଏ କି ଲଖ ବିନ୍ଧିବ ?" ଶିଖଣ୍ଡୀ ମଧ୍ୟ ବହୁତ ହିଁଙ୍ଗାସ କରି କହିଲେ । ଦୁର୍ଯ୍ୟୋଧନ ଅପମାନ ପାଇ ଆସି ନିଜ ସ୍ଥାନରେ ବସି ପଡ଼ିଲେ । ଏହା ଦେଖି ଯୁଧିଷ୍ଠିର ବାରଣ କରୁ କରୁ ଭୀମ ତାଳମାରି ହସି ଉଠିଲେ ।

ତାପରେ ଉଠିଲେ ଚେଦି ଦେଶର ରାଜା ଶିଶୁପାଳ । ଧନୁକୁ ଟେକୁ ଟେକୁ ତାଙ୍କ ନାକରୁ ରକ୍ତ ଝରି ପଡ଼ିଲା । ଲଜ୍ଜାପାଇ ସେ ଫେରି-ଆସିଲେ । ତା ପରେ ଉଠିଲେ ଜରାସନ୍ଧ । ଲକ୍ଷେ ବଳରେ ଧନୁକୁ ଧରି ତହିଁରେ ଗୁଣ ଲଗାଇ ପାରିଲେ ନାହିଁ । ସେ ମଧ୍ୟ ଲଜ୍ଜିତ ହୋଇ ଫେରିଲେ । ପରେ ପରେ ଆଉ କେତେ ଜଣ ରାଜା ଆସିଲେ । କଏ ଧନୁକୁ ଉଠାଇ ପାରିଲା ନାହିଁ ତ ଆଉ କଏ ଧନୁକୁ ଟେକୁ ଟେକୁ ଧନୁ ତାକୁ ମାଡ଼ି ବସିଲା । ବଡ଼ ବଡ଼ ରାଜାମାନେ ନପାରିବାରୁ ଅନ୍ୟମାନେ ଆଉ ଧନୁ ପାଖକୁ ଗଲେ ନାହିଁ ।

ଶେଷରେ ମହାବୀର କର୍ଣ୍ଣ ଲଖ ବିନ୍ଧିବାକୁ ଉଠିଲେ । ବଳରାମ ଶ୍ରୀକୃଷ୍ଣଙ୍କୁ କହିଲେ, "ଦେଖ୍ କୃଷ୍ଣ, କର୍ଣ୍ଣ ଏହିକ୍ଷଣି ନିଶ୍ଚୟ ଲଖିବ ବିନ୍ଧିବ ।" ଏହା ଶୁଣି ଶ୍ରୀକୃଷ୍ଣଙ୍କ ମନରେ ଆଶଙ୍କା ହେଲା, ହୁଏତ କର୍ଣ୍ଣ ଲଖ ବିନ୍ଧି ଦେଇ ପାରନ୍ତି । ତେଣୁ ତାଙ୍କର ଆଦେଶରେ ସୁଦର୍ଶନ ଚକ୍ର ସମସ୍ତଙ୍କୁ ଅଦୃଶ୍ୟ ହୋଇ ସୁନା ମାଛର ତଳେ ବୁଲିଲା । କର୍ଣ୍ଣ ଲକ୍ଷେ ବଳରେ ଧନୁକୁ ଧରି ଉପରକୁ ମୁଣ୍ଡି ତଳକୁ ଦୃଷ୍ଟି କରି ଶର ମାରିବାକୁ ଗଲା ବେଳକୁ ସଭାରେ ସାଧୁ ସାଧୁ କର୍ଣ୍ଣ ବୋଲି ଧ୍ୱନି ଶୁଭିଲା । କର୍ଣ୍ଣ ବଡ଼ ଉତ୍ସାହିତ ହେଲେ । ମାତ୍ର ତାଙ୍କ ଶର ସୁଦର୍ଶନ ଚକ୍ରକୁ ଭେଦକରି ଯିବାକି ସମ୍ଭବ ? ତାହା ଚକ୍ରରେ ବାଜି ତଳକୁ ଖସି ପଡ଼ିଲା । ହେଲାନାହିଁ, ହେଲାନାହିଁ ବୋଲି ସଭାରେ ପୁଣି ପାଟି ହେଲା । କର୍ଣ୍ଣ ବାହୁଡ଼ି ଆସି ନିଜ ସ୍ଥାନରେ ବସିଲେ । ତାଙ୍କ ପରେ

ଅଶ୍ୱତ୍ଥାମା, ଶଲ୍ୟ, କୃପାଚାର୍ଯ୍ୟ, ଭୂରିଶ୍ରବା ଆଦି ବୀରମାନେ ଲକ୍ଷ ବିନ୍ଧିବାକୁ ଚେଷ୍ଟାକରି ବିଷ୍ଣୁ ମାୟା ଫଳରେ ଅକୃତକାର୍ଯ୍ୟ ହେଲେ ।

ଏ ସମସ୍ତ ଘଟଣା ଦେଖି ଦ୍ରୁପଦ ବଡ଼ ନିରାଶ ହୋଇ ପଡ଼ିଲେ । ମାତ୍ର ଦ୍ରୌପଦୀଙ୍କୁ ଶୁଭ ଶକୁନ ସବୁ ଦେଖାଗଲା । ବାମ ଚକ୍ଷୁ ସ୍ଫୁରିଲା, ଆଗରେ ଉଦଭଦଳିଆ ପକ୍ଷୀ, ଶଙ୍ଖଚିଲ ଉଡ଼ିଗଲେ । ଲକ୍ଷ ବିନ୍ଧିବାରେ ସମସ୍ତେ ବିଫଳ ହେବାର ଦେଖି ବଳରାମ ଶ୍ରୀକୃଷ୍ଣଙ୍କୁ ଦ୍ୱାରକା ଫେରିଯିବା ପାଇଁ ଡାକିଲେ । ଶ୍ରୀକୃଷ୍ଣ କହିଲେ, "ଭାଇ, ଆଉ ଅଳ୍ପ ସମୟ ଅପେକ୍ଷା କରନ୍ତୁ, ଅର୍ଜ୍ଜୁନ ଆସି ନିଶ୍ଚୟ ଲକ୍ଷ ବିନ୍ଧିବ ।" ଏହା ଶୁଣି ଆଶ୍ଚର୍ଯ୍ୟରେ ବଳରାମଙ୍କ ଆଖି ଦୁଇଟା ଉପରକୁ ଉଠିଗଲା । "କରେ, ପାଣ୍ଡବମାନେ ତ ଜତୁ ଗୃହରେ ଦାହ ହେଲେ, ଅର୍ଜ୍ଜୁନ ପୁଣି ଆସିବ କୁଆଡ଼ୁ ? ଶ୍ରୀକୃଷ୍ଣ ଅଳ୍ପ ହସି କହିଲେ, "ପାଣ୍ଡବମାନେ ପ୍ରକୃତରେ ମରିଥିଲେ ମୁଁ କି ବଞ୍ଚି ଥାନ୍ତି ?" ଏହା କହି ପୂର୍ବର ସବୁ ଘଟଣା କହିଗଲେ ।

ବଳରାମ ସବୁ ଶୁଣି ବଡ଼ ଅଭିମାନ କରି କହିଲେ, "କୃଷ୍ଣ, ମୁଁ ତୋ ବଡ଼ ଭାଇ, ମୋ ଠାରେ ତୋର ଏତେ କପଟ ! ଆଉ ପାଣ୍ଡବମାନେ ତୋର ଏତେ ଆପଣାର ! ତୁ ମତେ ଏ ସବୁ କଥା ଏତେ ଦିନ କାହିଁକି ଲୁଚେଇ ରଖିଥିଲୁ ? ଜତୁ ଗୃହ ପୋଡ଼ି ଦେଖି ଗଲା ବେଳେ ପାଣ୍ଡବ ମଲେ ବୋଲି ତୁ କାନ୍ଦି କାନ୍ଦି ଅଚେତ ହୋଇ ଗଲୁ । ତୋ ଆଖିରୁ ଝରି ଝରି ଲୁହ ଝରି ପଡ଼ୁ ଥିବାର ମୁଁ ଦେଖିଛି । ତୋତେ କି ସୁନ୍ଦର ଅଭିନୟ କରି ଆସିଲା । ଗୋପପୁରରେ ଗୋପୀମାନେ ତୋତେ ପ୍ରାଣରୁ ବଳି ଭଲ ପାଉଥିଲେ । ଶୀଘ୍ର ଦିନରେ ଫେରିବୁ ବୋଲି ମୋର ଆଗରେ କେତେ କଅଁଳେଇ କହି ଆସିଲୁ ଯେ ଆଉ ଦିନେ ଭୁଲରେ ବି ସେ ଯାଗା ମାଡ଼ିଲୁ ନାହିଁ । କଂସକୁ କୌଶଳରେ ମାରିଦେଇ ଓଲଟି ମାମୁଁ ପଡ଼ି ମରି ଗଲେ ବୋଲି ମାଈଁଙ୍କ ଆଗରେ କାନ୍ଦି ବସିଲୁ । ଏକା ଭୀମପୋଡ଼ାକେ ଜରାସନ୍ଧର ମୁଣ୍ଡକୁ ମୁଁ ଛିଣ୍ଡାଇ ଦେଇଥାନ୍ତି । ତାକୁ ମାରିବାକୁ ମତେ ମନା କଲୁ । ପୁଣି ତାର ଡରରେ ମଥୁରା ଛାଡ଼ି ଦ୍ୱାରକା ପଳାଇବାକୁ କହିଲୁ । କଅଣ ଯେ ତୋର କଥା, ତାର ଅନ୍ତ ମୁଁ ପାଉ ନାହିଁ । ବଡ଼ ଭାଇ ପାଖେ ଏତେ କପଟ ? ନାଃ, ମୁଁ ଆଉ ଏଠି ରହିବି ନାହିଁ । ମୁଁ

ଦ୍ୱାରକା ଚାଲିଲ । ତୁ ପଛରେ ଆସିବୁ ।" ଏହା କହି ସେ ଉଠିଲେ । କୃଷ୍ଣ ବହୁତ କାକୁତି ମିନତି କରି ତାଙ୍କୁ ବୁଝାଇ ସୁଝାଇ ତାଙ୍କ ରାଗ ଶାନ୍ତ କଲେ ।

ରାଜାମାନେ ଲକ୍ଷ ବିନ୍ଧ ନ ପାରିବାରୁ ଦ୍ରୁପଦ ଶେଷରେ କହିଲେ, "ସଭାରେ ଉପସ୍ଥିତ ଯେ କେହି ଲକ୍ଷ ବିନ୍ଧିଲେ ଦ୍ରୌପଦୀଙ୍କୁ ପ୍ରାପ୍ତ ହେବେ । ଏହା ଶୁଣି ଯୁଧିଷ୍ଠିର ଲକ୍ଷ ବିନ୍ଧିବା ପାଇଁ ଅର୍ଜ୍ଜୁନଙ୍କୁ ଅନୁମତି ଦେଲେ । ଅର୍ଜ୍ଜୁନ ଉଠିବାରୁ ଅନ୍ୟ ବ୍ରାହ୍ମଣମାନେ ତାଙ୍କୁ ଟାଣି ଧରିଲେ । କହିଲେ, "ପଣ୍ଡାଏ, ସୁନ୍ଦରୀ କନ୍ୟା ଦେଖି ଲୋଭ ବଳୁଛି କି ? ମହା ମହା ବୀରମାନେ ଯାହା କରି ନ ପାରିଲେ ତୁମେ କେଉଁ ସାହସରେ ଯାଉଛ ତାହା କରିବାକୁ ? ଲକ୍ଷ ତ ବିନ୍ଧ ପାରିବ ନାହିଁ, ବ୍ରାହ୍ମଣକୁ ମାର ମାର ବୋଲି ରାଜାମାନେ ଯେତେବେଳେ ମାଡ଼ିଆସିବେ, ତାଙ୍କ ହାତରେ ତମ ପ୍ରାଣ ଯିବ । ବହୁ ଦୂରରୁ ଆମେ ଆସିଛୁ ଦାନ ପାଇଁ । ଦାନ ତ ମିଳିବ ନାହିଁ । ତମରି ଦୋଷରୁ ଏଠି ଓଲଟି ପ୍ରାଣ ଦାନ ଦେବୁ । ଆଉ ପିଲା କୁଟୁମ୍ବ ଉଚ୍ଛନ୍ନ ହେବେ ।" ଏହା କହି ବ୍ରାହ୍ମଣମାନେ ଅର୍ଜ୍ଜୁନଙ୍କ ବାଟ ଓଗାଳିଲେ ।

ଏଣେ ଦ୍ରୌପଦୀଙ୍କ ଦୃଷ୍ଟି ଅର୍ଜ୍ଜୁନଙ୍କ ଉପରେ ପଡ଼ି ସାରିଲାଣି । ତାଙ୍କୁ ଦେଖି ହଠାତ୍ ତାଙ୍କର ବକ୍ଷରେ ସ୍ପନ୍ଦନ, ମନରେ ପୁଲକ ସଞ୍ଚାର ହେଲା । ଅର୍ଜ୍ଜୁନଙ୍କର ସୌମ୍ୟ ମୂର୍ତ୍ତି, ସରଳ ନିରାଡମ୍ବର ବେଶ ଉପରେ ତାଙ୍କର ଆଖି ଲାଗି ରହିଛି । ଦ୍ରୁପଦ ଏହା ଲକ୍ଷ୍ୟ କରି ବ୍ରାହ୍ମଣ ସଙ୍ଘକୁ ଚାହିଁ କହିଲେ, "ବ୍ରାହ୍ମଣ କୁଳରେ ମହାବୀର ପର୍ଶୁରାମ ଜନ୍ମ ହୋଇ ତ ଏକୋଇଶବାର ପୃଥିବୀକୁ ନିକ୍ଷତ୍ରିୟ କରିଥିଲେ । ଆପଣମାନେ ସେ ବ୍ରାହ୍ମଣଙ୍କୁ ବାଧା ଦେଉଛନ୍ତି କାହିଁକି ? ସେ ଯଦି ଇଚ୍ଛା କରୁଛନ୍ତି ତେବେ ଆସି ନିଜ ଶକ୍ତିର ପରିଚୟ ଦିଅନ୍ତୁ ।"

ଏହା ଶୁଣି ବ୍ରାହ୍ମଣମାନେ ଅର୍ଜ୍ଜୁନଙ୍କୁ ବାଟ ଛାଡ଼ି ଦେଲେ ଓ କଲ୍ୟାଣ କଲେ ସେ ଯେପରି ଲକ୍ଷ ବିନ୍ଧି ବ୍ରାହ୍ମଣ କୁଳର ଟେକ ରଖନ୍ତୁ । ଶ୍ରୀକୃଷ୍ଣ, ବ୍ୟାସଦେବ ଓ ବିଦୁରଙ୍କ ଛଡ଼ା ଅର୍ଜ୍ଜୁନଙ୍କୁ ଆଉ କେହି ଚିହ୍ନି ପାରିଲେ ନାହିଁ । ଅର୍ଜ୍ଜୁନ ସମସ୍ତଙ୍କ ଅଲକ୍ଷ୍ୟରେ ସେମାନଙ୍କୁ ନମସ୍କାର

କଲେ । ଏହି ସମୟରେ ଦୁଷ୍ଟ ଦୁଃଶାସନ ଖଣ୍ଡା ଧରି ଛଦ୍ମବେଶୀ ଅର୍ଜ୍ଜୁନଙ୍କୁ କେଉଁ ଆଡ଼ର ଗୋଟାଏ ଲୋଭୀ ବ୍ରାହ୍ମଣମନେ କରି ହାଣିବାକୁ ଧାଇଁ ଆସିଲା । ସଙ୍ଗେ ସଙ୍ଗେ ଦୁର୍ଯ୍ୟୋଧନ ତାକୁ ଅଟକାଇ କହିଲେ, "ଯଦି ବ୍ରାହ୍ମଣ ଲକ୍ଷ ବିନ୍ଧିବ, ତେବେ ତାକୁ ଯେତେ ଇଚ୍ଛା ଧନ ଦେଇ କନ୍ୟାକୁ ତା ଠାରୁ ନେଇଯିବା । ତୁ ବ୍ୟସ୍ତ ହୁଅନା ।"

ଅର୍ଜ୍ଜୁନ ଅତି ବିନମ୍ର ଭାବରେ ଲକ୍ଷ ବନ୍ଧା ସ୍ଥଳକୁ ଗଲେ । ବନବାସ କଷ୍ଟ ଫଳରେ ଶରୀର କ୍ଷୀଣ, ଦୁର୍ବଳ ହୋଇ ଯାଇଛି । ତହିଁରେ ପୁଣି ଭିକ୍ଷୁକ ବ୍ରାହ୍ମଣ ବେଶ । ତାଙ୍କୁ ଦେଖି ସଭାରେ ଉପସ୍ଥିତ ରାଜା ମାନେ ଉପହାସ କରି ନା ନା କଟୂ ମନ୍ତବ୍ୟ ଦେଉଥାନ୍ତି । ଅର୍ଜ୍ଜୁନ ସେ ସବୁ କଥାକୁ ଭ୍ରୂକ୍ଷେପ ନ କରି ଲକ୍ଷ ବନ୍ଧା ସ୍ଥାନରେ ଠିଆ ହୋଇ ପୁନର୍ବାର ଅସ୍ତ୍ର ଗୁରୁ ଦ୍ରୋଣଙ୍କୁ ନମସ୍କାର କଲେ । ଏତେ ବେଳକୁ ଦ୍ରୋଣ ଚିହ୍ନିପାରି ଆନନ୍ଦରେ କୁରୁଳି ଉଠିଲେ ଓ ସମସ୍ତଙ୍କ ଅଲକ୍ଷ୍ୟରେ ହାତ ଟେକି ତାଙ୍କୁ ଆଶୀର୍ବାଦ ଜଣାଇଲେ । ତା ପରେ ଅର୍ଜ୍ଜୁନ ଦକ୍ଷିଣ ମୁଖ ହୋଇ ପ୍ରଭୁ ଶ୍ରୀଜଗନ୍ନାଥଙ୍କୁ ପ୍ରଣତି ଜଣାଇଲେ । ଶ୍ରୀକୃଷ୍ଣ ହସ ହସ ମୁଖରେ ତାଙ୍କ ପ୍ରତି ଅମୃତ ଦୃଷ୍ଟିପାତ କଲେ ।

ଯେତେବେଳେ ଅର୍ଜ୍ଜୁନ ଲକ୍ଷେ ବଳ ଧନୁକୁ ଅନାୟାସରେ ଟେକି ତହିଁରେ ଗୁଣ ସଂଯୋଗ କଲେ ସେତେବେଳେ ସଭାରେ ସମସ୍ତେ ଅତ୍ୟନ୍ତ ଆଶ୍ଚର୍ଯ୍ୟ ହୋଇଗଲେ । ସାଧୁ ସାଧୁ ବ୍ରାହ୍ମଣ ବୋଲି ଗୃହଆଡ଼େ ପାଟି ଶୁଭିଲା । ଅର୍ଜ୍ଜୁନ ନିର୍ଦ୍ଦିଷ୍ଟ ରୀତିରେ ଧନୁକୁ ଧରି ଉପରକୁ ମୁଣ୍ଡି ତଳକୁ ଦୃଷ୍ଟି ରଖି ମାଛ ଆଖିକୁ ଲକ୍ଷ୍ୟ କରି ଶର ମାରିଲେ । ଶର ଠିକ୍ ମାଛର ବାମ ଆଖିକୁ ଭେଦ କରି ମାଛ ସହିତ ତଳେ ପଡ଼ିଲା । ଧୃଷ୍ଟଦ୍ୟୁମ୍ନ ତାହାକୁ ଆଣି ସମସ୍ତଙ୍କୁ ଦେଖାଇ ଦେଲେ । ରାଜାମାନଙ୍କ ମୁଖରେ ଭାଷା ନାହିଁ । ଅର୍ଜ୍ଜୁନଙ୍କ ଉପରେ ଆକାଶରୁ ପୁଷ୍ପ ବୃଷ୍ଟି ହେଲା । ଶ୍ରୀକୃଷ୍ଣ ଆନନ୍ଦରେ ପାଞ୍ଚଜନ୍ୟ ଶଙ୍ଖ ବଜାଇଲେ । ଦ୍ରୌପଦୀ ଆନନ୍ଦରେ ଉଲ୍ଲସି ଉଠିଲେ । ସଲଜ୍ଜ ଗତିରେ ସଖୀମାନଙ୍କ ସହିତ ଆସି ଅର୍ଜ୍ଜୁନଙ୍କ ଗଳାରେ ବରଣ ମାଳା ଲମ୍ବାଇ ଦେଲେ ।

ଦୁର୍ଯ୍ୟୋଧନ ଅର୍ଜ୍ଜୁନଙ୍କୁ ସେତେବେଳ ଯାଏ ମଧ୍ୟ ଚିହ୍ନି ପାରି ନ ଥାନ୍ତି । ବ୍ରାହ୍ମଣଙ୍କୁ ପ୍ରଚୁର ଧନ ଦେଇ କନ୍ୟାକୁ ତାଠାରୁ ନେଇ ଆସିବାକୁ

ସେ ଶକୁନକୁ ପଠାଇଲେ । ଶକୁନ ଆସି ଛଦ୍ମବେଶୀ ଅର୍ଜ୍ଜୁନଙ୍କୁ ମହାରାଜ ଦୁର୍ଯ୍ୟୋଧନଙ୍କର ଇଚ୍ଛା ଜଣାଇଲେ । ଅର୍ଜ୍ଜୁନ ବ୍ୟଙ୍ଗ କରି କହିଲେ ଯେ ଧନ ତାଙ୍କର ତ ଦରକାର ନାହିଁ । ମହାରାଜ ଦୁର୍ଯ୍ୟୋଧନ ଯଦି ଧନ ଚାହାନ୍ତି ତେବେ ତାଙ୍କର ରାଣୀ ଭାନୁମତୀଙ୍କୁ କାହାକୁ ଦେଇ ତା ଠାରୁ ପ୍ରଚୁର ଧନ ନେଇପାରନ୍ତି । ଏହାଶୁଣି ଅନ୍ୟ ରାଜାମାନେ ହସିଉଠିଲେ । ଦୁର୍ଯ୍ୟୋଧନଙ୍କୁ ଭାରି ଅପମାନ ହେଲା । ବ୍ରାହ୍ମଣଙ୍କୁ ମାରି କନ୍ୟାକୁ ଛଡ଼ାଇ ଆଣିବାକୁ ସେ ଦୁଃଶାସନକୁ ଆଦେଶ ଦେଲେ । ଦୁଃଶାସନ ରେ ରେ କାର କରି ଉଠିଲେ । ଜରାସନ୍ଧ, ଶିଶୁପାଳ ଆଦି ଦୁଷ୍ଟ ରାଜାମାନେ ତାଙ୍କ ସଙ୍ଗରେ ଯୋଗ ଦେଲେ । ଏହା ଦେଖି ଧୃଷ୍ଟଦ୍ୟୁମ୍ନ ନିଜର ସୈନ୍ୟ ସାମନ୍ତ ଧରି ସେମାନଙ୍କର ପ୍ରତିରୋଧ କଲେ ।

ଏହି ଗୋଳମାଳ ମଧ୍ୟରେ ଦ୍ରୌପଦୀ ଛଦ୍ମବେଶୀ ଅର୍ଜ୍ଜୁନଙ୍କୁ କହିଲେ, "ସ୍ୱାମି, ଆପଣ ଏକାକୀ ଏତେ ରାଜାଙ୍କର ସମ୍ମୁଖୀନ ହେବା ଅସମ୍ଭବ । ଚାଲନ୍ତୁ, ଶୀଘ୍ର ଏ ସ୍ଥାନ ପରିତ୍ୟାଗ କରି ଉଆସକୁ ଚାଲିଯିବା ।" ଅର୍ଜ୍ଜୁନ କହିଲେ "ଦେଖ, ତୁମେ ଧୈର୍ଯ୍ୟ ଧର । ଧନୁ ଧରିଲେ ମୁଁ ଏକାକୀ ଏ ସମସ୍ତଙ୍କୁ ପରାସ୍ତ କରି ଦେଇ ପାରିବି । ପୁଣି ମୋର ଜଣେ ବଡ଼ ଭାଇ ଏଠାରେ ଅଛନ୍ତି । ସେ ଚାହିଁଲେ ସୈନ୍ୟ ସାମନ୍ତ ସହିତ ଲକ୍ଷେ ରାଜାଙ୍କୁ ମାରି ଶୁଆଇ ଦେବେ ।"

ଅର୍ଜ୍ଜୁନ ଏହା କହୁ କହୁ ଯୁଧିଷ୍ଠିରଙ୍କ ଆଦେଶ ପାଇ ଭୀମ, ପାଖରୁ ଏକ ଗଛ ଉପାଡ଼ି ଶତ୍ରୁମାନଙ୍କୁ ପିଟିଦେଇ ଗଲେ । କେତେ ମଲେ, କେତେ ଛିନ୍ନ ଭିନ୍ନ ହୋଇ ପଳାଇଲେ । ଯୁଧିଷ୍ଠିର ଭୀମଙ୍କର ଧ୍ୱଂସ ଲୀଳା ଦେଖି ପଛରେ ବଡ଼ ପସ୍ତାଇଲେ । କାଳେ ଭୀମ କୌରବ ଭାଇମାନଙ୍କୁ ମାରି ଦେବ ଏହି ଆଶଙ୍କାରେ ଯୁଧିଷ୍ଠିର ଭୀମଙ୍କୁ ଫେରାଇ ଆଣିବାକୁ ନକୁଳକୁ ପଠାଇଲେ । ପୁଣି ପଛରେ ସହଦେବଙ୍କୁ ପଠାଇଲେ । ମାତ୍ର ବନବାସ କଷ୍ଟକୁ ମନେ ପକାଇ ସମସ୍ତେ ରାଗରେ କୌରବ ଆଦି ସଙ୍ଗେ ଯୁଦ୍ଧରେ ମାତି ଗଲେ । ଏତିକି ବେଳେ ଭୀମ ଦୁଃଶାସନକୁ ମାରି ମାରି ଦରମରା କରି ପକାଇ ତାର ଚୁଟି ଧରି ଟାଣି ଆଣି ଅର୍ଜ୍ଜୁନ ଓ ଦ୍ରୌପଦୀ ଥିବା ସ୍ଥାନରେ ପକାଇ ଦେଲେ । ତା ପରେ ତା ବେକ ଧରି ମୋଡ଼ି

ଦେବାକୁ ଗଲା ବେଳକୁ ଅର୍ଜ୍ଜୁନ ବାରଣ କଲେ । ସେ ଭୀମଙ୍କର ମନେ ପକାଇ ଦେଲେ ଯେ ଏହାକୁ ପ୍ରାଣରେ ମାରି ଦେବାକୁ ବଡ ଭାଇଙ୍କର ଆଦେଶ ନାହିଁ ; ଭୀମ ଦୁଃଶାସନକୁ ନିଜର ଜାନୁ ତଳେ ଚଗାଇ ଛାଡ଼ି ଦେଲେ । ସେତେବେଳକୁ ଅଧା ଅଧି କୌରବ ସୈନ୍ୟ ମରି ସାରି ଥାନ୍ତି । ଦୁର୍ଯ୍ୟୋଧନ ଏ ଦୃଶ୍ୟ ଦେଖି ବଡ ହତାଶ ହୋଇ ନିଜର ଅବଶିଷ୍ଟ ସୈନ୍ୟ ମାନଙ୍କୁ ଧରି ପଳାଇ ଗଲେ । ତା ପରେ ବାଣାସୁର, ଜରାସନ୍ଧ, ଶିଶୁପାଳ ପ୍ରଭୃତି ରାଜାମାନେ ବହୁତ ଯୁଦ୍ଧ କଲେ । ମାତ୍ର ଭୀମ ଅର୍ଜ୍ଜୁନଙ୍କ ଆଗରେ କେହି ତିଷ୍ଠି ପାରିଲେ ନାହିଁ । ସମସ୍ତେ ଛତ୍ରଭଙ୍ଗ ଦେଇ ପଳାଇ ଗଲେ ।

ଭୀମ ପ୍ରସ୍ତାବ କଲେ ଯେ ଏଥର ଦ୍ରୌପଦୀଙ୍କୁ ସଙ୍ଗରେ ନେଇ ଦ୍ରୁପଦଙ୍କ ନଅରକୁ ଯିବା । ମାତ୍ର ଯୁଧିଷ୍ଠିର କହିଲେ, "କୁମ୍ଭାର ଶାଳରେ ମା ଅଛନ୍ତି, ଆମେ ସେହିଠାକୁ ଫେରିଯିବା" । କୁମ୍ଭାର ଶାଳରେ ପହଞ୍ଚି ପ୍ରଥମେ ଯୁଧିଷ୍ଠିର ମା'ଙ୍କୁ କହିଲେ "ମା, ଆଜି ଆମକୁ ଗୋଟିଏ ବଡ ସୁସ୍ୱାଦୁ ଫଳ ମିଳିଛି ।" ମା କହିଲେ, "ଭଲ ହେଲା; ଯଦି ପାଇଛ ତେବେ ପାଞ୍ଚଭାଇ ବାଣ୍ଟି କରି ଖାଅ ।" ଭୀମ ହସିକରି କହିଲେ "ମା, ସେତ ଫଳ ନୁହେଁ, ଦ୍ରୁପଦ ରାଜାଙ୍କ କନ୍ୟା ଦ୍ରୌପଦୀଙ୍କୁ ଆମେ ସ୍ୱୟମ୍ବରରେ ଜିଣି ଆଣିଛୁ ।" କୁନ୍ତୀ କହିଲେ "ତେବେ ମୋ ମୁହଁରୁ ଏପରି କଥା ବାହାରିଲା କାହିଁକି ? ଏହା ବୋଧ ହୁଏ ଦୈବ ଇଚ୍ଛା । ପାଞ୍ଚ ଭାଇ ଯାକ ଦ୍ରୌପଦୀଙ୍କୁ ପ୍ରାପ୍ତ ହୁଅ ।" ।

ଯୁଦ୍ଧ ଗୋଳ ଭାଜିଲା ପରେ ଦ୍ରୁପଦ ଲକ୍ଷେ ନିଆଁ ହୁଳା ଜଳାଇ ବଡ଼ ଆକୁଳ ମନରେ ଦ୍ରୌପଦୀଙ୍କୁ ଖୋଜି ବାହାରିଲେ । ଘୋର ରାତି କାଳରେ ଚଣ୍ଡୀ, ଚାମୁଣ୍ଡା, ଭୂତ, ପ୍ରେତ ଯୁଦ୍ଧ ଭୂମିରେ ହେହ ହେହ ହସି ନାଚୁ ଥାନ୍ତି । ଦ୍ରୁପଦଙ୍କ ଲୋକମାନେ ମହା ଭୟ ପାଇ ଆଉ ଆଗେଇବାକୁ ନାସ୍ତି କଲେ । ଦ୍ରୁପଦ ଯୋଡ଼ ହସ୍ତ ହୋଇ ମା' ଦୁର୍ଗାଙ୍କୁ ସ୍ତୁତି କଲେ । ଦେଖୁ ଦେଖୁ ଚଣ୍ଡୀ ଚାମୁଣ୍ଡା ସମସ୍ତେ ଅନ୍ତର୍ଦ୍ଧାନ ହୋଇ ଗଲେ ।

ଦ୍ରୁପଦ, ଦ୍ରୌପଦୀଙ୍କୁ ଖୋଜି ଖୋଜି ଯାଇ କୁମ୍ଭାର ଶାଳରେ ପହଞ୍ଚିଲେ । ସେଠାରେ ପଞ୍ଚୁପାଣ୍ଡବ ଓ କୁନ୍ତୀଙ୍କ ସହିତ ଦ୍ରୌପଦୀ ଶୋଇ ଥିବାର ଦେଖି ଧୃଷ୍ଟଦ୍ୟୁମ୍ନ ଭାବିଲେ ବୋଧ ହୁଏ କୌଣସି ଦୁଷ୍ଟ ଦାନବ

ଦାନ ଦ୍ରୌପଦୀଙ୍କୁ ବଳାତ୍କାରରେ ଆଣି ଏଠାରେ ରଖିଛୁ । ଏମାନଙ୍କ ଘୁଙ୍ଗୁଡ଼ି ଶବ୍ଦରେ ସେ ସ୍ଥାନଯେପରି କମ୍ପୁଥାଏ, ସେଥିରୁ ସେମାନଙ୍କୁ ଦାନବ ବୋଲି ଭାବିବା କିଛି ବିଚିତ୍ର ନୁହେଁ ।

ଧୃଷ୍ଟଦ୍ୟୁମ୍ନ ସଙ୍ଗେ ସଙ୍ଗେ ଖଣ୍ଡା ବାହାର କରି ଶୋଇବା ଅବସ୍ଥାରେ ସେମାନଙ୍କୁ ହାଣି ଦେବାକୁ ବାହାରିଲେ । ମାତ୍ର ସ୍ୱୟମ୍ବରବେଳେ ଦ୍ରୌପଦୀଙ୍କ ସାଥୀରେ ଥିବା ସଖୀ କେଶିନୀ ତାଙ୍କୁ ବାରଣ କରି କହିଲା ଯେ ଯୁଦ୍ଧ ସମୟରେ ଏମାନଙ୍କ ଦେହରେ ଗଦା, ମୁଦ୍‌ଗର ଏପରିକି ପର୍ବତ ପଡ଼ି ଚୂନା ହୋଇ ଯିବାର ସେ ଦେଖିଛି । ତେଣୁ ଖଣ୍ଡାରେ ହାଣିଲେ ଖଣ୍ଡାତ ଭାଙ୍ଗିଯିବ । ତା ସଙ୍ଗେ ସଙ୍ଗେ ମାରିବା ଲୋକର ନିଶ୍ଚୟ ମୃତ୍ୟୁ ହେବ । ଦ୍ରୁପଦ ମଧ୍ୟ ଚିହ୍ନିଲେ ଯେ ଏମାନେ ସେହି ପଞ୍ଚ ବ୍ରାହ୍ମଣ ଯେଉଁମାନଙ୍କ ମଧ୍ୟରୁ ଜଣେ ଲକ୍ଷ ବିନ୍ଧିଥିଲା । ଲକ୍ଷେ ରାଜାଙ୍କୁ ହରାଇଥିବା ଏ ପାଞ୍ଚ ଜଣ ଯେ ସାମାନ୍ୟ ଲୋକ ନୁହନ୍ତି ଏହା କହି ଦ୍ରୁପଦ ମଧ୍ୟ ସେମାନଙ୍କ ସଙ୍ଗେ ଶତ୍ରୁତା କରିବାକୁ ବାରଣ କଲେ ଏବଂ ସେମାନଙ୍କର ନିଦ୍ରା ଭଙ୍ଗ ପର୍ଯ୍ୟନ୍ତ ନୀରବରେ ଅପେକ୍ଷା କରି ରହିବାକୁ ସ୍ଥିର କଲେ ।

ମାତ୍ର ଧୃଷ୍ଟଦ୍ୟୁମ୍ନ, କୁମ୍ଭାର ଶାଳର ପାଉଁଶ ଉପରେ ଶୋଇ ଯାଇଥିବା ନିଜ ଅଲିଅଳୀ ଭଉଣୀର ଏ ଦୁଃଖ କଷ୍ଟ ସହି ନ ପାରି ଛଦ୍ମବେଶୀ ପାଣ୍ଡବ ମାନଙ୍କୁ ଗାଳି ଦେବାକୁ ଲାଗିଲେ । କେଶିନୀ ତାଙ୍କୁ ବୁଝାଇଲେ ଯେ ଏ ମହାତ୍ମାମାନଙ୍କୁ ଏପରି ଭାବରେ ଗାଳି ଦେବା ଉଚିତ୍ ନୁହେଁ । ଦେବତା, ଦେବ ତୁଲ୍ୟ ମହତ୍ ଲୋକ, ଏମାନଙ୍କୁ ନିନ୍ଦା କଲେ ନର୍କ ଭୋଗ ହୁଏ । ବିଶେଷତଃ ସେମାନଙ୍କର ଅଗୋଚରରେ ଗାଳିଦେବା ବା ନିନ୍ଦା କରିବା ଅତ୍ୟନ୍ତ ଗର୍ହିତ ପାପ । ବ୍ରାହ୍ମଣ ନିନ୍ଦା କଲେ ବଂଶ ବୁଡ଼େ । ତପସ୍ୱୀଙ୍କୁ ନିନ୍ଦା କଲେ ଶରୀରରେ ଦୁରାରୋଗ୍ୟ ବ୍ୟାଧି ହୁଏ । ସତୀଙ୍କୁ ନିନ୍ଦା କଲେ ମନୁଷ୍ୟ ନପୁଂସକ ହୁଏ । ଗୁରୁ ନିନ୍ଦା କଲେ ମୂର୍ଖ ହୋଇ ପରେ ଶିରଚ୍ଛେଦ ହୁଏ । ମାତା ପିତା ନିନ୍ଦା କଲେ ଘୋର ବିପଦ ପଡ଼େ । ବୈଦ୍ୟ ନିନ୍ଦା କଲେ ଲୋକ ଚିର ରୋଗୀ ହୁଏ । ଶସ୍ତ୍ର ନିନ୍ଦା କଲେ ଯୁଦ୍ଧରେ ପରାଜୟ ହୁଏ । ଶାସ୍ତ୍ର ନିନ୍ଦା କଲେ ଗଳିତ କୁଷ୍ଠ ବ୍ୟାଧି ହୁଏ । ଲକ୍ଷ୍ମୀ ନିନ୍ଦା କଲେ ଦାରିଦ୍ର୍ୟ ହୁଏ । ସ୍ତ୍ରୀ ନିନ୍ଦା କଲେ ଗୃହ ବାସ ଭଗ୍ନ ହୁଏ ।

ତେଣୁ ମହତ୍ ଜନଙ୍କୁ ନିନ୍ଦା କରିବା ଉଚିତ ନୁହେଁ । କିଛି ସମୟ ପରେ ପାଣ୍ଡବ ମାନଙ୍କର ନିନ୍ଦା ଭଙ୍ଗ ହେଲା । ଦ୍ରୁପଦ ଯେତେବେଳେ ଜାଣିଲେ ଯେ ସେମାନେ ପାଣ୍ଡବ ଓ ଯେ ଲକ୍ଷ ବିନ୍ଧିଛନ୍ତି ସେ ସ୍ୱୟଂ ଅର୍ଜୁନ ସେତେବେଳେ ତାଙ୍କର ଆନନ୍ଦର ସୀମା ରହିଲା ନାହିଁ । ସେ ମହା ସମାରୋହରେ ସେମାନଙ୍କୁ ରାଜ ନଅରକୁ ନେଇ ଗଲେ ।

## ଦ୍ରୌପଦୀ ବିବାହ

ମାତାଙ୍କ ନିର୍ଦ୍ଦେଶରେ ପାଞ୍ଚ ଭାଇ ଯାକ ଦ୍ରୌପଦୀଙ୍କୁ ବିବାହ କରିବେ ବୋଲି ଶୁଣି ଦ୍ରୁପଦ ଚିନ୍ତାରେ ପଡ଼ିଲେ । ଗୋଟିଏ କନ୍ୟାର ପାଞ୍ଚ ଜଣ ସ୍ୱାମୀ ହେବେ କିପରି ? ଦ୍ରୁପଦ ଏ ସମସ୍ୟାରେ ପଡ଼ି ବ୍ୟାସଦେବଙ୍କୁ ସ୍ମରଣ କଲେ । ବ୍ୟାସଦେବ ଆସି ଦ୍ରୁପଦଙ୍କୁ ସାନ୍ତ୍ୱନା ଦେଇ କହିଲେ ଯେ ପୂର୍ବ ଜନ୍ମର ବିଧାନ ଅନୁସାରେ ଏ ଜନ୍ମରେ ଦ୍ରୌପଦୀଙ୍କର ପାଞ୍ଚ ସ୍ୱାମୀ ହେବାର କଥା । ତେଣୁ ସେଥିପାଇଁ ମନରେ କୌଣସି ଦ୍ୱିଧା କରିବା ଉଚିତ୍ ନୁହେଁ । ଏହା କହି ସେ ଦ୍ରୌପଦୀଙ୍କର ପୂର୍ବ ଜନ୍ମ ବୃତ୍ତାନ୍ତ ପ୍ରକାଶ କଲେ ।

ପ୍ରଳୟ କାଳରେ ବିଷ୍ଣୁ ଅନନ୍ତ ଶୟନରେ ଥିବା ସମୟରେ ଅମୃତ ନୟନରେ ଚାହିଁବାରୁ ପ୍ରଳୟ ଜଳ ମଧ୍ୟରୁ ପନ୍ଦର ଜଣ ବ୍ରହ୍ମା ଜାତ ହେଲେ । ସେମାନେ, ବିଷ୍ଣୁଙ୍କ ପାଦ ନିକଟରେ ବସିଥିବା ସରସ୍ୱତୀଙ୍କ ପ୍ରତି କାମ-କଟାକ୍ଷ ପାତ କରିବାରୁ ସରସ୍ୱତୀ କ୍ରୁଦ୍ଧ ହୋଇ ନିଜ ଅଙ୍ଗରୁ କେତୁକା ନାମରେ ଏକ ଦେବୀଙ୍କୁ ସୃଷ୍ଟି କରି ପନ୍ଦର ଜଣ ଯାକ ବ୍ରହ୍ମାଙ୍କୁ ମାରିବାକୁ ନିର୍ଦ୍ଦେଶ ଦେଲେ । କେତୁକା, ଚଉଦ ବ୍ରହ୍ମାଙ୍କୁ ମାରି ସାରି ଶେଷ ବ୍ରହ୍ମାଙ୍କୁ ମାରିବାକୁ ଗୋଡ଼ାଇବାରୁ ସେ ଭୟରେ ବିଷ୍ଣୁଙ୍କ ଶରଣ ପଶିଲେ । ବିଷ୍ଣୁଙ୍କ ଅନୁରୋଧରେ କେତୁକା ତାଙ୍କୁ ଛାଡ଼ି ଦେଲେ । ମାତ୍ର ପରେ ସରସ୍ୱତୀଙ୍କଠାରୁ ତାଙ୍କର ଦୁଷ୍କର୍ମ ବିଷୟ ଶୁଣି ବିଷ୍ଣୁ କହିଲେ ଯେ ଦ୍ୱାପର ଯୁଗରେ ଏହି ବ୍ରହ୍ମା ଦୁଃଶାସନ ରୂପେ ଜନ୍ମ ହେବେ । କେତୁକା ଦ୍ରୌପଦୀ ରୂପେ ଜନ୍ମ ହୋଇ ତାଙ୍କର ରକ୍ତ ପାନ କରିବେ ।

ତା ପରେ ଅନ୍ୟ ଏକ ଜନ୍ମରେ କେତୁକା ଇନ୍ଦ୍ର ପତ୍ନୀ ଶଚୀ ହୋଇ ଜନ୍ମ ହେଲେ । ଇନ୍ଦ୍ର, ତ୍ୱଷ୍ଟା ମୁନିଙ୍କର ଦୁଇ ପୁତ୍ରଙ୍କୁ ବିନାଶ କରି

ଥିବାରୁ ତ୍ୱଷ୍ଟାମୁନି କ୍ରୋଧରେ ଇନ୍ଦ୍ରଙ୍କୁ ଶାପ ଦେଇ ଭସ୍ମ କରିଦେଲେ । ଇନ୍ଦ୍ରଙ୍କର ପଞ୍ଚ ଆତ୍ମା ପାଞ୍ଚ ଠାବରେ ଲୀନ ହେଲା । ଶଚୀ ବିଧବା ହୋଇ ମହାଦେବଙ୍କୁ ତପସ୍ୟା ଦ୍ୱାରା ସନ୍ତୁଷ୍ଟ କଲେ । ମହାଦେବ ବର ଦେବା ପାଇଁ ଶଚୀଙ୍କ ଆଗରେ ଉଭା ହେବାରୁ ଶଚୀ ତାଙ୍କୁ "ପତିଂ ଦେହି" ବୋଲି ପାଞ୍ଚ ଥର କହିଲେ । ମହାଦେବ ଏହି ବର ଦେଲେ ଯେ ତାଙ୍କ ପତିଙ୍କର ପଞ୍ଚ ଆତ୍ମା ପାଞ୍ଚଠାବରୁ ବିଭିନ୍ନ ଦେବ ଅଂଶରେ ମର୍ତ୍ତ୍ୟରେ ଜାତ ହେବେ ଏବଂ ଶଚୀ ଦ୍ରୌପଦୀ ରୂପେ ଜାତ ହୋଇ ପାଞ୍ଚ ଜଣଙ୍କୁ ପତି ରୂପେ ପ୍ରାପ୍ତ ହେବେ ।

ବ୍ୟାସଦେବଙ୍କଠାରୁ ଦ୍ରୌପଦୀଙ୍କର ପୂର୍ବ ଜନ୍ମ ବୃତ୍ତାନ୍ତ ଶୁଣି ଦ୍ରୁପଦ ଆଦି ସମସ୍ତଙ୍କ ମନରୁ ସବୁ ସନ୍ଦେହ ଦୂର ହୋଇଗଲା । ତେଣିକି ମହା ସମାରୋହରେ ବିବାହ ଉତ୍ସବ ନିମିତ୍ତ ବିପୁଳ ଆୟୋଜନ ଚାଲିଲା । ଦ୍ୱାରକାରୁ ଶ୍ରୀକୃଷ୍ଣ ବଳରାମ ଓ ଅନ୍ୟାନ୍ୟ ବହୁ ଦେଶରୁ ରାଜାମାନେ ନିମନ୍ତ୍ରିତ ହୋଇ ଆସିଲେ । ପାଣ୍ଡବଙ୍କପରି ଜାମାତା ପାଇ ଥିବାରୁ ସମସ୍ତେ ଦ୍ରୁପଦଙ୍କ ଭାଗ୍ୟକୁ ବହୁତ ପ୍ରଶଂସା କଲେ । ବିବାହ ଉତ୍ସବର ଶେଷରେ ଶ୍ରୀକୃଷ୍ଣ ବଳରାମ ଦ୍ୱାରକା ଫେରିଗଲାବେଳେ ବାଟରେ ରାଜା ଧୃତରାଷ୍ଟ୍ରଙ୍କୁ ପାଣ୍ଡବମାନଙ୍କର ବିବାହ ସମ୍ବାଦ ଦେଇ ଗଲେ । ଆଉ ମଧ୍ୟ ଏହା କହିଗଲେ ଯେ ଧୃତରାଷ୍ଟ୍ର ନିଜେ ଯାଇ ପାଣ୍ଡବମାନଙ୍କୁ ଆଦର କରି ନେଇ ଆସନ୍ତୁ । ଏଣିକି କୌରବ, ପାଣ୍ଡବ ଭାଇମାନେ ମିଳିମିଶି ପରସ୍ପର ମଧ୍ୟରେ ସ୍ନେହ ଶ୍ରଦ୍ଧା ରଖି ଚଳନ୍ତୁ । ଏହା ଉଭୟଙ୍କ ପକ୍ଷରେ ମଙ୍ଗଳକର ହେବ ।

ଧୃତରାଷ୍ଟ୍ରଙ୍କ ମନକୁ ଏହା ପାଇଲା । ମାତ୍ର ଦୁର୍ଯ୍ୟୋଧନ ଏ ପ୍ରସ୍ତାବରେ ରାଜି ହେଲେ ନାହିଁ । ସେ କହିଲେ, "ଆମେ ସିନା ପାଣ୍ଡବଙ୍କୁ ଚିହ୍ନି ପାରିଲୁ ନାହିଁ, ମାତ୍ର ସେମାନେ ଆମକୁ ଚିହ୍ନି ମଧ୍ୟ ଏତେ ଦୂର ମାରଧର କଲେ । ସେମାନଙ୍କ ସଙ୍ଗରେ ଆଉ ମିଳାମିଶା କପରି ସମ୍ଭବ ?" ପିତାମହ ଭୀଷ୍ମ ବୁଝାଇଲେ, "ଦେଖ ଦୁର୍ଯ୍ୟୋଧନ, ତୁମେ ସେମାନଙ୍କୁ ବରାବର ଶତ୍ରୁ ରୂପେ ଦେଖିଲେ ମଧ୍ୟ ସେମାନେ ତୁମ ପ୍ରତି ଅନୁରୂପ ବ୍ୟବହାର କେବେ ହେଲେ କରି ନାହାନ୍ତି । ବରଂ ଅଜ୍ଞାତରେ ବହୁବାର ତୁମମାନଙ୍କୁ ମୃତ୍ୟୁ ମୁଖରୁ ଉଦ୍ଧାର କରିଛନ୍ତି । ଏହା ତୁମେ ଅସ୍ୱୀକାର କରି ପାରିବ

ନାହିଁ । ସ୍ୱୟମ୍ବର ସଭାରେ ତୁମେମାନେ ହିଁ ପ୍ରଥମେ ଗୋଳମାଳ ଆରମ୍ଭ କଲ । ସେମାନେ ଯଦି ଜିଗୀଷାରେ ଗୁରୁତ୍ତ ଯୁଦ୍ଧ କରିଥାନ୍ତେ ତେବେ ତୁମ ମାନଙ୍କ ମଧ୍ୟରୁ କେହି ଜଣେ ହେଲେ ଜୀବନ ଧରି ଫେରି ନ ଥାନ୍ତେ । ତୁମେମାନେ ଯେତେ ଦୋଷ କଲେ, ସେମାନଙ୍କୁ ଯେତେ ଦୋଷ ଦେଲେ ମଧ୍ୟ ଯୁଧିଷ୍ଠିର ତୁମମାନଙ୍କ ପ୍ରତି ସ୍ନେହଶୀଳ । ତାଙ୍କ ପରି କ୍ରୋଧ ଶୂନ୍ୟ କ୍ଷମାଶୀଳ ବ୍ୟକ୍ତି ଏ ସଂସାରରେ ଦୁର୍ଲ୍ଲଭ । ପୁଣି ମନେକର, ତୁମେ ମାନେ ତାଙ୍କୁ ନ ପଚାରିବ କମ୍ବା ପାଞ୍ଚାଳ ଦେଶ ଯାଇ ଡାକି ନ ଆଣିବ ଏହା ଦ୍ୱାରା ସେମାନଙ୍କର ଆସିବା ବନ୍ଦ ହୋଇଯିବ କି ? ସେମାନେ ଇଚ୍ଛା କଲେ କଣ ବଳେ ଆସି ପାରିବେ ନାହିଁ ? ତେଣୁ ମୁଁ ଗୁରୁଜନ ରୂପେ ଏହି ପରାମର୍ଶ ଦେଉଛି ଯେ ତୁମେ ବରଂ ନିଜେ ଯାଇ ଭାଇ ହିସାବରେ ଆଦର ଗୌରବ କରି ସେମାନଙ୍କୁ ପାଛୋଟି ଆଣ ।

ଭୀଷ୍ମଦେବଙ୍କର ସତ୍ ପରାମର୍ଶ ଶେଷରେ ଦୁର୍ଯ୍ୟୋଧନଙ୍କ ମନକୁ ଛୁଇଁଲା । ସେ ପାଣ୍ଡବମାନଙ୍କୁ ଫେରାଇ ଆଣିବା ପାଇଁ ଚତୁରଙ୍ଗ ବଳ ସଜ କରି ବାହାରିଲେ । ସ୍ୱୟଂ ଧୃତରାଷ୍ଟ୍ର ମଧ୍ୟ ସଙ୍ଗରେ ଗଲେ । ଦ୍ରୁପଦ ରାଜା ସେମାନଙ୍କୁ ବହୁତ ଆଦର ଗୌରବର ସହିତ ସ୍ୱାଗତ କଲେ । କୌରବ ଓ ପାଣ୍ଡବମାନଙ୍କ ମଧ୍ୟରେ ପରମ ପ୍ରୀତି ପ୍ରତିଷ୍ଠିତ ହେଲା । ସମସ୍ତେ କିଛି ଦିନ ଦ୍ରୁପଦଙ୍କର ଆତିଥ୍ୟ ଗ୍ରହଣ କରି ସୈନ୍ୟ ସାମନ୍ତ ସହିତ ହସ୍ତିନାକୁ ଫେରି ଆସିଲେ । ପାଣ୍ଡବମାନେ ଇନ୍ଦ୍ରପ୍ରସ୍ଥରେ ଏକ ଅତି ସୁରମ୍ୟ ଅଟ୍ଟାଳିକା ନିର୍ମାଣ କରି ତହିଁରେ ମାତା ଓ ଭାର୍ଯ୍ୟା ଦ୍ରୌପଦୀଙ୍କ ସହିତ ଆନନ୍ଦରେ ବାସ କଲେ । ଦୀର୍ଘ କାଳ ପରେ କୌରବ ଓ ପାଣ୍ଡବଙ୍କ ମଧ୍ୟରେ ଏହି ସୁସମ୍ପର୍କ ପ୍ରତିଷ୍ଠା ଦ୍ୱାରା ସମସ୍ତେ ଆନନ୍ଦିତ ହେଲେ । ଏକମାତ୍ର ଯେଉଁ ଜଣକ ଆନନ୍ଦିତ ହେଲେ ନାହିଁ ସେ ହେଉଛନ୍ତି ମାତୁଳ ଶକୁନି ।

—*—



# ମ ହା ଭା ର ତ

ସାରଳା

୧୬ଶ ଅଧ୍ୟାୟ

## ଅର୍ଜୁନ ବନବାସ ।

ପାଣ୍ଡବମାନେ ମା' କୁନ୍ତୀ ଓ ଭାର୍ଯ୍ୟା ଦ୍ରୌପଦୀଙ୍କ ସହିତ ଆନନ୍ଦରେ ଇନ୍ଦ୍ରପ୍ରସ୍ଥରେ ବାସ କଲେ । ପାଞ୍ଚଭାଇ ମଧ୍ୟରୁ ପ୍ରତିଦିନ ଜଣେ ଲେଖାଏଁ ଦ୍ରୌପଦୀଙ୍କ ପୁରକୁ ଯାଆନ୍ତି । ଦ୍ରୌପଦୀ ଅଗ୍ନି ସମ୍ଭବା । ଯଜ୍ଞ କୁଣ୍ଡରୁ ତାଙ୍କର ଜନ୍ମ । ତେଣୁ ଅଗ୍ନି ତାଙ୍କ ଶରୀରର କୌଣସି କ୍ଷତି କରିପାରେ ନାହିଁ । ସେ ପ୍ରତିଦିନ ଅଗ୍ନିରେ ସ୍ନାନ କରି ଶୁଦ୍ଧ ନୂତନ ଶରୀର ଧାରଣ କରନ୍ତି । ଏହି କାରଣରୁ ପଞ୍ଚସ୍ୱାମୀଙ୍କର ପତ୍ନୀ ହୋଇମଧ୍ୟ ସେ ମହାସତୀ ବୋଲି ପୁରାଣରେ ବିଖ୍ୟାତ ।

ତେବେ ଭୀମଙ୍କ ଯୋଗୁ ପ୍ରତିଦିନ ଚଳାଚଳରେ କେତେକ ଅସୁ-ବିଧା ଲକ୍ଷିତ ହେଲା । ଭୀମଙ୍କର ତ ସବୁବେଳେ ଆହାର, ସଂଗ୍ରାମ ଏବଂ ଶୃଙ୍ଗାରରେ ଅତୃପ୍ତି । ନବବିବାହିତ ତରୁଣ ଯେପରି ସବୁବେଳେ ଘରଜାଈର ସାନ୍ନିଧ୍ୟ ଇଚ୍ଛାକରେ ସେହିପରି ଭୀମ ଦ୍ରୌପଦୀଙ୍କୁ ସବୁସମୟରେ ପାଇବାକୁ ଆଶାକଲେ । ତେଣୁ ଶୃଙ୍ଖଳିତ ଜୀବନ ଯାପନ ପାଇଁ ଭାଇ-ମାନଙ୍କ ମଧ୍ୟରେ ସ୍ଥିର ହେଲାଯେ, ଜଣେ ଦ୍ରୌପଦୀଙ୍କ ପୁରରେ ଥିବା ସମୟରେ ଅନ୍ୟଜଣେ କଦାପି ଯିବେ ନାହିଁ । ଯଦି ଯାଆନ୍ତି ତେବେ ସେ ବାର ବର୍ଷ ବନବାସ କରିବେ । ଏଥିପାଇଁ ଯୁଧିଷ୍ଠିରଙ୍କର ପାଦୁକା

ଭୀମଙ୍କର ଗଦା, ଅର୍ଜ୍ଜୁନଙ୍କର ଧନୁ, ନକୁଳଙ୍କର କୁନ୍ତ, ଏବଂ ସହଦେବଙ୍କର ଖଣ୍ଡା ସନ୍ତକ ରହିଲା । ପ୍ରତ୍ୟେକ ନିଜ ନିଜର ସନ୍ତକକୁ ବାହାରେ ରଖି ଦ୍ରୌପଦୀଙ୍କ ପୁରକୁ ଯିବେ, ଏହା ସ୍ଥିର ହେଲା ।

ଦିନେ ଜଣେ ମହାତେଜସ୍ୱୀ ବ୍ରାହ୍ମଣ ଆସି ଅର୍ଜ୍ଜୁନଙ୍କ ଆଗରେ ଉପସ୍ଥିତହେଲେ ଓ ଆଦେଶ ଦେଲେ ଯେ, ଅର୍ଜ୍ଜୁନ ଶୀଘ୍ର ଭିତରକୁ ଯାଇ ଯୁଧିଷ୍ଠିରଙ୍କୁ ତାଙ୍କ ପାଖକୁ ଡାକି ଆଣନ୍ତୁ । ନଚେତ୍ ସେ ଅଭିଶାପ ଦେଇ ସମସ୍ତଙ୍କୁ ଧ୍ୱଂସ କରିଦେବେ । ଯୁଧିଷ୍ଠିର ସେତେବେଳକୁ ଦ୍ରୌପଦୀଙ୍କ ପୁରରେ ଥିଲେ । ଅର୍ଜ୍ଜୁନ ଭାବିଲେ, ସେ ବରଂ ଯୁଧିଷ୍ଠିରଙ୍କୁ ଡାକିବାକୁ ଯାଇ ବାରବର୍ଷ ବନବାସ କରିବେ, କିନ୍ତୁ ବ୍ରାହ୍ମଣର ଅଭିଶାପରେ ସମସ୍ତଙ୍କୁ ଧ୍ୱଂସ ହେବାକୁ ଦେବେନାହିଁ । ଏହା ଭାବି ଅର୍ଜ୍ଜୁନ ଅଗତ୍ୟା ଦ୍ରୌପଦୀପୁରରେ ପଶି ଯୁଧିଷ୍ଠିର ଓ ଦ୍ରୌପଦୀଙ୍କ ଶୃଙ୍ଗାର ସ୍ୱଚକ୍ଷୁରେ ଦେଖିଲେ । ଯୁଧିଷ୍ଠିର ଓ ଦ୍ରୌପଦୀ ଅତ୍ୟନ୍ତ ଲଜ୍ଜିତ ହୋଇ କାରଣ ପଚାରନ୍ତେ ଅର୍ଜ୍ଜୁନ ପ୍ରକୃତ ଘଟଣା କହିଲେ । ମାତ୍ର ବାହାରକୁ ଆସି ବ୍ରାହ୍ମଣଙ୍କୁ ଖୋଜିଲା ବେଳକୁ ବ୍ରାହ୍ମଣ ଅନ୍ତର୍ଦ୍ଧାନ । ଏପରିକି ଯୁଧିଷ୍ଠିରଙ୍କ ସନ୍ତକ ପାଦୁକା ମଧ୍ୟ ଯଥା ସ୍ଥାନରେ ନାହିଁ ।

ସହଦେବଙ୍କୁ ଏ ସବୁ ଘଟଣାର କାରଣ ପଚରା ଗଲା । ସହଦେବ ନିଜର କରତଳକୁ ଚାହିଁ କହିଲେ ଯେ ସତ୍ୟଯୁଗରେ ବହୁତ ଯଜ୍ଞହେବା ଫଳରେ ଅଗ୍ନିଦେବତା ବହୁତ ଘିଅ ଖାଇ ଲୁଦୁବୁଦୁ ବ୍ୟାଧିରେ ଆକ୍ରାନ୍ତ ହୋଇଛନ୍ତି । ଅର୍ଜ୍ଜୁନ ବନବାସ କଲେ ଅଗ୍ନିଦେବତା ମହୌଷଧି ପାଇବେ । ଏଥିପାଇଁ ନିଜେ ଅଗ୍ନି ଦେବତା ବ୍ରାହ୍ମଣ ରୂପ ଧରି ଆସି-ଥିଲେ । ଆଉ ମଧ୍ୟ ସେ କୁକୁର ରୂପ ଧରି ଯୁଧିଷ୍ଠିରଙ୍କ ପାଦୁକା ଯଥା ସ୍ଥାନରୁ ନେଇ ଯାଇଛନ୍ତି । କାରଣ ପାଦୁକା ଦେଖି ଅର୍ଜ୍ଜୁନ କାଳେ ଭିତରକୁ ଯାଇ ନ ଥାନ୍ତେ । ଏହାଶୁଣି ଯୁଧିଷ୍ଠିରଙ୍କ ପରି ଶାନ୍ତଶିଷ୍ଟ ବ୍ୟକ୍ତିଙ୍କ ମନରେ କିଛି କ୍ରୋଧ ସଞ୍ଚାର ହେଲା । ସେ କୁକୁରକୁ ଅଭିଶାପ ଦେଲେ ଯେ, ଶୃଙ୍ଗାର ସମୟରେ ତାର ଇନ୍ଦ୍ରିୟ ଯୋଡ଼ି ହୋଇ ଯାଇ ଲାଗି ରହିବ ଏବଂ ସମସ୍ତେ ତାହାଦେଖି ଦୂର ଦୂର ମାର ମାର କରିବେ ।

ଅର୍ଜ୍ଜୁନ ଏବେ ବାରବର୍ଷ ବନବାସ କରିବାକୁ ବାହାରିଲେ । ଏହା ଦେଖି ସମସ୍ତେ ଅତ୍ୟନ୍ତ ଦୁଃଖରେ ଅଭିଭୂତ ହୋଇ ପଡ଼ିଲେ । କୁନ୍ତୀ ମୂର୍ଚ୍ଛାଗଲେ । ଦ୍ରୌପଦୀ କାନ୍ଦି କାନ୍ଦି କହିଲେ, ଯେ ସେ ଅର୍ଜ୍ଜୁନଙ୍କ ସଙ୍ଗରେ ବନବାସ କରିବେ । ଯୁଧିଷ୍ଠିର ଦୁଃଖରେ ଅତି ବ୍ୟାକୁଳ ହୋଇ କହିଲେ ଯେ ଅର୍ଜ୍ଜୁନ ତ କାମାଶକ୍ତ ହୋଇ ଦ୍ରୌପଦୀଙ୍କ ଘରରେ ପଶି ନଥିଲେ । ତେଣୁ ତାଙ୍କର ଏଥିରେ ଅପରାଧ ନାହିଁ । ସେଥିପାଇଁ ସେ ବନବାସ କରିବା ପ୍ରଶ୍ନ ଉଠୁ ନାହିଁ ।

ମାତ୍ର ଅର୍ଜ୍ଜୁନ ସମସ୍ତଙ୍କୁ ବୁଝାଇ ସୁଝାଇ ଏହା ବିଧାତାଙ୍କ ଇଚ୍ଛାବୋଲି କହି ସମସ୍ତଙ୍କ ଠାରୁ ବିଦାୟ ନେଇ ଶ୍ରୀଜଗନ୍ନାଥଙ୍କୁ ସ୍ମରଣକରି ବନଗମନ କଲେ ।

## ବନରେ ଅର୍ଜ୍ଜୁନ ।

ହରି ପାହାଡ଼ି ବନରେ ବୁଲି ବୁଲି ଗୋଟିଏ ଗଛ ଛାଇରେ ବିଶ୍ରାମ ନେଲେ । ତାଙ୍କର ପୋଷା ଗଣ୍ଡାଟି ପାଖରେ ଯାଇ ପାଣି ପିଇବାବେଳେ ଅର୍ଜ୍ଜୁନ ତାକୁ ଦେଖି ଶର ମାରିଲେ । ଗଣ୍ଡାଟି ଶରାହତ ହୋଇ ଧାଇଁଆସି ମହାଦେବଙ୍କ ଗୋଡ଼ତଳେ ପଡ଼ି ମରି ଗଲା । ଗଣ୍ଡା ପଛେ ପଛେ ଅର୍ଜ୍ଜୁନ ଯାଇ ସେଠାରେ ପହଞ୍ଚିବାରୁ ମହାଦେବ କ୍ରୋଧରେ ଅର୍ଜ୍ଜୁନଙ୍କ ବନ୍ଧୁତ ଝିଙ୍ଗାସି କରି କହି ମାରିବାକୁ ବାହାରିଲେ । ଅର୍ଜ୍ଜୁନ ହସି ହସି କହିଲେ, "ରେ ଦୁଷ୍ଟ ତପସ୍ୱୀ, ତୁ ମତେ ଯେତେ କଟୁ କଥା କହିଲୁଣି ମୁଁ ସବୁ ସହି ତୋତେ ଏପର୍ଯ୍ୟନ୍ତ ମାରି ନାହିଁ । କାରଣ ତୋର ଏ ସୁନ୍ଦରୀ ଘରଜାଟି ବିଧବା ହେବ । ତାକୁ ନେଇ ଶୀଘ୍ର ପଳା । ନଚେତ୍ ନିଶ୍ଚୟ ମଲୁବୋଲି ଜାଣ ।" ମହାଦେବ ଜଣେ ସାମାନ୍ୟ କିରାତର ଏ ପ୍ରତିଜ୍ଞା ଶୁଣି ଯୋଗବଳରେ ଜାଣିଲେ ଯେ ସେ ମଧ୍ୟମ ପାଣ୍ଡବ ଅର୍ଜ୍ଜୁନ । ସେ ପ୍ରକାଶ୍ୟରେ କହିଲେ, "ହେ କିରାତ, ତୋର ଯଦି ଏଡ଼େ ବଡ଼ ପ୍ରତିଜ୍ଞା ତେବେ ତୋ ଶକ୍ତିର ପରିଚୟ ଦେ ।" ଅର୍ଜ୍ଜୁନ ସଙ୍ଗେ ସଙ୍ଗେ ନିଜର ଧନୁ ଭିତରେ ମହାଦେବଙ୍କ ବେକକୁ ଗଳାଇ ତାଙ୍କୁ ବୁଲାଇ ଦେଲେ । ମହାଦେବ ସନ୍ତୁଷ୍ଟହୋଇ ଅର୍ଜ୍ଜୁନଙ୍କୁ ବର ଯାଚିଲେ । ମହାଦେବ ହାରିଯାଇ ବର ଯାଚିବାରୁ ପାହାଡ଼ି ତାଳି ମାରି ହସିଲେ । ଅର୍ଜ୍ଜୁନ ସନ୍ଦେହରେ ପଡ଼ି

କପଟ କିରାତ ଶାବରରେଇ ଯାଇ କହିଲେ, "ହେ ତପସ୍ୱୀ, ମୋତେ ବର ଦେବା ପାଇଁ ତୁମର କି ଯୋଗ୍ୟତା ଅଛି, ଆଗ ଦେଖାଅ । ମହାଦେବ ନିଜରୂପ ଧରିଲେ । ଅର୍ଜ୍ଜୁନ ଧନୁ ଫିଙ୍ଗିଦେଇ ଶିବ ପାର୍ବତୀଙ୍କର ଚରଣ-ତଳେ ଲୋଟି ଗଲେ । ମହାଦେବ ତାଙ୍କୁ ତଳୁ ଉଠାଇ ଆଦରରେ ତାଙ୍କ ଦେହରୁ ଧୂଳି ଝାଡ଼ିଦେଲେ ଓ ପ୍ରସନ୍ନ ହୋଇ ପାଶୁପତ ଅସ୍ତ୍ର ପ୍ରଦାନ କଲେ । ପାର୍ବତୀ ଅର୍ଜ୍ଜୁନଙ୍କୁ ଅକ୍ଷୟ ତୂଣୀ ପ୍ରଦାନ କଲେ । ତା ପରେ ଅର୍ଜ୍ଜୁନଙ୍କୁ ଆଲିଙ୍ଗନ କରି ସଂଜୀବନୀ ମନ୍ତ୍ରଦ୍ୱାରା ଗଣ୍ଡାକୁ ଜୀଆଇଁ ମହାଦେବ ପାର୍ବତୀଙ୍କ ସହିତ ଅନ୍ତର୍ଦ୍ଧାନ ହେଲେ ।

## ନବ ଗୁଞ୍ଜର

ଅର୍ଜ୍ଜୁନଙ୍କର ବନବାସ ସମ୍ବାଦପାଇ ଶ୍ରୀକୃଷ୍ଣ ହସ୍ତିନାକୁ ଆସିଲେ । ସେ ଯୁଧିଷ୍ଠିରଙ୍କର ଚରଣ ବନ୍ଦନା କଲାପରେ ସବୁ ବିଷୟ ତାଙ୍କଠାରୁ ଶୁଣିଲେ । ତା'ପରେ ଅର୍ଜ୍ଜୁନଙ୍କୁ ଦେଖିବାପାଇଁ ବନକୁ ବାହାରିଲେ । ଅର୍ଜ୍ଜୁନ ତାଙ୍କୁ ଚିହ୍ନି ପାରିବେ କି ନାହିଁ ଏହା ପରଖିବାପାଇଁ ସେ ଏକ ବିଚିତ୍ର ଜନ୍ତୁର ରୂପ ଧରିଲେ । ସେ ଜନ୍ତୁର ମୁଣ୍ଡଟି କୁକୁଡ଼ାର ମୁଣ୍ଡପରି । ତା ସହିତ ଷଣ୍ଢର ଚୂଳ, ମୟୂରପରି କଣ୍ଠ, ସାପପରି ଲାଞ୍ଜ, ସିଂହ କଟୀ, ପଛଗୋଡ଼ ଦୁଇଟି ଘୋଡାର ଗୋଡ଼ପରି, ପାଦ ହାତୀ ପାଦପରି, ଆଗ ଗୋଡରୁ ଗୋଟିଏ ବାଘ ଗୋଡ଼ପରି, ଅନ୍ୟ ଗୋଡ଼ଟି ମଣିଷର ହାତପରି ! ସେହି ହାତରେ ଗୋଟିଏ ପଦ୍ମ ଫୁଲ ।

ଅର୍ଜ୍ଜୁନ ଗୋଟିଏ ପଥର ଉପରେ ବସି ଶର ସଳଖୁ ଥିଲେ । ଏ ବିଚିତ୍ର ଜୀବଟି ତାଙ୍କ ଆଗରେ ଯାଇ ନାଚ କୁଦ କଲା । ଶ୍ରୀକୃଷ୍ଣ ଭାବିଥିଲେ ଅର୍ଜ୍ଜୁନ ହୁଏତ ତାଙ୍କୁ ଧରିବାକୁ ଚେଷ୍ଟା କରିବେ । ଧରି ନପାରିଲେ ମାରିବାକୁ ବାହାରିବ । ମାତ୍ର ଅର୍ଜ୍ଜୁନ, ନଅଟି ଜନ୍ତୁର ଅଙ୍ଗବିଶିଷ୍ଟ ଏ ବିଚିତ୍ର ଜୀବକୁ ଦେଖି ଏହା ନିଶ୍ଚିତ ଭଗବାନ ହରିମାୟା ବୋଲି ଜାଣିଲେ । ପ୍ରଭୁ ତାଙ୍କୁ ଦେଖିବାକୁ ଆସିଲେ ଜାଣି ସେ ଖୁବ୍ ଖୁସି ହେଲେ ଏବଂ ସେ ବିଚିତ୍ର ଜୀବର ପାଦତଳେ ଲମ୍ବିହୋଇ ପଡ଼ିଗଲେ । ଶ୍ରୀକୃଷ୍ଣ ସଙ୍ଗେ ସଙ୍ଗେ ନିଜରୂପ ଧରି ଅର୍ଜ୍ଜୁନଙ୍କୁ କୁଣ୍ଢାଇ ପକାଇଲେ ।

## ଖାଣ୍ଡବ ବନ ଦହନ ।

ଶ୍ରୀକୃଷ୍ଣ ଓ ଅର୍ଜୁନ ଦୁଇ ବନ୍ଧୁ ବସି କଥାବାର୍ତ୍ତା ହେବା ସମୟରେ ଜଣେ ଅତି ରୁଗ୍ଣ ବ୍ରାହ୍ମଣ ଆସି ପହଞ୍ଚିଲେ । ତାଙ୍କର ପେଟ ଫୁଲି-ଯାଇ ହାତଗୋଡ ଅତି ସରୁ ହୋଇଯାଇଛି । ବେଶ ପୋଷାକ ମଧ୍ୟ ଅତ୍ୟନ୍ତ ମଳିନ । ସେ କ୍ଷୀଣ ସ୍ୱରରେ ବେଦ ପାଠ କରିବାକୁ ଲାଗିଲେ ।

ଅର୍ଜୁନ ତାଙ୍କୁ ଆସିବାର କାରଣ ପଚାରିଲେ, ସେ କହିଲେ ଯେ ସେ ଅତି ଦରିଦ୍ର । ପୁଣି ଦୁରାରୋଗ୍ୟ ବ୍ୟାଧିଗ୍ରସ୍ତ । କିଛି ଦାନ ମାଗିବା-ପାଇଁ ଆସିଛନ୍ତି । ମାତ୍ର ଦୁହେଁତ ଏକାପରି ଦେଖାଯାଉଛନ୍ତି । ତେଣୁ କାହାକୁ ସେ ଦାନ ମାଗିବେ କିଛି ଠିକ୍ କରିପାରୁନାହାନ୍ତି । ଅର୍ଜୁନ କହିଲେ ଯେ ସେ ଦୁହେଁ ଦୁଇଭାଇ, ବନଗୃହୀ । ଅର୍ଥ ଦାନ କରିବାପାଇଁ ତାଙ୍କପାଖରେ ସମ୍ବଳ ନାହିଁ । ବ୍ରାହ୍ମଣ ହସି ହସି କହିଲେ, "ବାବା, ମୁଁ ଅର୍ଥ ମାଗୁନାହିଁ । ମୋର ରୋଗପାଇଁ ଔଷଧ ଦାନ ମାଗୁଛି । ତାହା ତୁମେ ଇଚ୍ଛା କଲେ ଦେଇପାରିବ । ତୁମେ ଯଦି ଦାନ ଦେବାକୁ ପ୍ରସ୍ତୁତ ତେବେ ପ୍ରଥମେ ସତ୍ୟକର ।" ଅର୍ଜୁନ ବ୍ରାହ୍ମଣ ଧରିଥିବା ଶଙ୍ଖରେ ପାଣି ଟେକିଦେଇ ସତ୍ୟ କଲେ ।

ତା'ପରେ ବ୍ରାହ୍ମଣ ଛଦ୍ମ ବେଶ ପରିତ୍ୟାଗ କରି ନିଜର ପରିଚୟ ଦେଇ କହିଲେ ଯେ ସେ ସ୍ୱୟଂ ଅଗ୍ନିଦେବ । ସତ୍ୟଯୁଗରେ ବହୁତ ଯଜ୍ଞ ଘୃତ ଖାଇବା ଫଳରେ ତାଙ୍କର ଲୁଦ୍‌ବୁଦ୍ ବ୍ୟାଧି ହୋଇଛି । ଇନ୍ଦ୍ରଙ୍କର ଖାଣ୍ଡବ ବନ ନାନା ମହୌଷଧିରେ ପରିପୂର୍ଣ୍ଣ । ତାକୁ ଖାଇଲେ ତାଙ୍କର ରୋଗ ଭଲ ହେବ । ମାତ୍ର ଇନ୍ଦ୍ରଙ୍କର ପ୍ରବଳ ପ୍ରତିରୋଧ ହେତୁ ସେ ତିନିଯୁଗ ହେଲା ଚେଷ୍ଟାକରି ମଧ୍ୟ ସେ ବନକୁ ଭକ୍ଷଣ କରିପାରୁ ନାହାନ୍ତି । ଅର୍ଜୁନ ଏହାଶୁଣି ଆଶ୍ଚର୍ଯ୍ୟ ହେଲେ । ସେ ଶ୍ରୀକୃଷ୍ଣ ମୁଖକୁ ଚାହିଁଲେ । ଶ୍ରୀକୃଷ୍ଣ ତାଙ୍କୁ କହିଲେ ଯେ ଇନ୍ଦ୍ର ବିବାଧୀ ହୋଇ ଜୟଲାଭ କରିବା ଏକ ଦୁରୂହ ବ୍ୟାପାର । ତେଣୁ ଅଗ୍ନି ଦେବତା ଯଦି ସବୁ ଦେବତାଙ୍କର ଅସ୍ତ୍ରଶସ୍ତ୍ର ଆଣି ଅର୍ଜୁନଙ୍କୁ ଦେଇପାରିବେ ତେବେ ସେ ନିଶ୍ଚିତଭାବେ ତାଙ୍କର ଆଶା ପୂରଣ କରିପାରିବେ । ଅଗ୍ନି ଦେବତା ଏଥିରେ ରାଜି ହେଲେ । ଶ୍ରୀକୃଷ୍ଣ ଅର୍ଜୁନଙ୍କୁ ଆଶୀର୍ବାଦ କରି ଦ୍ୱାରକା ଫେରିଗଲେ ।

ଅଗ୍ନି ଦେବତା ବିଭିନ୍ନ ଦେବଦେବୀଙ୍କ ଠାରୁ ଅସ୍ତ୍ରଶସ୍ତ୍ର ସଂଗ୍ରହ କରିବାକୁ ବାହାରିଲେ । ସେ ପ୍ରଥମେ ପାତାଳ ବୈକୁଣ୍ଠକୁ ଯାଇ ନାରାୟଣଙ୍କଠାରୁ ମନଭେଦୀ ଶର, ନନ୍ଦିଘୋଷ ରଥ ଓ ଗାଣ୍ଡିବ ଧନୁ ସଂଗ୍ରହ କଲେ । ନାଗ ରାଜା ବାସୁକୀଙ୍କଠାରୁ ନାଗପାଶ ଆଣିଲେ । ସୂର୍ଯ୍ୟଙ୍କଠାରୁ ସୂର୍ଯ୍ୟଚକ୍ର, ଚନ୍ଦ୍ରଙ୍କଠାରୁ ଚନ୍ଦ୍ରାବଳୀ ଗଦା, ବ୍ରହ୍ମାଙ୍କଠାରୁ ବ୍ରହ୍ମଶକ୍ତି, ଯମ ଦେବତାଙ୍କ ଠାରୁ କାଳଚକ୍ର ପାଶୀ, ପବନ ଦେବତାଙ୍କ-ଠାରୁ ପବନ ଶର, ବୃହସ୍ପତିଙ୍କଠାରୁ ଜୀବନ୍ୟାସ ଶର, କୁବେର ଦେବତାଙ୍କଠାରୁ ରତ୍ନାବଳୀ ଗଦା ଓ ବିଭିନ୍ନ ରତ୍ନ ଆଭରଣ, ମହାଦେବଙ୍କଠାରୁ ଶୂଳଶକ୍ତି, ବରୁଣ ଦେବତାଙ୍କଠାରୁ ଶ୍ୱେତ ଅମର ଅଶ୍ୱ, ଏବଂ ଦୁର୍ଗାଙ୍କଠାରୁ ଅଭେଦ ବିଭୂତି ଲାଭ କଲେ । ଏହି ଅଭେଦ ବିଭୂତି ଲେପନ କଲେ ଶରୀର ଅକ୍ଷୟ ହୁଏ ଏବଂ ତହିଁରେ କୌଣସି ଅସ୍ତ୍ରଶସ୍ତ୍ର ଭେଦେ ନାହିଁ । ସ୍ୱୟଂ ଇନ୍ଦ୍ର ମଧ୍ୟ ଅଗ୍ନି ଦେବଙ୍କର ଆରୋଗ୍ୟ କାମନା-କରି ନିଜର ଅସ୍ତ୍ରଶସ୍ତ୍ର ତାଙ୍କୁ ଅର୍ପଣ କଲେ । ଏ ସମସ୍ତ ଅସ୍ତ୍ରଶସ୍ତ୍ର ନନ୍ଦିଘୋଷ ରଥରେ ଥୋଇ ଶ୍ୱେତ ଅମର ଅଶ୍ୱଙ୍କୁ ତହିଁରେ ଯୋଚି ଅଗ୍ନି ଦେବତା ଅର୍ଜୁନଙ୍କ ପାଖକୁ ଫେରିଆସିଲେ ।

ଉଭୟେ ସେହି ରଥରେ ବସି ଖାଣ୍ଡବ ବନ ନିକଟକୁ ଆସିଲେ । ସୁସଜ୍ଜ ପାଚିରୀ ପରିବେଷ୍ଟିତ ବିରାଟ ତୋଟା କାହିଁ କେତେ କୋଶ ବ୍ୟାପିଛି । ସେ ତୋଟାରେ ଫୁଟିଥିବା ଫୁଲମାନଙ୍କ ତେଜରେ ଦିନରାତି ସମାନ ଜଣାପଡ଼ୁଛି । ସେଠାରେ ସବୁବେଳେ ମଳୟ ସମୀର ବହୁଛି । ବିଶ୍ୱ ବ୍ରହ୍ମାଣ୍ଡରେ ଯେତେ ପ୍ରକାର ପଶୁପକ୍ଷୀ, କୀଟପତଙ୍ଗ ଅଛନ୍ତି, ସମସ୍ତେ ସେ ତୋଟାରେ ପୂରି ରହିଛନ୍ତି । ଗୋଟିଏ ଗୋଟିଏ ଗଛ ସହସ୍ର ଯୋଜନ ପର୍ଯ୍ୟନ୍ତ ବ୍ୟାପିଛନ୍ତି । ଫଳ ଭାରରେ ସମସ୍ତେ ଅବନତ ।

ଅର୍ଜୁନ ଖାଣ୍ଡବ ବନର ଏ ସମ୍ପଦ ଦେଖି ହାତ ଯୋଡ଼ି କହିଲେ, 'ହେ ଅଗ୍ନି ଦେବତା, ଦୟାକରି କହନ୍ତୁ । କେଉଁ ଔଷଧ ବୃକ୍ଷ ଦ୍ୱାରା ଆପଣଙ୍କର ବ୍ୟାଧି ମୋଚନ ହେବ । ମୁଁ ତାହାକୁହିଁ ଆଣି ଆପଣଙ୍କୁ ପ୍ରଦାନ କରିବି । ଏତେ ସମ୍ପଦ ପରିପୂର୍ଣ୍ଣ ଏ ରମଣୀୟ ବନକୁ ଧ୍ୱଂସ କରିବାକୁ ମୋର ସତ ବଳୁନାହିଁ ।''

ଅଗ୍ନିଦେବତା କଞ୍ଚିତ ବିରକ୍ତ ହୋଇ କହିଲେ, "ହେ ବୀର ଅର୍ଜ୍ଜୁନ, ତୁମେ ତୁମର ସତ୍ୟ ଭୁଲି ଯାଅନା । ଏହି ବନରେ ଥିବା ସମସ୍ତ ବୃକ୍ଷ, ଜୀବ ଜନ୍ତୁ କୀଟ ପତଙ୍ଗ ଆଦି ସହିତେ ମୁଁ ଭକ୍ଷଣ କରିବି । ତେବେଯାଇ ମୁଁ ବ୍ୟାଧିମୁକ୍ତ ହେବି । ଏହା ମୋତେ ଦେବା ନିମିତ୍ତ ତୁମେ ସତ୍ୟବଦ୍ଧ । ତେଣୁ ଆଉ କାଳ ବିଳମ୍ବ ନ କରି ତୁମେ ମୋତେ ନାରାଚ କରି ତୁମ ଧନୁରେ ବସାଇ ଶୀଘ୍ର ପ୍ରୟୋଗ କର । ଇନ୍ଦ୍ରଙ୍କର ମେଘାଶରକୁ ମୋର ଭାରି ଡର । ମେଘମାନେ ପାଣି ବରଷି ମୋତେ ଲିଭାଇ ଦେବେ । ତେଣୁ ତୁମେ ଜଗି ରୁହ । ଆଉ ମଧ୍ୟ ଦେଖ, ଯେପରି ପିମ୍ପୁଡ଼ିଟିଏ ମଧ୍ୟ ଏ ଖାଣ୍ଡବରୁ ବାହାରି ନ ଯାଏ । ମୁଁ ଏ ଖାଣ୍ଡବ ସହିତ ସମସ୍ତ ଭକ୍ଷଣ କରିବି । ଅର୍ଜ୍ଜୁନ ତାହାହିଁ କଲେ । ସେ ଅଗ୍ନିଙ୍କୁ ଶରରୂପେ ପେଶିବା ସଙ୍ଗେ ସଙ୍ଗେ ଏତେ ସୁନ୍ଦର ଖାଣ୍ଡବରେ ନିଆଁ ଲାଗି ଗଲା ଓ ହୁ ହୁ ହୋଇ ଜଳିବାକୁ ଲାଗିଲା । ଅଗ୍ନିଦେବତା ମହାତେଜମୂର୍ତ୍ତି ଧରି ଗୃହୁଁ ଗୃହୁଁ ସହସ୍ର ଯୋଜନ ବ୍ୟାପିଗଲେ ।

ଅସଂଖ୍ୟ ଖାଣ୍ଡବ ଜଗୁଆଳ ଏକତ୍ର ହୋଇ ନଦୀରୁ ପାଣି ଆଣି ଅଜାଡ଼ିବାକୁ ଲାଗିଲେ । ଅଗ୍ନିଦେବତାଙ୍କର ଭକ୍ଷଣରେ ବାଧାହେଲା । ସେ ଅର୍ଜ୍ଜୁନଙ୍କୁ ଡାକ ପକାଇଲେ । ଅର୍ଜ୍ଜୁନ ଶରମାରି ଖାଣ୍ଡବ ଜଗୁଆଳ ମାନଙ୍କର ହସ୍ତ ଛେଦ ପକାଇଲେ । ଯେଉଁମାନେ ପଳାଇବାକୁ ଚେଷ୍ଟା କଲେ ଅର୍ଜ୍ଜୁନଙ୍କ ଶରରେ ସମସ୍ତେ ମରି ଅଗ୍ନିରେ ପୋଡ଼ି ଗଲେ ।

ଖାଣ୍ଡବର ଧୂଆଁ ଆକାଶକୁ ବ୍ୟାପିଲା । ଔଷଧ ବୃକ୍ଷ ଆଦି ପୋଡ଼ି ହିବାଦ୍ୱାରା ଯେଉଁ ସୁଗନ୍ଧ ବାହାରିଲା ତାହା ଚତୁର୍ଦ୍ଦିଗକୁ ଆମୋଦିତ କଲା । ଦେବର୍ଷି ନାରଦ ଆକାଶରେ ଯାଉ ଯାଉ ଏ ଘଟଣା ଦେଖିଲେ । ସେ ଅର୍ଜ୍ଜୁନଙ୍କୁ କହିଲେ, "ବାବା, ପୁତ୍ରହୋଇ ପିତାଙ୍କର ଏ ସମ୍ପଦକୁ ନାଶ କରୁଛ କାହିଁକି ?" ଅର୍ଜ୍ଜୁନ କହିଲେ, "ଦେବର୍ଷି, ମୋର ବା କି ଦୋଷ ? ଅଗ୍ନିଦେବତା ଛଦ୍ମ ବେଶରେ ମୋତେ ସତ୍ୟବଦ୍ଧ କରାଇଛନ୍ତି । ଆପଣଙ୍କୁ କେଉଁ କଥା ବା ଅଜଣା ?"

ନାରଦ ସଙ୍ଗେ ସଙ୍ଗେ ଯାଇ ଏ ଦୁଃସମ୍ବାଦ ଇନ୍ଦ୍ରଙ୍କୁ ଜଣାଇଦେଲେ । ଇନ୍ଦ୍ର କ୍ରୁଦ୍ଧହୋଇ ତାଙ୍କର ପୁଅମାନଙ୍କୁ ସେନା ସାମନ୍ତ ସହିତ ପଠାଇଲେ ।

ମାତ୍ର ଅର୍ଜ୍ଜୁନ ସମସ୍ତଙ୍କୁ ଅଳ୍ପ ସମୟ ମଧ୍ୟରେ ପରାସ୍ତ କରିଦେଲେ । ତା ପରେ ଇନ୍ଦ୍ର ଗୃହ ମେଘଙ୍କୁ ପଠାଇଲେ । ମେଘମାନେ ମୂଷଳଧାରାରେ ବର୍ଷା ଆରମ୍ଭ କରିଦେଲେ । ଅଗ୍ନି ଦେବତା ଡାକ ପକାଇଲେ, "ହେ ଅର୍ଜ୍ଜୁନ, ଏ ମେଘମାନେ ଜଳ ବର୍ଷା କରି ମୋତେ ଲିଭାଇ ଦେଉଛନ୍ତି । ତୁମ୍ଭେ ଶୀଘ୍ର ପ୍ରତିକାର କର ।" ଅର୍ଜ୍ଜୁନ ବାୟୁଶର ମାରି ମେଘମାନଙ୍କୁ ଘଉଡ଼ାଇ ଦେଲେ । ଅଗ୍ନିଦେବତା ପୁଣି ଅବାଧରେ ଖାଣ୍ଡବ ବନ ଭକ୍ଷଣ କରି ଗ୍ଲଲେ ।

ଶେଷରେ ସ୍ୱୟଂ ଇନ୍ଦ୍ରଦେବ ଐରାବତ ବାହାନ ଚଢ଼ି ଅର୍ଜ୍ଜୁନଙ୍କ ନିକଟରେ ପହଞ୍ଚିଲେ । ପିତାଙ୍କୁ ଦେଖି ଅର୍ଜ୍ଜୁନ ନନ୍ଦୀଘୋଷ ରଥରୁ ଓହ୍ଲାଇ ପଡ଼ି ତାଙ୍କର ଚରଣ ବନ୍ଦନା କଲେ । ଇନ୍ଦ୍ର ଅର୍ଜ୍ଜୁନଙ୍କୁ କୋଳାଗ୍ରତ କରି ଆଶୀର୍ବାଦ କଲେ । ଖାଣ୍ଡବ ବନ ଦହନର କାରଣ ପଚ୍ଚରିବାରୁ ଅଗ୍ନି ଦେବତା କପରି ରୁଗ୍‌ଣ ଦରିଦ୍ର ବ୍ରାହ୍ମଣ ବେଶରେ ତାଙ୍କୁ ସତ୍ୟବଦ୍ଧ କଲେ ତାହା ଅର୍ଜ୍ଜୁନ ବର୍ଣ୍ଣନା କଲେ । ଇନ୍ଦ୍ର କହିଲେ "ବାବୁ, ଏ ଖାଣ୍ଡବ ବନ, ସ୍ୱର୍ଗ, ମର୍ତ୍ତ୍ୟ, ପାତାଳ, ଏ ତିନି ଲୋକର ମହା ଉପକାର ସାଧନ କରି ଆସୁଅଛି । ଏହା ଭିତରେ ଯେଉଁ ଅତି ଅମୂଲ୍ୟ, ଦୁର୍ଲ୍ଲଭ ମହୌଷଧମାନ ଅଛି ତାହା ମୁଁ ତୁମକୁ ଦେଖାଇ ଦେଉଛି । ପ୍ରଥମେ ସେ ଦେଖାଇଲେ ବିଶଲ୍ୟକରଣୀ । ଏହି ମହୌଷଧ ଦ୍ୱାରା ତ୍ରେତା ଯୁଗରେ ରାବଣର ଅମୋଘ ଶକ୍ତିଦ୍ୱାରା ନିହତ ଲକ୍ଷ୍ମଣ ପୁନର୍ଜୀବନ ଲାଭ କରିଥିଲେ । ତା ପରେ ମୃତସଞ୍ଜୀବନୀ ବୃକ୍ଷ ଦେଖା-ଇଲେ । ଏହାର ପୁଷ୍ପ ସୌରଭ ଦ୍ୱାରା ରାମ ରାବଣ ଯୁଦ୍ଧପରେ ରାମଙ୍କର ସମସ୍ତ ସୈନ୍ୟ ପୁନର୍ଜୀବନ ପ୍ରାପ୍ତ ହୋଇଥିଲେ । ଏହି ପୁଷ୍ପର ସୌରଭ ପବନରେ ଯେତେ ଯୋଜନ ଯାଏ ସେତେଦୂର ପର୍ଯ୍ୟନ୍ତ ପ୍ରାଣୀମାନଙ୍କୁ କୌଣସି ବ୍ୟାଧି ଆକ୍ରମଣ କରିପାରେ ନାହିଁ । ତା ପରେ ଦେଖାଇଲେ ବୃଦ୍ଧନାଶିନୀ ବୃକ୍ଷ । ଏହାର ଛେଲିକୁ ସିଝାଇ ପିଇଲେ ବୃଦ୍ଧତ୍ୱ ନାଶ ଯାଇ ପୁନର୍ବାର ଯୌବନ ପ୍ରାପ୍ତି ହୁଏ । ରୋଗନାଶିନୀ ବୃକ୍ଷର ପତ୍ର ଦ୍ୱାରା ସମସ୍ତ ରୋଗ ଦୂର ହୁଏ । "ସନ୍ତାନ ଉଦ୍ୟାନ"ର ଯେ କୌଣସି ବୃକ୍ଷର ଗୋଟିଏ ଫଳ ଖାଇଲେ ବନ୍ଧ୍ୟାତ୍ୱ ବିନାଶ ହୋଇ ସନ୍ତାନ ପ୍ରାପ୍ତି ହୁଏ । "ତାଳତରୁଣ" ବୃକ୍ଷ ଦେଖାଇ କହିଲେ ଯେ ଅକ୍ଷୟ ତୃଷ୍ଣାସ୍ଥା ବନ ଏହି

ବୃକ୍ଷର ଗୋଟିଏ ଫଳ ଖାଇଲେ ଦୀର୍ଘାୟୁ ଓ ଚିର ଯୌବନ ଲଭନ୍ତିଏ । "ମୋହନ" ଲତାର କ୍ଷିର ମସ୍ତକରେ ଲଗା ଦେଖିଲେ ଦେବ ଦାନବ ସମସ୍ତେ ମୋହିତ ହୁଅନ୍ତି । "ବିନ୍ଦୁଧାରଣ" ବୃକ୍ଷର ଚେର ବାନ୍ଧ କରି ପିନ୍ଧିଲେ ସହସ୍ରେ ସୁବତୀ ରମଣ କଲେ ମଧ୍ୟ ରେତ ଖସିବ ନାହିଁ । "ସିଦ୍ଧକଳ୍ପ' ବୃକ୍ଷର ଗୋଟିଏ ଫୁଲ ସନ୍ଧ୍ୟାନ୍ତ ଦିନ ସେବନ କଲେ ଏକ ସମ୍ବତ୍ସର ପର୍ଯ୍ୟନ୍ତ କ୍ଷୁଧା ଲାଗିବ ନାହିଁ ।

ଏହାପରେ ଅନେକ ଉପାଦେୟ ମହୌଷଧି ବୃକ୍ଷ ଦେଖି, ସେଗୁଡ଼ିକର ମହିମା ଶୁଣି ଅର୍ଜ୍ଜୁନ ଅତ୍ୟନ୍ତ ଆଶ୍ଚର୍ଯ୍ୟ ହେବା ସଙ୍ଗେ ସଙ୍ଗେ ସେଗୁଡ଼ିକର ଧ୍ୱଂସସାଧନ କଲି ବୋଲି ବଡ଼ ଅନୁତପ୍ତ ହେଲେ । ତେବେ ସତ୍ୟରକ୍ଷା କରିବା ନିମିତ୍ତ ସେ ବାଧ୍ୟହୋଇ ଏହି ଧ୍ୱଂସସାଧନରେ ପ୍ରବୃତ୍ତ ହୋଇଛନ୍ତି ବୋଲି ବଡ଼ ବିନୟର ସହିତ ପ୍ରକାଶ କଲେ । ଆଉମଧ୍ୟ କହିଲେ ଯେ, ଯଦି କୌଣସି ପ୍ରକାରେ ଅଗ୍ନିଦେବତାଙ୍କୁ ସନ୍ତୁଷ୍ଟ କରି ତାଙ୍କୁ ଏଥିରୁ କ୍ଷାନ୍ତ କରିଯାଇ ପାରନ୍ତା ତେବେ ଅର୍ଜ୍ଜୁନ ଏଥିରୁ ଉଦ୍ଧାର ପାଆନ୍ତେ ଓ ଇନ୍ଦ୍ରଦେବ ଜଳ ବର୍ଷା କରି ବନ ଅଗ୍ନିକୁ ଲିଭାଇ ଦିଅନ୍ତେ ।

ଏହାପରେ ପରାମର୍ଶ କରି ଇନ୍ଦ୍ର ଓ ଅର୍ଜ୍ଜୁନ ଉଭୟେ ଅଗ୍ନିଦେବତାଙ୍କୁ ସ୍ତୁତି କରିବାକୁ ଲାଗିଲେ । ମାତ୍ର ଅଗ୍ନିଦେବତା କହିଲେ ଯେ ଖାଣ୍ଡବ ବନକୁ ସଂପୂର୍ଣ୍ଣ ଗ୍ରାସ ନ କଲେ ତାଙ୍କର ରୋଗ ଭଲ ହେବ ନାହିଁ । ତେଣୁ ସେ ତାହା ନିଶ୍ଚୟ କରିବେ ଏବଂ ଅର୍ଜ୍ଜୁନ ସେଥିପାଇଁ ସହାୟତା କରିବାକୁ ବାଧ୍ୟ । କାରଣ ଏହାର ସାମାନ୍ୟ ବ୍ୟତିକ୍ରମ କଲେ ଅର୍ଜ୍ଜୁନ ସତ୍ୟ ଭ୍ରଷ୍ଟ ହୋଇ ମହାପାତକ ଅର୍ଜନ କରିବେ ।

ଏହା ଶୁଣି ଇନ୍ଦ୍ରଦେବତା ରାଗି ଗଲେ ଓ ଏ କାର୍ଯ୍ୟରେ ଅଗ୍ନିଙ୍କୁ ଆଉ ସାହାଯ୍ୟ ନ କରିବାକୁ ଅର୍ଜ୍ଜୁନଙ୍କୁ ବହୁ ପ୍ରକାରେ ବୁଝାଇଲେ । ମାତ୍ର ଅର୍ଜ୍ଜୁନ କଦାପି ସତ୍ୟ ଭଙ୍ଗ କରି ପାରିବେ ନାହିଁ ବୋଲି କର ଯୋଡି ଜଣାଇବାରୁ ଇନ୍ଦ୍ର ରାଗି ଯାଇ ଅର୍ଜ୍ଜୁନଙ୍କ ସହିତ ଯୁଦ୍ଧ କରି ତାଙ୍କୁ ମାରି ଦେବାକୁ ବାହାରିଲେ । ପିତା ପୁତ୍ରଙ୍କର ଘୋର ଯୁଦ୍ଧ ଲାଗିଗଲା । ଅଗ୍ନି ପୂର୍ବପରି ଖାଣ୍ଡବ ବନ ଦହନ କରି ଚାଲିଲେ । ସାମାନ୍ୟ କାର୍ଯ୍ୟ-

ଟିଏ ପଳାଇ ଗଲେ ବା ମୂଷାଟିଏ ଗାତରେ ପଶିଗଲେ ଅର୍ଜୁନଙ୍କ ଶରରେ ମରି ନିଆଁରେ ପଡ଼ୁଥାନ୍ତି । ଅର୍ଜୁନ ଏଣେ ଅଗ୍ନିଙ୍କୁ ପୂର୍ଣ୍ଣ ଗ୍ରାସରେ ସାହାଯ୍ୟ କରିବା ସଙ୍ଗେ ସଙ୍ଗେ ଇନ୍ଦ୍ରଙ୍କ ସହିତ ମଧ୍ୟ ଘୋର ଯୁଦ୍ଧରେ ଲାଗିଥାନ୍ତି । ବହୁ ସମୟ ଯୁଦ୍ଧ କରି କରି ଇନ୍ଦ୍ର କ୍ଳାନ୍ତ ହୋଇ ପଡ଼ିଲେ । ଅର୍ଜୁନ ତ ସମସ୍ତ ଦେବ ଅସ୍ତ୍ରର ଅଧିକାରୀ ହୋଇଛନ୍ତି । ଇନ୍ଦ୍ର ତାଙ୍କୁ ପରାସ୍ତ କରି ପାରନ୍ତେ କପରି ? ଅର୍ଜୁନ ପିତାଙ୍କର ଅବସାଦ ଲକ୍ଷ୍ୟ କରି ବିନମ୍ର ସହିତ ହାତ ଯୋଡ଼ି କହିଲେ, "ଖାଣ୍ଡବ ବନ ତ ଦଗ୍ଧ ହୋଇ ସାରିଲାଣି । ମତେ କ୍ଷମା କରନ୍ତୁ । ଆଉ ଯୁଦ୍ଧ କରନ୍ତୁ ନାହିଁ । ଇନ୍ଦ୍ର ରାଗି କରି କହିଲେ, "ତୋ ପରି କୁଳାଙ୍ଗାର ପୁଅକୁ ମାରିଲେ ଯାଇଁ ଖାଣ୍ଡବ ବନ ପୋଡ଼ିର ଦୁଃଖ ମୋ ମନରୁ ଯିବ" । ଏହା କହି ଅର୍ଜୁନଙ୍କ ଉପରକୁ ବାଛି ବାଛି ଦିବ୍ୟ ଅସ୍ତ୍ର ସବୁ ପ୍ରୟୋଗ କଲେ । ଅର୍ଜୁନ ଇନ୍ଦ୍ରଙ୍କୁ କୌଣସି ପ୍ରକାରେ ଯୁଦ୍ଧରୁ ନିବୃତ୍ତ କରି ନ ପାରି ଶେଷରେ ବାଧ୍ୟ ହୋଇ ମନ ଭେଦୀ ନାରାଚକୁ ମନ୍ତ୍ର ପଢ଼ି ପ୍ରୟୋଗ କଲେ । ସେହି ଅମୋଘ ଶରାଘାତରେ ଇନ୍ଦ୍ର ଅଚେତ ହୋଇ ପଡ଼ିଗଲେ ।

ଏ ଖବର ଶୁଣି ସ୍ୱର୍ଗରୁ ଶଚୀ ଦେବୀ ଧାଇଁ ଆସିଲେ । ଇନ୍ଦ୍ରଙ୍କ ଉପରେ ଅମୃତ ସିଞ୍ଚନ କରିବାରୁ ଇନ୍ଦ୍ର ଚେତା ପାଇ ଉଠିଲେ । ଶଚୀ ଦେବୀ ତାଙ୍କୁ ବୁଝାଇ ଦେଲେ ଯେ ଅର୍ଜୁନର କିଛି ଦୋଷ ନାହିଁ । ସତ୍ୟ ରକ୍ଷା କରିବା କ୍ଷତ୍ରୀୟର ମହାନ୍ କର୍ତ୍ତବ୍ୟ । ଅର୍ଜୁନ ତାହାହିଁ କରୁଛି । ସେଥିପାଇଁ ପିତାପୁତ୍ର ମଧ୍ୟରେ ଯୁଦ୍ଧହେବା ଆଦୌ ଉଚିତ୍ ନୁହେଁ । ଏହିପରି ବୁଝାଇ ସୁଝାଇ ଶଚୀ ଦେବୀ ଇନ୍ଦ୍ରଙ୍କୁ ସାଙ୍ଗରେ ନେଇ ସ୍ୱର୍ଗକୁ ଫେରି ଗଲେ ।

ଅଗ୍ନି ଦେବତା ମହା ଆନନ୍ଦରେ ଖାଣ୍ଡବ ବନକୁ ସମ୍ପୂର୍ଣ୍ଣ ଭାବରେ ଭକ୍ଷଣ କଲେ । ତାଙ୍କର ଲୁଦ୍‌ବୁଦ୍ ବ୍ୟାଧି ଭଲ ହୋଇ ଗଲା । ଶରୀର ସମ୍ପୂର୍ଣ୍ଣ ସୁସ୍ଥ ହୋଇ ଯିବାରୁ ତାଙ୍କୁ ବହୁତ ଉଲ୍ଲାସ ଲାଗିଲା । ଅର୍ଜୁନଙ୍କ ପ୍ରତି ତାଙ୍କର ହୃଦୟ କୃତଜ୍ଞତାରେ ଭରିଗଲା । ସେ ଅର୍ଜୁନଙ୍କର ଲଲାଟରେ ଦୁବାକ୍ଷତ ଦେଇ ତାଙ୍କୁ ବହୁତ ଆଶୀର୍ବାଦ କଲେ । ତାଙ୍କର ଶରୀର ଅକ୍ଷୟ ହେଉ ବୋଲି ବର ଦେଲେ । ତା ପରେ ଅର୍ଜୁନଙ୍କୁ

ଅତ୍ୟନ୍ତ ସ୍ନେହରେ ଆଲିଙ୍ଗନ କରି ଅଗ୍ନି ଦେବତା ଅନ୍ତର୍ଦ୍ଧାନ ହୋଇ ଗଲେ ।

ସମସ୍ତ ଦେବା ସ୍ନମାନ ପ୍ରାପ୍ତ ହୋଇ, ଅଗ୍ନି ଦେବତାଙ୍କଠାରୁ ଅକ୍ଷୟ ଶସ୍ତ୍ର ବର ଲଭକରି ଅର୍ଜ୍ଜୁନ ବିଶ୍ୱ ବ୍ରହ୍ମାଣ୍ଡରେ ଅଦ୍ୱିତୀୟ ବୀର ହୋଇ ଉଠିଲେ । ସେ କପିଳାସକୁ ଯାଇ ମା' ଗିରିଜାଙ୍କର ପାଦ ପଦ୍ମରେ ପ୍ରଣତି ଜଣାଇ ତାଙ୍କରି ଡାହାଣି ଭିତରେ ସମସ୍ତ ଦେବ ଅସ୍ତ୍ର ଶସ୍ତ୍ର ଓ ନନ୍ଦୀ ଘୋଷରଥ ରଖାଇ ଦେଲେ । ସ୍ମରଣ ମାତ୍ରକେ ସେ ସବୁ ତାଙ୍କୁ ପ୍ରାପ୍ତ ହେବ ବୋଲି ପାର୍ବତୀ ଆଶୀର୍ବାଦ କରି କହିଲେ । ତା ପରେ ଧାମଣା କାଠର ଧନୁ ଧରି ଦୁଇ କାନ୍ଧରେ ଦୁଇଟି ତୂଣୀର ବାନ୍ଧି ଅର୍ଜ୍ଜୁନ ପୁଣି କପଟ ବେଶରେ ବନକୁ ଗଲେ ।

ଖାଣ୍ଡବ ବନ ଦହନରୁ କେବଳ ଗୋଟିଏ ପ୍ରାଣୀ ବର୍ତ୍ତି ଥିଲା । ସେ ହେଉଛି ନାଗ ରାଜାଙ୍କର ଗୋଟିଏ ପୁଅ । ଶୋଷକ ନାମକ କାଳ ସର୍ପ । ଅଗ୍ନି, ନାଗ ରାଜାଙ୍କର ମିତ୍ର ଥିବା ହେତୁ ତାଙ୍କର ଏହି ଗୋଟିଏ ପୁଅକୁ ଛାଡ଼ି ଦେଇଥିଲେ । ଶୋଷକ ପଳାଇ ଆସି କର୍ଣ୍ଣଙ୍କର ଶରଣ ପଶିଲା । କର୍ଣ୍ଣ ତାଙ୍କୁ କଥା ଦେଲେ ଯେ ଅର୍ଜ୍ଜୁନଙ୍କୁ ମାରି ପ୍ରତିଶୋଧ ନେବା ନିମିତ୍ତ ସେ ଶୋଷକକୁ ଯଥା ସମୟରେ ଶର ରୂପରେ ପେଶିବେ ।

ଚିତ୍ରାଙ୍ଗଦା ପରିଣୟ ।

ଅର୍ଜ୍ଜୁନ ବନରେ ବୁଲି ବୁଲି ସ୍ୱେତକମ୍ବର ପର୍ବତରେ ଯାଇ ବାସ କଲେ । ଯଶୋବନ୍ତ ରାଜ୍ୟର ରାଜ ଚନ୍ଦ୍ରାଙ୍କୁରଙ୍କର ପୁଅ ଚନ୍ଦ୍ରଧ୍ୱଜ ମୃଗୟା ନିମିତ୍ତ ବନକୁ ଆସିଥିଲେ । ଜନ୍ତୁ ପଛରେ ଗୋଡ଼ାଇଯାଇ ସେ ଅନ୍ୟ ଏକ ରାଜ୍ୟରେ ପଶିଗଲେ । ସେ ରାଜ୍ୟର ରାଜା ବୈବସ୍ତଙ୍କର ଝିଅ ବନମାଳୀ ସଖୀମାନଙ୍କ ସଙ୍ଗରେ ନଦୀକୁ ଗାଧୋଇ ଆସିଥାଏ । ଚନ୍ଦ୍ରଧ୍ୱଜ ତାଙ୍କର ଅନନ୍ୟ ସୁନ୍ଦର ରୂପ ଦେଖି ତାଙ୍କୁ ବିଭା ହେବା ପାଇଁ ଇଚ୍ଛାକଲେ । ସଖୀମାନେ ରାଜପୁତ୍ରଙ୍କୁ କହିଲେ ଯେ ସେ, ଜେମାଙ୍କର ପିତା ରାଜା ବୈବସ୍ତଙ୍କ ପାଖରେ ବିବାହ ପ୍ରସ୍ତାବ ପକାନ୍ତୁ । ପିତାଙ୍କ ସ୍ୱୀକୃତି ପାଇଲେ ଜେମାଦେଇ ତାଙ୍କୁ ଆନନ୍ଦରେ ପତିରୂପେ ବରଣ କରିବେ ।

"ପିତାଦତ୍ତ କନ୍ୟା ରାଜଦତ୍ତ ମନ୍ତ୍ରୀ,
ସ୍ଥାନଠାରୁ କେମନ୍ତେ ବରିବେ କେମାଦେଈ ?

ଏହା କହି ସଖୀମାନେ ରାଜପୁତ୍ରଙ୍କୁ ବାରଣ କଲେ । ମାତ୍ର ଚନ୍ଦ୍ରଧ୍ୱଜ କେମାଙ୍କ ରୂପରେ ଏତେ ଦୂର ମୋହିତ ହୋଇ ଯାଇଥିଲେ ଯେ, ସେ ଆଉ ବିଳମ୍ବ ସହ୍ୟ କରି ନପାରି ବିମ୍ବମାଳୀ କନ୍ୟାକୁ ନିଜ ଘୋଡ଼ାରେ ବସାଇ ନିଜ ରାଜ୍ୟକୁ ଚାଲିଗଲେ । ସଖୀମାନେ କାନ୍ଦି କାନ୍ଦି ରାଜନଅରକୁ ଫେରି ରାଜାଙ୍କ ଆଗରେ ସବୁ ବିଷୟ ଜଣାଇଲେ । ବୈରାଷ୍ଟ୍ରରାଜା ମହା କ୍ରୋଧରେ ଯଶୋବନ୍ତ ରାଜ୍ୟ ଆକ୍ରମଣ କଲେ । ଦୁଇ ରାଜାଙ୍କ ମଧ୍ୟରେ ପ୍ରବଳ ଯୁଦ୍ଧହେଲା । ଶେଷରେ ଚନ୍ଦ୍ରାଙ୍କୁର ରାଜା ହାରିଯାଇ ପଳାଇଲେ । ବୈରାଷ୍ଟ୍ର ତାଙ୍କ ପଛରେ ଗୋଡ଼ାଇଗଲେ । ଗୋଡ଼ାଇ ଯିବା ପୂର୍ବରୁ ଚନ୍ଦ୍ରାଙ୍କୁରଙ୍କ ପୁଅ ଚନ୍ଦ୍ରଧ୍ୱଜଙ୍କୁ ପ୍ରାଣରେ ନମାରି ନିଜର ରଥଖୁମ୍ବରେ ବାନ୍ଧଦେଇ ଗଲେ ।

ଚନ୍ଦ୍ରାଙ୍କୁର ପଳାଇଯାଇ ସୁମେରୁର ପର୍ବତରେ ଅର୍ଜ୍ଜୁନଙ୍କର ଶରଣ ପଶିଲେ । ବୈରାଷ୍ଟ୍ର ଗୋଡ଼ାଇ ଯାଇ ସେଠାରେ ପହଞ୍ଚିଲେ ଓ ତାଙ୍କର ଶତ୍ରୁକୁ ତାଙ୍କ ହାତରେ ଛାଡ଼ିଦେବାପାଇଁ କରାତବେଶୀ ଅର୍ଜ୍ଜୁନଙ୍କୁ ଅନୁରୋଧ କଲେ । ଅର୍ଜ୍ଜୁନ କହିଲେ ଯେ ଶରଣାଗତକୁ ରକ୍ଷା କରିବା ତାଙ୍କର ପରମ କର୍ତ୍ତବ୍ୟ । ତେଣୁ ସେ ତାଙ୍କୁ କଦାପି ଛାଡ଼ି ପାରିବେ ନାହିଁ । ଫଳରେ ଅର୍ଜ୍ଜୁନ ଓ ବୈରାଷ୍ଟ୍ରଙ୍କ ମଧ୍ୟରେ ଘୋର ଯୁଦ୍ଧହେଲା । ଅର୍ଜ୍ଜୁନ ବୈରାଷ୍ଟ୍ରଙ୍କୁ ପ୍ରାଣରେ ନମାରି ମନଭେଦୀ ଶର ପ୍ରୟୋଗ କରି ଅଚେତ କରିଦେଲେ । ତା ପରେ ବୈରାଷ୍ଟ୍ରଙ୍କ ମନ୍ତ୍ରୀଙ୍କୁ ଡକାଇ ରାଜାଙ୍କର ପରିଚୟ ଓ ଚନ୍ଦ୍ରାଙ୍କୁରଙ୍କ ସହିତ ବିରୋଧର କାରଣ ପଚାରିଲେ । ମନ୍ତ୍ରୀଙ୍କଠାରୁ ସବୁ ଘଟଣା ଶୁଣିଲାପରେ ଚନ୍ଦ୍ରଧ୍ୱଜ ଓ ବିମ୍ବମାଳୀ କନ୍ୟାକୁ ପାଖକୁ ଡକାଇ ଆଣି ଉଭୟଙ୍କ ମଧ୍ୟରେ ବିବାହ କରାଇ ଦେଲେ । ଦୁଇ ଶତ୍ରୁ ସମୁଦ୍ଧି ହୋଇ ଚିରକାଳକୁ ବନ୍ଧୁ ହୋଇ ରହିଲେ ।

ଏହାପରେ ଚନ୍ଦ୍ରାଙ୍କୁର ରାଜା ଅର୍ଜ୍ଜୁନଙ୍କୁ ନିଜ ରାଜ୍ୟକୁ ଯିବା ନିମିତ୍ତ ସାଦର ନିମନ୍ତ୍ରଣ ଜଣାଇଲେ । ଅର୍ଜ୍ଜୁନ ଆନନ୍ଦରେ ତାଙ୍କର ନିମନ୍ତ୍ରଣ ରକ୍ଷା କଲେ । ସେଠାରେ ଚନ୍ଦ୍ରାଙ୍କୁରଙ୍କର କନ୍ୟା ଲମ୍ବିତା ଓ

ଚିତ୍ରାଙ୍ଗଦାଙ୍କ ସହିତ ଅର୍ଜ୍ଜୁନଙ୍କର ମହା ସମାରୋହରେ ବିବାହ ହେଲା । ଅର୍ଜ୍ଜୁନ ସେଠାରେ ମହାସୁଖରେ ଦୁଇମାସ କଟାଇ ପୁନର୍ବାର ବନକୁ ଫେରିଗଲେ । ଅର୍ଜ୍ଜୁନଙ୍କ ଔରସରେ ଲମ୍ବିତାଙ୍କର ଏକ ମହାତେଜସ୍ୱୀ ପୁତ୍ର ଜାତ ହେଲା । ତାର ନାମ ହେଲା ବଭ୍ରୁବାହନ । ଲମ୍ବିତା ଓ ଚିତ୍ରାଙ୍ଗଦା ଉଭୟେ ବଭ୍ରୁବାହନଙ୍କୁ ମାତୃସ୍ନେହ ଦେଇ ଲାଳନ ପାଳନ କଲେ । ଅର୍ଜ୍ଜୁନ ସେଠାରୁ ଯାଇ ବନ ମଧ୍ୟରେ ମଣିଭଦ୍ରା ପର୍ବତରେ ବାସକଲେ ।

—✱—



ମ
ହା
ଭା
ର
ତ

ସାରଳା

୧୩ଶ ଅଧ୍ୟାୟ

## ହରି ଅର୍ଜୁନ ଯୁଦ୍ଧ ।

ବାମଦେବ ଯାଦବଙ୍କର ପୁତ୍ର ଶତଧନୁ, କୃତବର୍ମା ଓ ଅନାଧୃଷ୍ଟ ନାମକ ଅନ୍ୟ ଦୁଇଜଣ ଦୁଷ୍ଟଙ୍କ ସହିତ ଦ୍ୱାରକାପୁରରେ ପଶି ସତ୍ୟଭାମାଙ୍କ ପିତା ସତ୍ରାଜିତଙ୍କୁ ଶୋଇବା ଅବସ୍ଥାରେ ହତ୍ୟା କରି ତାଙ୍କଠାରୁ ସ୍ୟମନ୍ତକ ମଣି ଚୋରାଇ ନେଲେ । କୃତବର୍ମା ଓ ଅନାଧୃଷ୍ଟଙ୍କୁ ପ୍ରହରୀମାନେ ଧରି ମାରିଦେଲେ । ମାତ୍ର ଶତଧନୁ ଲୁଚି ପଳାଇଲେ ।

ସେତେବେଳେ ଶ୍ରୀକୃଷ୍ଣ ହସ୍ତିନାରେ ଥିଲେ । ସେ ଏହି ଦୁଃସମ୍ବାଦ-ପାଇ ମହାକ୍ରୋଧରେ ହସ୍ତିନାରୁ ଫେରିଆସି ଶତଧନୁଙ୍କୁ ମାରିବାପାଇଁ ଖୋଜିବାକୁ ଲାଗିଲେ । ଶତଧନୁ ବଣକୁ ପଳାଇ ଯାଇଥିଲେ । ବଣରେ ସୁରସେନ ନାମକ ଏକ ମହାବଳବାନ କପିଙ୍କ ପାଖରେ ପହଞ୍ଚି ତାଙ୍କୁ ଶରଣ ମାଗିଲେ । ମାତ୍ର ଶ୍ରୀକୃଷ୍ଣଙ୍କର ଶତ୍ରୁକୁ ଶରଣ ଦେବାକୁ କପିତ ଅସମର୍ଥ ବୋଲି କହିବାରୁ ଶତଧନୁ ସେଠାରୁ ପଳାଇଲେ । ଶ୍ରୀକୃଷ୍ଣ କପିତ ପାଖରେ ପହଞ୍ଚି ତାଙ୍କୁ ଶତଧନୁର ସନ୍ଧାନ ପଚାରିବାରୁ କପିତ ତାହା ଜାଣେ ନାହିଁ ବୋଲି କହିଲା । ଶ୍ରୀକୃଷ୍ଣ ରାଗରେ ତାଙ୍କୁ ହାଣି ପକାଇଲେ ।

ଶତଧନୁ ପଳାଇଯାଇ ଯମନକ ରାଜାଙ୍କର ଶରଣ ଭିକ୍ଷା କଲେ । ମାତ୍ର ସେ କହିଲେ ଯେ ଶ୍ରୀକୃଷ୍ଣ ତ୍ରିଲୋକ୍ୟ ଚିନ୍ତାମଣି । ଇଚ୍ଛାକଲେ ସକଳ ବ୍ରହ୍ମାଣ୍ଡବାର୍ତ୍ତା ଜାଣିପାରିବେ । ତେଣୁ ସେ ଶରଣ ଦେବାକୁ ଅସମର୍ଥ । ଶତଧନୁ ସେଠାରୁ ପଳାଇଲେ । ଶ୍ରୀକୃଷ୍ଣ ଯମନକଙ୍କୁ ଭେଟି ପଚାରିବାରୁ ସେ କହିଲେ ଯେ କେହିଜଣେ ବୀର ପଳାଇ ଯାଉଛି । ମାତ୍ର ସେ ତାକୁ ଚିହ୍ନନ୍ତି-ନାହିଁ । ଏହି ମିଥ୍ୟାକଥା ଶୁଣି ଶ୍ରୀକୃଷ୍ଣ କ୍ରୋଧରେ ତାଙ୍କୁମଧ ହତ୍ୟାକଲେ । ନିଜେ ଏକ କିରାତର ଛଦ୍ମବେଶ ଧରି ବନର ଗଳି କନ୍ଦରେ ପଶି ଶତଧନୁକୁ ଖୋଜିବାକୁ ଲାଗିଲେ ।

ଶତଧନୁ ସେଠାରୁ ପଳାଇଯାଇ ନିଷାଦ ରାଜା କୃତକେଶୀଠାରେ ଶରଣ ପଶିଲେ । କୃତକେଶୀ ମହାବଳବାନ୍ । ସେ ନିରଞ୍ଜନ ଦେବତାଙ୍କୁ ତପସ୍ୟାରେ ସନ୍ତୁଷ୍ଟକରି ଅକ୍ଷୟବର ପାଇଥାଏ । ତାର ସହସ୍ର ବାହୁ । ପାଞ୍ଚଶହ ହାତରେ ଧନୁଧରି ଓ ପାଞ୍ଚଶହ ହାତରେ ଶରମାରି ଯୁଦ୍ଧକରେ । ଏହା ଛଡ଼ା ଅସୁର ରାଜାର କୋଟି କୋଟି ସୈନ୍ୟ । ଶତଧନୁକୁ ସେ ଅଭୟ ଦେଇ ବକ୍ରବ୍ୟୂହ ରଚନା କରି ତା ମଝିରେ ତାକୁ ରଖାଇଲା । ଶ୍ରୀକୃଷ୍ଣ କିରାତ ବେଶରେ ସେଠାରେ ଆସି ପହଞ୍ଚି କୃତକେଶୀର ସୈନ୍ୟ-ମାନଙ୍କୁ ଶତଧନୁ କୁଆଡ଼େ ଗଲା ବୋଲି ପଚାରିଲେ । ମାତ୍ର ସୈନ୍ୟମାନେ ଶ୍ରୀକୃଷ୍ଣଙ୍କୁ ଚିହ୍ନି ନପାରି ବ୍ୟଙ୍ଗ ବିଦ୍ରୂପ କଲେ । ଶ୍ରୀକୃଷ୍ଣ ରାଗିଯାଇ ଶର ପ୍ରୟୋଗ କରି ଲକ୍ଷ ଲକ୍ଷ ସୈନ୍ୟଙ୍କୁ ମାରି ପକା କରିଦେଲେ । ସୈନ୍ୟ-ବାହିନୀ ଭାଙ୍ଗିଯାଇ କୃତକେଶୀ ରାଜା ଆଗରେ ଏ ଘଟଣା କହିଲେ ।

କୃତକେଶୀ ନିଜେ ଯୁଦ୍ଧକୁ ବାହାରିଲେ । ମେରୁ ପର୍ବତ ପରି ଶରୀର ସାଙ୍ଗକୁ ଏକା ବେଳକେ ପାଞ୍ଚଶହ ଧନୁ ଧରିଛି । ମେଘବର୍ଷାପରି ସେ ଶ୍ରୀକୃଷ୍ଣଙ୍କ ଉପରେ ଶରବର୍ଷା କରିବାକୁ ଲାଗିଲା । ମାତ୍ର ଶ୍ରୀକୃଷ୍ଣଙ୍କ ଦେହରେ ଶର ନଭେଦି ଖଣ୍ଡ ପଡ଼ିଲେ । ତାପରେ ଅସୁର ଶ୍ରୀକୃଷ୍ଣଙ୍କ ଉପରେ ପାଞ୍ଚଶହ ଭାରି ଗଦାନେଇ ପିଟିଲା । ଗଦାମଧ ତାଙ୍କ ଦେହରେ ବାଜି ଚୂର ହୋଇଗଲା । ଏହାଦେଖି ଅସୁର ମନରେ ଭୟ ପଶିଲା । ତଥାପି ସେ ପ୍ରାଣ ଆଶା ଛାଡ଼ି ଛଦ୍ମବୃତ୍ତି ଧରି ଶ୍ରୀକୃଷ୍ଣଙ୍କ ସହିତ ଘମାଘୋଟ ଲଢ଼େଇ କଲା । ଶେଷରେ ଶ୍ରୀକୃଷ୍ଣ କୌମୁଦୀ ଗଦା ପ୍ରହାର କରି ଅସୁରକୁ ମାରିଦେଲେ ।

ଅସୁର ମରିଯିବାର ଜାଣି ପାରି ଶତଧନ୍ ସୈନ୍ୟ ବ୍ୟୂହ ମଧ୍ୟରୁ ଲୁଚି ଚାଲିଯାଇ ମଣିଭଦ୍ରା ପର୍ବତରେ ବାସ କରୁଥିବା ଅର୍ଜ୍ଜୁନଙ୍କ ପାଦତଳେ ଲମ୍ବହୋଇ ପଡ଼ିଯାଇ ତାଙ୍କୁ ଶରଣ ମାଗିଲା । ଅର୍ଜ୍ଜୁନ କ୍ଷତ୍ରିୟ ଧର୍ମ ପାଳନ କରି ସଙ୍ଗେ ସଙ୍ଗେ ତାକୁ ଶରଣ ପ୍ରଦାନ କଲେ । କିଛି ସମୟପରେ ଶ୍ରୀକୃଷ୍ଣ ମଧ୍ୟ ସେଠାରେ ଧାଇଁ ପହଞ୍ଚିଗଲେ । ଶ୍ରୀକୃଷ୍ଣ ଅର୍ଜ୍ଜୁନ ଉଭୟେ କିରାତ ବେଶ ଧରି ଥିବାରୁ ରାତି ଅନ୍ଧାରରେ କେହି କାହାକୁ ଚିହ୍ନି ପାରିଲେ ନାହିଁ । ଶ୍ରୀକୃଷ୍ଣ କହିଲେ, "ହେ କିରାତ, ଶତଧନ୍ ମୋର ପିତୃବୈରୀ । ତୁ ସାମାନ୍ୟ କିରାତ, ତାକୁ କଦାପି ରକ୍ଷା କରି ପାରିବୁ ନାହିଁ । ତାକୁ ମୋ ହାତରେ ଛାଡ଼ିଦେ । ଅକାରଣ ତାପାଇଁ କାହିଁକି ନିଜର ଜୀବନ ହରାଇବୁ ?" ଅର୍ଜ୍ଜୁନ କହିଲେ, "ରେ ଅଜ୍ଞାନ, ଶରଣାଗତକୁ ମରଣ ମୁହଁରେ ଦେବା କ୍ଷତ୍ରିୟର ଧର୍ମନୁହେଁ । ତୁ କିରାତ ହୋଇ ଏହା ବୁଝିବୁ କାହିଁ ? ଯାହାହେଉ, ତୁ ତୋର ରାଗ ଶାନ୍ତକର । ରାତିପାହି ସକାଳ ହେଲେ ଯାହା ବ୍ୟବସ୍ଥା କରିବା" । ଶ୍ରୀକୃଷ୍ଣ କହିଲେ, "ଏ ଦୁଷ୍ଟ ମହା ପାତକୀ । ଏହାକୁ ମୁହୂର୍ତ୍ତେ ସୁଦ୍ଧା ଛାଡ଼ିବାର ନୁହେଁ । ଏହା ଯୋଗୁ ଅସଂଖ୍ୟ ଜୀବନ ନାଶ ହେଲାଣି । ତୁ ଏହାକୁ ଶୀଘ୍ର ଛାଡ଼ । ନଚେତ୍ ମୋ ସହିତ ଯୁଦ୍ଧ କର । ଏହିକ୍ଷଣି ତୋତେ ଯମାଳୟକୁ ପଠାଇ ଦେବି ।" ଏହା କହି ଅର୍ଜ୍ଜୁନଙ୍କ ଉପରେ ଶର ପ୍ରୟୋଗ କଲେ । ଅର୍ଜ୍ଜୁନ ପ୍ରତିଶର କଲେ । କ୍ରମେ ଉଭୟଙ୍କ ମଧ୍ୟରେ ରାତି ତମାମ ପ୍ରବଳ ଯୁଦ୍ଧ ଲାଗିଲା । କେହି କାହାକୁ ଯୁଦ୍ଧରେ ହଟାଇ ପାରୁ ନାହାନ୍ତି । ଅର୍ଜ୍ଜୁନ ବାଛି ବାଛି ସବୁ ଦେବଶର ପ୍ରୟୋଗ କରି ସାରିଲେଣି । ମାତ୍ର ଶତ୍ରୁ ସବୁ ଶରକୁ ପ୍ରତିଶର କାଟିଦେଇ ପାରୁଛି । ଅର୍ଜ୍ଜୁନ ବଡ଼ ଆଶ୍ଚର୍ଯ୍ୟ ହେଲେ । ଶ୍ରୀକୃଷ୍ଣ ମଧ୍ୟ ମନେ ମନେ ଭାବିଲେ, କିଏ ଏହି କିରାତ ? କାହାର ପୁଅ ? ଗୋଟାଏ ଜନ୍ମରେ ଇଏ ଏତେ ଅସ୍ତ୍ର ସାଧନା କରି ପାରିଲା କିପରି ? ଉଭୟଙ୍କର ଶରୀରରେ ଉଭୟେ କ୍ଷତବିକ୍ଷତ ହେଲେଣି । କ୍ରମେ ସଂଗ୍ରାମ ଘୋରତର ହେଉଛି । ଦିଗପାଳମାନେ ଭୟରେ ସ୍ଥାନ ଛାଡ଼ି ଦେଲେଣି । ସ୍ୱର୍ଗ, ମର୍ତ୍ତ୍ୟ, ପାତାଳ, ତିନିଭୁବନ କମ୍ପିଲାଣି । ଉଭୟେ ଉଭୟଙ୍କୁ ମନେ ମନେ ପ୍ରଶଂସା କରି ବାଣ ମାରି ମାରି ହେଉଛନ୍ତି । ଏହି ସମୟରେ ଅର୍ଜ୍ଜୁନ ମର୍ମଭେଦି ଶରକୁ ବୈଶ୍ୱାନର ମନ୍ତ୍ରରେ ଅଭିମନ୍ତ୍ରିତ କରି

ଶତ୍ରୁକୁ ପ୍ରାଣରେ ନମାର ଅଚେତନ କରିବାପାଇଁ ପ୍ରୟୋଗ କଲେ । ଅଗ୍ନି-ଦେବ ଅତ୍ୟନ୍ତ ସନ୍ତୋଷ ମନରେ ଅର୍ଜ୍ଜୁନଙ୍କୁ ସମସ୍ତ ଦେବ ଅସ୍ତ୍ର ପ୍ରଦାନ କରି ବର ଦେଇଥିଲେ ଯେ ହରି ହର ବ୍ରହ୍ମା ମଧ୍ୟ ତାଙ୍କୁ ସଂଗ୍ରାମରେ ପାରିବେ ନାହିଁ । ପୁଣି ସ୍ୱୟଂ ଶ୍ରୀକୃଷ୍ଣ ମଧ୍ୟ ନିଜ ଅଂଶଦେଇ ଅର୍ଜ୍ଜୁନଙ୍କର ମହିମାକୁ ସର୍ଜନା କରିଛନ୍ତି । ଏହି ହେତୁରୁ ଅର୍ଜ୍ଜୁନଙ୍କର ମନଭେଦୀ ଶର ବିଫଳ ହେଲାନାହିଁ । ତାହା ଶ୍ରୀକୃଷ୍ଣଙ୍କର ଅଙ୍ଗ ଭେଦ କରି ତାଙ୍କୁ ଅଚେ-ତନ କରିଦେଲା ।

ଅର୍ଜ୍ଜୁନ ପର୍ବତ ଉପରୁ ଓହ୍ଲାଇ ଶ୍ରୀକୃଷ୍ଣଙ୍କୁ ଆକର୍ଷି ଧରିଲେ । ତା ପରେ କର୍ଣ୍ଣ କଟାରି ଉଞ୍ଚାଇ ହାଣିବାକୁ ଗଲାବେଳକୁ ଦେଖିଲେ ଶ୍ରୀକୃଷ୍ଣଙ୍କର ଶ୍ରୀମୁଖ ଚନ୍ଦ୍ରମା ପ୍ରାୟ ବିରାଜୁଛି । ମାରିବାକୁ ସତ ବଳୁନାହିଁ । ଅର୍ଜ୍ଜୁନ ନିଜର ହୃଦୟରେ ଏକ ଆକୁଳଭାବ ଅନୁଭବ କଲେ । ମନେ ମନେ ଭାବିଲେ କେଉଁ ମହାତ୍ମା ଏ ବୀରଶ୍ରେଷ୍ଠଙ୍କର ପିତା ? ଏପରି ବୀରତ ଏ ଜନ୍ମରେ ସେ ଭେଟି ନାହାନ୍ତି ।

ଅର୍ଜ୍ଜୁନ ଶତଧନୁକୁ ପଚାରିଲେ, କେଉଁ କାରଣରୁ ଏହାଙ୍କ ସହିତ ତାର ବିରୋଧ ହେଲା ? ଶତଧନୁ ଦ୍ୱାରକାରେ ଘଟିଥିବା ସମସ୍ତ ଘଟଣା ବର୍ଣ୍ଣନା କରିଗଲେ ଏବଂ ନିଜର ଦୁଷ୍କୃତପାଇଁ ଅର୍ଜ୍ଜୁନଙ୍କ ଗୋଡ଼ତଳେ ପଡ଼ି କ୍ଷମା ମାଗିଲେ । ଏତେବେଳକୁ ଯାଇ ଅର୍ଜ୍ଜୁନ ଶ୍ରୀକୃଷ୍ଣଙ୍କୁ ଚିହ୍ନି ପାରି ଧନୁଶର ଫିଙ୍ଗିଦେଇ ଶ୍ରୀକୃଷ୍ଣଙ୍କର ପାଦ ଦୁଇଟିକୁ ଛାତିରେ ଜାବୁଡ଼ି ଧରି ପିଲାଙ୍କ ପରି କାନ୍ଦି ଉଠିଲେ । ଅଳ୍ପ ସମୟପରେ ସାମାନ୍ୟ ପ୍ରକୃତିସ୍ଥହୋଇ ଜୀବନ୍ୟାସ ମନ୍ତ୍ର ପଢ଼ି ଶ୍ରୀକୃଷ୍ଣଙ୍କ ଦେହରୁ ମନଭେଦୀ ନାରାଚକୁ କାଢ଼ି-ନେଲେ । ଶ୍ରୀକୃଷ୍ଣ ସଙ୍ଗେ ସଙ୍ଗେ ଚେତାପାଇ ଉଠିଲେ । ଅର୍ଜ୍ଜୁନଙ୍କ ମୁଖରେ ଭାଷାନାହିଁ । ଶ୍ରୀକୃଷ୍ଣଙ୍କ ପାଦକୁ ସେହିପରି ଜାବୁଡ଼ିଧରି କଇଁ କଇଁ ହୋଇ କାନ୍ଦୁଛନ୍ତି । ଶ୍ରୀକୃଷ୍ଣ ଅର୍ଜ୍ଜୁନଙ୍କୁ ଚିହ୍ନିଲେ । ଦରହସିତ ବଦନରେ ତାଙ୍କ ଆଖିରୁ ଲୁହ ପୋଛିଦେଇ ତାଙ୍କୁ ଆଲିଙ୍ଗନ କଲେ । ଅର୍ଜ୍ଜୁନ କାନ୍ଦି କାନ୍ଦି ଶ୍ରୀକୃଷ୍ଣଙ୍କର ପାଦତଳେ ପଡ଼ି କହିଲେ, "ହେ ଜଗନ୍ନାଥ, ଭକ୍ତ ବତ୍ସଳ ପ୍ରଭୁ କରୁଣା ବାରିଧି, ହେ ସ୍ୱାମୀ ପରମ ଆନନ୍ଦମୟ ମହାଯୋଗେଶ୍ୱର, ମୁଁ ତୁମର ଜନ୍ମଜନ୍ମାନ୍ତରର ଦାସାନୁ-

ଦାସ । ନଜାଣି ମହାଅପରାଧ ଅର୍ଜନ କରିଛି । ହେ କ୍ଷମାସାଗର, ମତେ କିଣ ସତେ କ୍ଷମା କରିବ ପ୍ରଭୁ ? ଏ କଙ୍କର ଅର୍ଜୁନ, ତୁମ ଭୃତ୍ୟର ଭୃତ୍ୟ, ସତେ କିଣ ତୁମର ପୂର୍ବ ସ୍ନେହ ଫେରିପାଇବ ?”

ଶ୍ରୀକୃଷ୍ଣ ଅର୍ଜୁନଙ୍କୁ କୋଳାଗ୍ରତ କରି ତାଙ୍କୁ ବହୁତ ପ୍ରବୋଧନା ଦେଇ କହିଲେ, “ବାବୁରେ ଅର୍ଜୁନ, ତୁ ଯେ ମୋର ଦ୍ୱିତୀୟ ରୂପ, ପ୍ରାଣର ଦୋସର । ମୋର ବଡ଼ ଆନନ୍ଦ ଯେ ତୋର ହାତରେ ମୁଁ ପରାଭବ ପାଇଲି । ଏହା ତ ମୋର ପୁଣ୍ୟର ଫଳ । ତୁ ମୋତେ ଜିଣିଲୁ ବୋଲି ମୋର କି ହାନି ହେଲା ? ତୁ ଯେ ମୋର ପଞ୍ଚଭୂତ ଆତ୍ମା । ଏବେ ତୁ ମନରୁ ସବୁ ଦୁଃଖ ପାଶୋରି ମତେ ବର ମାଗ ।”

ଅର୍ଜୁନ ବହୁତ ବିନୟ ହୋଇ କରଯୋଡ଼ି କହିଲେ, “ହେ ଶରଣ ରକ୍ଷଣ ପ୍ରଭୁ ଜଗନ୍ନାଥ, ତୁମର ଅନ୍ତରରେ ଏ କଙ୍କର ଅର୍ଜୁନ ପ୍ରତି ଯଦି ସ୍ନେହ ଅଛି ତେବେ ସଂସାରରେ ତାର ଆଉ ଅଭାବ ଅଛି କଅଣ ? ଆଉ କି ବର ମାଗିବ ପ୍ରଭୁ ? ଦୟାମୟ ଯଦି ଦୟାକଲ ତେବେ ଏ ଦାସର ଅଭୟ ପାଦ ପଦ୍ମରେ ଏତିକି ପ୍ରାର୍ଥନା, ଶତଧନୁ ଶରଣାଗତ ପ୍ରାଣୀ, ତାର ଅପରାଧ କ୍ଷମାହେଉ ।”

ପ୍ରାଣପ୍ରିୟ ଅର୍ଜୁନଙ୍କର ସବିନୟ ପ୍ରାର୍ଥନା ଫଳରେ ଶ୍ରୀକୃଷ୍ଣ କୋପ ଶାନ୍ତ କଲେ । ଶତଧନୁ ପ୍ରାଣେଧରି ଏକମୁହାଁ ହୋଇ ପଳାଇଗଲା । ଆଉ ବନବାସ ଦୁଃଖ ନଭୋଗି ନିଜ ସାଥିରେ ଦ୍ୱାରକା ଯିବାପାଇଁ ଅର୍ଜୁନଙ୍କୁ ଶ୍ରୀକୃଷ୍ଣ ସସ୍ନେହ ଅନୁରୋଧ ଜଣାଇଲେ । ଅର୍ଜୁନ ହାତଯୋଡ଼ି କହିଲେ, “ପ୍ରଭୁ, ମୋର ବନବାସ ଆଉ ଏକ ବର୍ଷ ବାକିଅଛି । ଏକ ବର୍ଷ ଶେଷ ପରେ ମୁଁ ନିଶ୍ଚୟ ଦ୍ୱାରକା ଯାଇ ପ୍ରଥମେ ତୁମର ପାଦପଦ୍ମ ବନ୍ଦନା କରିବ ।” ଏ କଙ୍କରକୁ ଭୁଲିବ ନାହିଁ । ଶ୍ରୀକୃଷ୍ଣ ଅର୍ଜୁନଙ୍କୁ ପୁନର୍ବାର ଗାଢ଼ ଆଲିଙ୍ଗନ କରି ଶିର ଚୁମ୍ବନ କଲେ । ଗରୁଡ଼ଙ୍କୁ ସ୍ମରଣ କରିବାରୁ ସେ ରମ୍ୟକ ଦ୍ୱୀପରୁ ସଙ୍ଗେ ସଙ୍ଗେ ଆସି ପହଞ୍ଚିଲେ । ଶ୍ରୀକୃଷ୍ଣ ଗରୁଡ଼ ପୃଷ୍ଠରେ ବିଜେକରି ଦ୍ୱାରକାକୁ ଫେରିଗଲେ ।

—*—



ମ
ହା
ଭା
ର
ତ

ସାରଳା

୧୪ଶ ଅଧ୍ୟାୟ

## ଗୋସିଂହ ଦୈତ୍ୟ ବଧ

ଶ୍ରୀକୃଷ୍ଣ ଓ ବଳରାମ ରୈବତକ ପର୍ବତ ଉପରେ ଏକ ମହାଯଜ୍ଞ ଆରମ୍ଭ କଲେ । ଦେବତା ଓ ଋଷିମାନଙ୍କୁ ବରଣ କରି ଆଣିଲେ । ଚାରିଉଣା ଲକ୍ଷେରାଜାଙ୍କୁ ନିମନ୍ତ୍ରଣ କରାଗଲା । ଯାଦବ ବୀରମାନେ ସୈନ୍ୟସାମନ୍ତ ସହିତ ନିମନ୍ତ୍ରଣ ପତ୍ରଧରି ଚାରି ଦିଗକୁ ଚାଲିଲେ । ଚହଳ ଚହଳ ଖିଆ ପିଆ ଧୂମ୍ ଧାମ୍‌ରେ ଯଜ୍ଞ ଯୁଳୀ କର୍ମ ଲା ।

ଯାଦବ ବୀର ସାତ୍ୟକୀ ରାଜାମାନଙ୍କୁ ନିମନ୍ତ୍ରଣ କରିବା ପାଇଁ ଉତ୍ତର ଦିଗକୁ ଯାଇଥିଲେ । ଅନେକ ରାଜାଙ୍କୁ ନିମନ୍ତ୍ରଣ କରି ଶେଷରେ ଚଳନାବଳୀ ନଗରରେ ପହଞ୍ଚିଲେ । ସେଠାରେ ଅତି ସୁନ୍ଦର ସୁବର୍ଣ୍ଣମୟ ରାଜନଅର ଦେଖି ସେଠାର ରାଜାଙ୍କୁ ନିମନ୍ତ୍ରଣ କରିବାକୁ ଗଲେ । ମାତ୍ର ସେ ଜାଣନ୍ତି ନାହିଁ ଯେ ସେଠାରେ ଯେ ରାଜା, ସେ ହେଉଛନ୍ତି ମହିଷାସୁରର ବଂଶଧର ଗୋସିଂହ ନାମକ ଏକ ଅତି ଦୁର୍ଦ୍ଧାନ୍ତ ରାକ୍ଷସ । ତାର ମନୁଷ୍ୟ ଶରୀର ଓ ଗୋରୁମୁଣ୍ଡ । ସେ ରାକ୍ଷସ ତପସ୍ୟାରେ ବ୍ରହ୍ମାଙ୍କୁ ସନ୍ତୁଷ୍ଟ କରି ତିନି ଲୋକରେ ଅବଧ ବୋଲି ବର ପାଇଛି । ତାର କୋଟି କୋଟି ସୈନ୍ୟ । ତାର ସିଂହଦ୍ୱାରକୁ ଲୋହାସୁର ଓ ସିଂହନାଦ ବୋଲି ଦୁଇଟା ବିରାଟକାୟ ରାକ୍ଷସ ସହସ୍ରେ ଭାର ଗଦା ଧେନି ଜଗି ରହିଛନ୍ତି ।

ସାତ୍ୟକି ସୈନ୍ୟସାମନ୍ତଙ୍କୁ କିଛି ଦୂରରେ ରଖି ଗୋଟିଏ ଘୋଡ଼ାଚଢ଼ି ସିଂହଦ୍ୱାରରେ ପହଞ୍ଚିବା ସଙ୍ଗେ ସଙ୍ଗେ ଦୁଇ ରାକ୍ଷସ ତାଙ୍କୁ ଓଗାଳିଲେ ଓ ଆନନ୍ଦରେ ହସି ହସି କହିଲେ, "ତୁ କାହିଁର ମାନବ, ତୋର ଏଡ଼େ ସାହସ, ଅସୁରପୁରରେ ଆସି ପଶୁଛୁ ! ହଉ, ଆସିଲୁ ଭଲହେଲା । ତୋତେ ମାରି ତୋ ମାଂସରେ ଆଜ ଉତ୍ତମ ଭୋଜନଟାଏ ହେବ ।"

ସାତ୍ୟକି ଏହାଶୁଣି ତାଟକା । ହଠାତ୍ ବୁଦ୍ଧି ସଞ୍ଚୟ କରି ଚକ୍ରପାଣିଙ୍କୁ ମନେ ମନେ ସ୍ମରଣ କରି କହିଲେ, "ଏ ତ ଅସୁରପୁର ବୋଲି ମୁଁ ଜାଣିନଥିଲି । ତୁମର ରାଜାଙ୍କୁ ମୁଁ ବନ୍ଧୁ ଭାବରେ ନିମନ୍ତ୍ରଣ କରିବାକୁ ଆସିଛି । ମତେ ଆଗ ତାଙ୍କ ସହିତ ଭେଟ କରାଅ । ତାପରେ ପଛେ ଖାଇବ ।" ଯାହାହେଉ ଦୂତ ବୋଲି ଜାଣି ଅସୁର ଦୁହିଁଙ୍କର ମନରେ ଦୟାହେଲା । ସେମାନେ ସାତ୍ୟକିଙ୍କୁ ଡକାଇ ନେଇ ରାଜାଙ୍କ ସମୀପରେ ପହଞ୍ଚାଇଲେ । ଜଗତି ଉପରେ ବସିଥିବା ଗୋସିଂହ ଦୈତ୍ୟଙ୍କୁ ଦେଖି ସାତ୍ୟକି ଭୟରେ ହତବାକ୍ ହୋଇଗଲେ । ପର୍ବତ ପରି ଅସୁରର ବିରାଟ ଶରୀର, ତା ଉପରେ ବିଶାଳ ଏକ ଗୋରୁମୁଣ୍ଡରେ ଜଳନ୍ତା ଲୁହା ପିଣ୍ଡୁଳାପରି ଦୁଇଟା ଆଖି, ଖୁବ୍ ଲମ୍ବ । ଆଉ ଗୋଜିଆ ହୋଇ ଦୁଇଟା ମୋଟା ମୋଟା ଶିଙ୍ଗ, ଏପରି ଅଦ୍‌ଭୁତ ଭୟଙ୍କର ରୂପଦେଖି ସାତ୍ୟକିଙ୍କୁ ଲାଗିଲା, ସେ ଯେପରି ଅଚେତା ହୋଇ ତଳେ ପଡ଼ିଯିବେ । ସେ ମନେ ମନେ ପୁଣି ଶ୍ରୀକୃଷ୍ଣଙ୍କୁ ସ୍ମରଣ କରି ସାହାସ ବାନ୍ଧି ଠିଆ ହୋଇ ରହିଲେ । ଅସୁର ତାଙ୍କୁ ଦେଖି ହହ ହହ ହୋଇ ହସିଲା ଓ ପାଖକୁ ଡକାଇ ଆଦେଶ ଦେଲା, ସାତ୍ୟକିଙ୍କୁ ମାରି ତାଙ୍କ ମାଂସରେ ଭଲ ଏକ ରାନ୍ଧଣା ପ୍ରସ୍ତୁତ କରିବ ।

ସାତ୍ୟକି ମନକୁ ଦମ୍ଭକରି କହିଲେ, "ହେ ମହାରାଜା, ମଧୁବନର ନୃପତି ଉଗ୍ରସେନ ଏକ ଯଜ୍ଞ କରୁଛନ୍ତି । ସେ ଯଜ୍ଞରେ ଅନେକ ରାଜା ମହାରାଜା ମୁନିଋଷି ନିମନ୍ତ୍ରିତ ହୋଇ ଯୋଗ ଦେଇଛନ୍ତି । ମୁଁ ଆପଣଙ୍କୁ ସେ ଯଜ୍ଞକୁ ଯିବା ନିମିତ୍ତ ନିମନ୍ତ୍ରଣ କରି ଆସିଛି । ଗୋସିଂହ ଏହାଶୁଣି କହିଲା, "ଅଚ୍ଛା ତେବେ ତାକୁ ଛାଡ଼ିଦିଅ । ସେ ଆମକୁ ବାଟ ଦେଖାଇ ଚାଲୁ । ଯଜ୍ଞସ୍ଥାନରେତ ବହୁତ ମଣିଷ ଏକାଠି ହୋଇଥିବେ । ସମସ୍ତଙ୍କୁ

ମାରି ଖାଇବା । ମୁନିଋଷିଙ୍କୁ ମଧ୍ୟ ନିଆଁରେ ପୋଡ଼ାବଳ କରି ଖାଇବା । ରାଜ ଦରବାରରେ ବସିଥିବା ଅନ୍ୟ ଅସୁରମାନେ ମଧ୍ୟ ରାଜାର ଏ ପ୍ରସ୍ତାବକୁ ଆନନ୍ଦରେ ସମର୍ଥନ କଲେ ।

ସାତ୍ୟକୀ ଗୋବିନ୍ଦ ସ୍ମରଣ କରି ଆଗେ ଆଗେ ଚାଲିଲେ । ବିରାଟ ଅସୁର ଆଠ ତାଙ୍କ ପଛରେ ଚାଲିଲେ । ଅସୁରଙ୍କର ପାଦଘାତରେ ବନଭୂମି ପଦା ହୋଇଗଲା । ବାଟରେ ଜୀବଜନ୍ତୁ ଯାହା ପାଇଲେ, ଖାଇ ଗଲେ । ସାତ୍ୟକୀ ମନେ ମନେ ବିଚାରିଲେ, ଭଲା ମୁଁ ଏ ଅସୁର ଆଠଙ୍କୁ ବାଟ କଢ଼ାଇ ନେଲି । ଏମାନେ ଯଜ୍ଞ ନଷ୍ଟ କରିବେ । ବଳରାମ ଠାକୁର ମୋ ଉପରେ କ୍ରୋଧ କରିବେ । ପୁଣି ମନେ ଭାବିଲେ ଏ କ'ଣ ଆଉ ଦେବତାମାନଙ୍କର କୃତ୍ୟ ? ଅସୁରମାନଙ୍କୁ ମରାଇ ଧରା ନିବାରଣ କରିବାକୁ ମୋତେ ନିମିତ୍ତ କରିଛନ୍ତି ? ହେ କୃଷ୍ଣ, ହେ ଦାମୋଦର, ତୁମେହିଁ ଭରସା ।

ସନ୍ଧ୍ୟା ହୋଇଯିବାରୁ ଅସୁରମାନେ ରାତିଟା କଟାଇବାପାଇଁ ଗୋଟିଏ ବିରାଟ ପଡ଼ିଆରେ ବିଶ୍ରାମ ନେଲେ । ଏହି ସୁଯୋଗରେ ସାତ୍ୟକୀ ଧାଡ଼ାଗତି ଯାଇ ଶ୍ରୀକୃଷ୍ଣ ବଳରାମଙ୍କୁ ଏ ସମ୍ବାଦ ଦେଇଦେଲେ । ବଳରାମ ମହାକ୍ରୋଧରେ ଏକା ଏକା ଯାଇ ଅସୁରମାନଙ୍କୁ ଧ୍ୱଂସ କରିଦେବାକୁ ବାହାରିଲେ । ମାତ୍ର ସେମାନଙ୍କ ବରରେ ଅସୁର ମହା ବଳବାନ୍ ବୋଲି ପ୍ରକାଶକରି ଶ୍ରୀକୃଷ୍ଣ ବଳରାମଙ୍କୁ ଏକାକୀ ଯୁଦ୍ଧଯାତ୍ରାରୁ ନିବୃତ୍ତ କରାଇଲେ । ଏ ସମ୍ବାଦ ପ୍ରଚାର ହୋଇଯିବା ମାତ୍ରେ ଯଜ୍ଞସ୍ଥଳୀରେ ହୁଲସ୍ଥୁଲ୍ ପଡ଼ିଗଲା । ଅନେକ ରାଜା ସେ ସ୍ଥାନରୁ ପଳାଇ ଯିବାକୁ ବସିଲେ । ମୁନି ଋଷିମାନେ ଭୟ ଆତଙ୍କରେ କମ୍ପିଲେ । କାରଣ ସେମାନେ ଅନୁଭବ କରିଛନ୍ତି, ଅସୁରମାନେ ବିଶେଷକରି ମୁନିଋଷିଙ୍କୁ ଯଜ୍ଞ କୁଣ୍ଡରେ ପକାଇ ପୋଡ଼ାବଳକରି ଖାଇବାକୁ ଭାରି ଭଲପାଆନ୍ତି ।

ଶ୍ରୀକୃଷ୍ଣ ବଳରାମ ସମସ୍ତଙ୍କୁ ଆଶ୍ୱାସନା ଦେଇ ନିଜର ଆଠଧର ଯୁଦ୍ଧପାଇଁ ପ୍ରସ୍ତୁତ ହୋଇଗଲେ । ପରଦିନ ସକାଳୁ ଅସୁରଙ୍କ ସହିତ ପ୍ରବଳ ଯୁଦ୍ଧ ହେଲା । ଲକ୍ଷ ଲକ୍ଷ ଅସୁର ମଲେ, ରକ୍ତ ନଦୀ ବହିଗଲା ।

ମାତ୍ର ଅସୁର ଥାଏ କମିବାର ବା ପରାସ୍ତ ହେବାର କୌଣସି ଲକ୍ଷଣ ଦେଖିଲ ନାହିଁ । ଶ୍ରୀକୃଷ୍ଣ ବଳରାମ ବ୍ୟତିବ୍ୟସ୍ତ ହୋଇପଡ଼ିଲେ । ଏତିକି-ବେଳେ ଗୋସିଂହର ମନ୍ତ୍ରୀ ଜପାସୁର, ବହୁତ ଅସୁର ସୈନ୍ୟଙ୍କୁ ଲକ୍ଷ୍ୟକରି ବଳରାମଙ୍କ ନିକଟକୁ ଆସି କହିଲ, "ହେ ମହାତ୍ମା, ତୁମେମାନେ କିଏ ଆମେ ଜାଣୁ ନାହୁଁ । ମାତ୍ର ଆମଙ୍କୁ ନିମନ୍ତ୍ରଣକରି ଆଣି ଏପରି ମାରିବାଟା ଅନ୍ୟାୟ । ଏ ବିଶ୍ୱାସଘାତକତା । ତୁମେ ଅସୁର ନିଧନ ବନ୍ଦକର ଓ ଆମଙ୍କୁ ଅତିଥି ରୂପେ ଗ୍ରହଣ କର । ଅସୁର ମନ୍ତ୍ରୀର ଏପରି କଥାରେ ବଳରାମଙ୍କ ମନ ସନ୍ତୁଷ୍ଟ ହେଲା । ସେ ଯୁଦ୍ଧ ବନ୍ଦ କରାଇ ଗୋସିଂହକୁ ସୈନ୍ୟସାମନ୍ତ ସହିତ ଅତିଥିରୂପେ ଗ୍ରହଣ କଲେ । ସେମାନଙ୍କୁ ପ୍ରଚୁର ଖାଇବା ପିଇବାକୁ ଦେଲେ । ରଙ୍ଗଭୂମି ଶାନ୍ତ ପଡ଼ିଲା ।

ଶ୍ରୀକୃଷ୍ଣ ବଳରାମଙ୍କର ଅସୁର ସହିତ ମିତ୍ରତା ସ୍ଥାପିତ ହେବାଦେଖି ସ୍ୱର୍ଗରେ ଦେବତା ମାନଙ୍କର ଖଳବଳି ପଡ଼ିଲା । ତେବେ ଆଉ ଅସୁର ମରିବ କିପରି ? ପୃଥିବୀର ଭାର ନିବାରଣ ହେବ କିପରି ? ଦେବତା-ମାନଙ୍କ ସହିତ ପରାମର୍ଶ କରି ଦେବରାଜ ଇନ୍ଦ୍ର, ଗୋପନରେ ତାଙ୍କର ପୁତ୍ର, ଚିତ୍ରସେନଙ୍କୁ ବହୁତ ଧନରତ୍ନ ଉପହାର ସହିତ ଅସୁରର ମୃତ୍ୟୁ-ଭେଦ କହିବାପାଇଁ ବଳରାମଙ୍କ ନିକଟକୁ ପଠାଇଲେ । ଚିତ୍ରସେନ କୃଷ୍ଣ ବଳରାମଙ୍କର ପାଦପୂଜା କରିସାରି କହିଲେ ଯେ ଅସୁର କେବଳ ନିଜର ଗଡ଼ ପରିସର ମଧ୍ୟରେ ଅଜେୟ ବୋଲି ବର ପାଇଛି । ସେଠାକୁ ଫେରିଗଲେ ତାକୁ କେହି ମାରିବା ଅସମ୍ଭବ । ମାତ୍ର ଗଡ଼ର ବାହାରେ ସେ ଅଜେୟ ଅବଧ ନୁହେଁ । ତେଣୁ ସେ ଗଡ଼କୁ ଫେରିଯିବା ପୂର୍ବରୁ ବଧ କରିବାର ଚେଷ୍ଟା କରାଯାଉ । ଶ୍ରୀକୃଷ୍ଣ ଏହାଶୁଣି କିଛି ବିରକ୍ତି ପ୍ରକାଶ-କରି କହିଲେ "ତୁମେ ଦେବତାମାନେ ଅସୁରଙ୍କୁ ବରଦେଇ ବଳବାନ୍ କରାଇବ । ଆଉ ଆମକୁ ତାଙ୍କ ସଙ୍ଗେ ଯୁଦ୍ଧରେ ଲଗାଇଦେଇ ମଜା ଦେଖିବ । ରାମ ଅବତାରରେ ମୁଁ କେତେ ଦୁଃଖ କଷ୍ଟକରି ରାବଣକୁ ମାରିଲି । ବ୍ରହ୍ମା କହିଲେ ଯେ ମତେ ସେଥିପାଇଁ ବ୍ରହ୍ମହତ୍ୟା ଦୋଷ ଲଗିଲା ।"

ଯାହାହେଉ ଚିତ୍ରସେନର ବହୁତ ଅନୁନୟ ବିନୟ ପରେ ଯୁଦ୍ଧ ନିବାରଣପାଇଁ ଶ୍ରୀକୃଷ୍ଣ ବଳରାମ ଯୁଦ୍ଧ ଶେଷରେ ଅସୁରକୁ ସସୈନ୍ୟେ ନିପାତ କରିବାପାଇଁ ସ୍ଥିର କଲେ । ମାତ୍ର ଏମାନଙ୍କର ଏହି ଗୋପନ ମନ୍ତ୍ରଣା ଅସୁରର ଚତୁର ମନ୍ତ୍ରୀ ଜମ୍ବୁସୁର କର୍ପର ଜାଣିଦେଲା । ସେ ସଙ୍ଗେ ସଙ୍ଗେ ଗୋସିଂହଙ୍କୁ ଏହି ଖବର ଦେଇଦେଲା । ଆଉ ଏହା ମଧ୍ୟ ମନ୍ତ୍ରଣା ଦେଲା ଯେ କୃଷ୍ଣ ବଳରାମ ଯୁଦ୍ଧ କରୁଥିବାରୁ ବହୁଦିନ ଧରି ଉପବାସରେ ଅଛନ୍ତି । ତାଙ୍କର ଦେହ ଦୁର୍ବଳ ହୋଇଯାଇଛି । ପୁଣି ହାତରେ ଅସ୍ତ୍ରଶସ୍ତ୍ର ନାହିଁ । ଏଭଳିବେଳେ ଅଚାନକ ଭାବରେ ଆକ୍ରମଣ କଲେ ସେମାନେ ନିଶ୍ଚୟ ହାରିଯିବେ । ଆଉ ମଧ୍ୟ ସେ ଯେ ଗଡ ବାହାରେ ଅଛି, ତେଣୁ ଅଜେୟ ନୁହେଁ, ଏହାବି ମନେ ପକାଇ ଦେଲା । ଗୋସିଂହ ଆଉ କାଳ ବିଳମ୍ବ ନକରି ସଙ୍ଗେ ସଙ୍ଗେ ଆକ୍ରମଣ କରିବାକୁ ତା'ର ଥାଟକୁ ନିର୍ଦ୍ଦେଶ ଦେଲା । ପୁନର୍ବାର ଘୋର ଯୁଦ୍ଧ ଲାଗିଲା । ଶ୍ରୀକୃଷ୍ଣ ବଳରାମ ବହୁତ ଯୁଦ୍ଧକରି ମଧ୍ୟ ଅସୁରକୁ ପାରିଲେ ନାହିଁ । ଅସୁର ଶ୍ରୀକୃଷ୍ଣ ବଳରାମଙ୍କୁ ଦୁଇ କାଖରେ ଜାକି ନେଇ ଜଳନ୍ତା ଯଜ୍ଞ କୁଣ୍ଡରେ ପକାଇ ଦେଲା । ଅଗ୍ନି ଦେବତା ସେ ଦୁହିଁଙ୍କୁ ଗୋପନ କରି ନେଇ ସମ୍ଭାଳିଲେ । ଅସୁର ସେମାନଙ୍କର ପୋଡ଼ା ଶରୀରକୁ ଖାଇବାପାଇଁ ଯଜ୍ଞ କୁଣ୍ଡ ଭିତରେ ଯେତେ ଅନାଇଲା ଆଉ ପାଇଲା ନାହିଁ । ଏ ବିଚିତ୍ର ଦୃଶ୍ୟ ଦେଖି ଯଜ୍ଞ ଭୂମିରୁ ଯେ ଯୁଆଡ଼େ ଛିନ୍ନଛତ୍ର ହୋଇ ପଳାଇଲେ । ଅନେକ ପଳାଇ ନପାରି ଅସୁରମାନଙ୍କର ଖାଦ୍ୟ ହେଲେ ।

ଶ୍ରୀକୃଷ୍ଣଙ୍କର ମହିଷୀ ତ୍ରିଲୋକସୁନ୍ଦରୀ ସତ୍ୟଭାମାଙ୍କୁ ଗୋସିଂହ ବଳତ୍କାରରେ ନେଇଗଲା । ମାତ୍ର ତା'ର ମନ୍ତ୍ରୀ ତାକୁ ଏ ଅନ୍ୟାୟ ହୀନ କାର୍ଯ୍ୟ କରିବାକୁ ବାରଣ କଲା । ମନ୍ତ୍ରୀ କହିଲା, "ଏହି ନାରୀ ହରଣପାଇଁ ଅତୀତରେ ଲକ୍ଷେସିଂହର ପରାକ୍ରମୀ ବାଳି ମରିଛି, ରାବଣ ମରିଛି, ତୁମର ପୂର୍ବପୁରୁଷ ମହାବଳଶାଳୀ ମହିଷାସୁର ମରିଛି । ଏପରିକି ଇନ୍ଦ୍ର ଚନ୍ଦ୍ର ଆଦି ଦେବତାମାନେ ମଧ୍ୟ ଏହି ଅପରାଧ ହେତୁ ଦଣ୍ଡିତ ହୋଇଛନ୍ତି । ତେଣୁ ହେ ରାଜା, ଯଦି ନିଜର ମଙ୍ଗଳ ବାଞ୍ଛାକର ତେବେ ଏ ପରନାରୀଙ୍କୁ ଶୀଘ୍ର ପରିତ୍ୟାଗ କର ।" ମାତ୍ର ମଦାନ୍ଧ ଗୋସିଂହ କହିଲା ଯେ ସେ ସବୁ ବୁଝିଲେ ମଧ୍ୟ ଏପରି ଏକ ସୁନ୍ଦରୀ ନାରୀକୁ କଦାପି

ଯୁଝି ପାରିବ ନାହିଁ । ଆଉ ମଧ୍ୟ ସ୍ୱର୍ଗ ମର୍ତ୍ତ୍ୟ ପାତାଳରେ ଏପରି କୌଣସି କ୍ଷତ୍ରୀ ନାହିଁ ଯେ କି ତା'ର ମୁକାବିଲା କରିପାରିବ । ମନ୍ତ୍ରୀ କିଛିକ୍ଷଣ ନୀରବ ରହି ପୁଣି କହିଲେ, " ତେବେ ଚାଲ, ଶୀଘ୍ର ଏଠାରୁ ଗଡକୁ ଫେରିଯିବା । ଜମ୍ବୁକନ୍ଦ ସ୍ଥାନରେ ଆଉ ଦଣ୍ଡେ ରହିବା ଉଚିତ୍ ନୁହେଁ ।"

"ଜମ୍ବୁକନ୍ଦ ନଗରେ ଦଣ୍ଡେ ରହିବା ନ ଯୋଗଇ,
ଯଶ ଅପଯଶ ହୋଇ ଆପଣେ ନାଶ ଯାଇ ।"

ଶେ ସିଂହ, ମନ୍ତ୍ରୀର କଥାମାନ ଥାଟ ସହିତ ବିଜୟୁଦର୍ପରେ ନଗରକୁ ଫେରିଲା ।

ରାବଣ ସୀତାଙ୍କୁ ହରି'ଇ ନେଲାବେଳେ ସେ ଯେପରି ରାବଣର ରଥରେ ବସି ଅତି ଅସହାୟ ଭାବରେ କାନ୍ଦୁଥିଲେ, ସତ୍ୟଭାମା ମଧ୍ୟ ଶେ'ସିଂହର ରଥରେ ବସି ଉଦ୍ଧାରର କୌଣସି ସମ୍ଭାବନା ନଦେଖି ବିକଳ ସ୍ୱରରେ କାନ୍ଦୁଥିଲେ । ହଠାତ୍ ତାଙ୍କର ମନେ ପଡ଼ିଲା, ଶ୍ରୀକୃଷ୍ଣ ଦିନେ କହୁଥିଲେ ଯେ ଅର୍ଜ୍ଜୁନ ବନବାସ କରୁଛନ୍ତି । ତେଣୁ ସେ ନିରୁପାୟ ହୋଇ କାନ୍ଦିବା ସଙ୍ଗେ ସଙ୍ଗେ ମଝିରେ ମଝିରେ, "ଅର୍ଜ୍ଜୁନ ରକ୍ଷା" ବୋଲି ପାଟି କରୁଥିଲେ ।

ତାଙ୍କର ଏ ଡାକ ବୃଥା ଗଲାନାହିଁ । ସେତେବେଳକୁ ଅର୍ଜ୍ଜୁନ ମଣିଭଦ୍ର ନାମକ ପର୍ବତରେ ବାସ କରୁଥିଲେ । ଶତଧନୁ ମଧ୍ୟ ତାଙ୍କ ସଙ୍ଗରେ ଥିଲା । ଶେ ସିଂହ ଅସୁର ଥାଟ ସହିତ ଯେଉଁବାଟେ ଯିବା-ବେଳେ ସତ୍ୟଭାମାର ଡାକ ପ୍ରଥମେ ଶତଧନୁ ଶୁଣିପାରିଲା । କାରଣ ସତ୍ୟଭାମାଙ୍କର ସ୍ୱର ସହିତ ସେ ଖୁବ୍ ପରିଚିତ ଥିଲା । ମାତ୍ର ଅର୍ଜ୍ଜୁନ ଏହା ବିଶ୍ୱାସ କରିପାରିଲେ ନାହିଁ । ସେ ଭାବିଲେ, କାହିଁ ଦ୍ୱାରକା-ପୁରର ଠାକୁରାଣୀ ସ୍ୱୟଂ ଶ୍ରୀକୃଷ୍ଣଙ୍କର ପ୍ରିୟତମା ସତ୍ୟଭାମା, କାହିଁ ଏ ଘୋର ଜଙ୍ଗଲ । ଏଠାରେ ତାଙ୍କର ଉପସ୍ଥିତି କିପରି ସମ୍ଭବ ? ଯାହାହେଉ ସେ ନିଶ୍ଚିତ ହେଲେ ଯେ କୌଣସି ଏକ ଅସହାୟା ନାରୀକୁ କୌଣସି ଦୁଷ୍ଟ ରାକ୍ଷସ ହରଣ କରି ବଳାତ୍କାରରେ ନେଇଯାଉଛି । ରାତିର ଘୋର ଅନ୍ଧକାରରେ କିଛି ସ୍ପଷ୍ଟ ଦେଖା ନଯିବାରୁ ସେ ସ୍ଥିର

ଦଳେ ଯେ ସେହି ଦୁଷ୍ଟ ଦାନବର ଗତିପଥକୁ ଶର ପଥ ଦ୍ୱାରା ସବୁ ଦିଗରୁ ରୁଦ୍ଧ କରିଦେବେ । ରାତି ପାହି ସକାଳହେଲେ ଯାହା ଦେଖାଯିବ । ଏହା ବିଚାର କରି ଶରାସନକୁ ହାତରେ ଧରି ମନଭେଦୀ ନାରାଚକୁ ମନ୍ତ୍ର ପଢ଼ି ପ୍ରୟୋଗ କଲେ । ସ୍ୱର୍ଗ ମର୍ତ୍ତ୍ୟପତାଳକୁ ଧରି ଚାରି ଦିଗରେ ଅସୁରର ଗତିପଥ ରୁଦ୍ଧ ହୋଇଗଲା ।

ଏପରି ଏକ ବିପଦର ସମ୍ମୁଖୀନ ହେବବୋଲି ଅସୁର କେବେ କଳ୍ପନା କରି ନଥିଲା । ଏହା ଯେ କପରି କାହାଦ୍ୱାରା ସମ୍ଭବ ହେଲା ଅସୁର କିଛି ଅନୁମାନ କରି ପାରିଲା ନାହିଁ । ଜପାସୁର ମନ୍ତ୍ରୀକୁ ଏହାର କାରଣ ପଚାରିବାରୁ ସେ କହିଲା ଯେ ଏହି ଅପହୃତା ନାରୀର ସ୍ୱାମୀ ଏହି କାଣ୍ଡ କରିଥାଇପାରେ । ରାଜା, ତାହାର ବାରଣକୁ ନମାନି ବଳତ୍କାରରେ ଏହି ନାରୀକୁ ଆଣିବାରୁ ଏହି ବିପଦ ପଡ଼ିଲା ।

ମନ୍ତ୍ରୀର ବଚନ ଯେବେ ନମାନଇ ନୃପତି
ହତରାଜ୍ୟ ହୋଇ ନାଶ ଯାଇ ସକଳ ବିଭୂତି ।
ସ୍ୱାମୀର ବଚନ ଯେବେ ନମାନଇ ଘରଣୀ,
ଗୃହବାସ ପ୍ରାପତ ନୋହଇ ସେ ଅଟଇ ଦ୍ରୋହିଣୀ ।

ଗୋସିଂହକୁ ତ ଧର୍ମ ଛାଡ଼ିଥିଲା । ତେଣୁ ହିତ କଥା ତାକୁ ସବୁ ଅହିତ ଲାଗିଲାଣି । ସେ ଖପ୍ ରାଗିଯାଇ ମନ୍ତ୍ରୀକୁ ମାରି ଗୋଡ଼ାଇଲା ଓ କହିଲା ଯେ ଏ ସ୍ତ୍ରୀର ସ୍ୱାମୀ ଓ ଦେବଗୁରୁକୁ ସେ ନିଜ ହାତରେ ପୋଡ଼ି ମାରିଛି ।

ମନ୍ତ୍ରୀ କୌଶଳପୂର୍ବକ ସତ୍ୟଭାମାଙ୍କୁ ଲୁଚାଇ ନେଇ ନେଇଯାଇ ଅର୍ଜୁନଙ୍କ ପାଖରେ ପହଞ୍ଚିଲା । ଅର୍ଜୁନ, ସତ୍ୟଭାମାଙ୍କ ମୁଖରୁ ଶ୍ରୀକୃଷ୍ଣ ବଳରାମଙ୍କ ହତ୍ୟା ସମ୍ବାଦ ଶୁଣି ଏତେ କ୍ରୋଧାନ୍ଧ ହୋଇ ପଡ଼ିଲେ ଯେ ବିଚାର କରି କଟାରୀ ବୁଲାଇ ଜପାସୁର ମନ୍ତ୍ରୀକୁ ସଙ୍ଗେ ସଙ୍ଗେ ହାଣି ଦୁଇଖଣ୍ଡ କରିଦେଲେ ।

ରାତିପାହି ସକାଳ ହୋଇଗଲା । ଅର୍ଜୁନ ଗୋସିଂହ ଓ ତାର ବିରାଟ ଥାଟକୁ ଦେଖିଲେ । ସତ୍ୟଭାମାଙ୍କୁ ନିରାପଦ ସ୍ଥାନରେ ରଖି ମହାକ୍ରୋଧରେ ଅସୁର ସହିତ ଯୁଦ୍ଧରେ ପ୍ରବୃତ୍ତ ହେଲେ । ଅଗ୍ନି ଶର ପ୍ରହାର କରି ଲକ୍ଷ

ଲକ୍ଷ ଅସୁର ସୈନ୍ୟଙ୍କୁ ନିମିଷକ ମଧ୍ୟରେ ନାଶ କରିଦେଲେ । ଅସୁରଙ୍କ ଉପରେ ମଧ ବରାବର ଦେବଗଣର ପ୍ରୟୋଗ କରିବାକୁ ଲାଗିଲେ । ଅସୁର ମଧ କମ୍ ଶକ୍ତିଶାଳୀ ନୁହେଁ । ବ୍ରହ୍ମାଙ୍କ ବରରେ ମହାବଳବାନ୍ । ଅସୁର ଅର୍ଜୁନଙ୍କ ସହିତ ବହୁ ସମୟ ଧରି ଘୋର ଯୁଦ୍ଧ କଲା । ମାତ୍ର ସମସ୍ତ ଦେବଗଣଙ୍କର ଅଧିକାଂଶ ଅର୍ଜୁନଙ୍କୁ ସେ ଯୁଦ୍ଧରେ ହଟାଇ ନପାରି କ୍ରମେ ବଳହୀନ ହୋଇ ପଡିଲା । ଏତିକିବେଳେ ତାଙ୍କ ସାରଥି ସୂଚାଇ-ଦେଲା ଯେ ଅର୍ଜୁନ ଶରୀରର ବିଭିନ୍ନସ୍ଥାନରେ ସେ ବ୍ରହ୍ମା, ବିଷ୍ଣୁ, ରୁଦ୍ର, ଇନ୍ଦ୍ରାଦି ଦେବତାମାନଙ୍କୁ ଦେଖିପାରୁଛି । ତେଣୁ ଅର୍ଜୁନ ହାତରେ ତାର ମୃତ୍ୟୁ ଅନିବାର୍ଯ୍ୟ । ଯଦି ଜୀବନ ରକ୍ଷା କରିବାକୁ ଇଚ୍ଛା ତେବେ ଚାଲାଇ-ଯିବା କିମ୍ବା ଶତ୍ରୁଠାରେ ଶରଣ ପଶିବା ଉଚିତ । ମାତ୍ର ଗୋମିହି ଏ ପ୍ରସ୍ତାବରେ ଆଦୌ ସମ୍ମତ ନହୋଇ କ୍ଷିପ୍ର ସ୍ଫୂର୍ତ୍ତି ଧରି ପ୍ରାଣମୂର୍ଚ୍ଛା ଯୁଦ୍ଧ କଲା ଓ ଅର୍ଜୁନଙ୍କୁ ମଧ୍ୟେ ମଧ୍ୟେ ବ୍ୟତିବ୍ୟସ୍ତ କରିଦେଉଥିଲା । ଶେଷରେ ଅର୍ଜୁନ ଆଉ କାଳ ବିଳମ୍ବ ନକରି ଦୁର୍ଗା ପ୍ରଦତ୍ତ ବୈଷ୍ଣବୀ ଚକ୍ର ପ୍ରୟୋଗ କଲେ । ଚକ୍ର ତେଜରେ ଅସୁର ଜଳିଯା ହୋଇଗଲା ଓ କୌଣସି ପ୍ରତିକାର କରିପାରିଲା ନାହିଁ । ଘୂରୁଁ ଘୂରୁଁ ଚକ୍ରାଘାତରେ ଅସୁରର ବେକଠାରୁ ମୁଣ୍ଡ ପର୍ଯ୍ୟନ୍ତ କଟିଯାଇ ଗଣ୍ଡି ମୁଣ୍ଡ ଅଲଗା ହୋଇଗଲା । ଦେବତାମାନେ ସ୍ୱର୍ଗରୁ ଅର୍ଜୁନଙ୍କ ଉପରେ ପୁଷ୍ପବୃଷ୍ଟି କଲେ ।

## ସୁଭଦ୍ରା ହରଣ ।

ଏତେ ବଡ଼ ଅସୁରକୁ ମାରି ମଧ ଅର୍ଜୁନଙ୍କ ମନରେ ସୁଖନାହିଁ । ରାମକୃଷ୍ଣ କୁଆଡ଼େ ଗଲେ ? ତାଙ୍କ ବିହୁନେ ଯେ ଜୀବନ ବ୍ୟର୍ଥ । ସେ ସତ୍ୟଭାମାଙ୍କର ଚରଣ ବନ୍ଦନା କରି ତାଙ୍କୁ ସଙ୍ଗରେ ନେଇ ଶୀଘ୍ର ରୈବତକ ପର୍ବତକୁ ଚାଲିଲେ । ସେଠାରେ ଦେଖିଲେ ଯଜ୍ଞଶାଳା ଭଙ୍ଗି ଛିନ୍ନଛତ୍ର ହୋଇଛି । ଯଜ୍ଞକୁଣ୍ଡରେ ଅଗ୍ନି ତଥାପି ଜଳୁଛି । ଅର୍ଜୁନ ଶୁଚିମନ୍ତ ହୋଇ ଅଗ୍ନି ଦେବତାଙ୍କୁ ସ୍ତୁତିକଲେ । ଅଗ୍ନିଦେବତା ସନ୍ତୁଷ୍ଟ ହୋଇ ତୋପ୍ୟ ସ୍ଥଳୀରୁ ରାମ,କୃଷ୍ଣଙ୍କୁ ଆଣି ପ୍ରଦାନ କଲେ । ରାମ କୃଷ୍ଣ ଅର୍ଜୁନ ପରସ୍ପରକୁ ନିବିଡ ଭାବରେ ଆଲିଙ୍ଗନ କଲେ । ଗଡଧନୁ ହେତୁ

ସତ୍ୟଭାମା ଉଦ୍ଧାର ଓ ଅସୁର ନିଧନ ହେବାରୁ ଶୁଣି ଶ୍ରୀକୃଷ୍ଣ ଶତଧନ୍ୱାଙ୍କୁ କ୍ଷମାଦେଇ ଦ୍ୱାରକାରେ ପୁଣି ରହିବାକୁ ତାଙ୍କୁ ଅନୁମତି ଦେଲେ । ଅର୍ଜୁନଙ୍କ ପ୍ରତି ସେ ଗଭୀର କୃତଜ୍ଞତା ପ୍ରକାଶ କରି କହିଲେ "ବନ୍ଧୁରେ, ତୋତେ ମୁଁ କଅଣ ଦେବ ? ତୋତେ ମୋର ଅଦେୟ କଅଣ ଅଛି ? ତୁ ଯେ ମୋର ପ୍ରାଣ । ଭିନ୍ନ ଶରୀରରେ ଆମେ ଏକଇ ଆତ୍ମା ।" ତା ପରେ ବହୁ ଆଡ଼ମ୍ବରରେ ଯଜ୍ଞ ପୁଣି ଆରମ୍ଭ ହେଲା । ଯଜ୍ଞ ଶେଷରେ ରହସ୍ୟ କରିବା ପାଇଁ ଶ୍ରୀକୃଷ୍ଣ, ଅର୍ଜୁନଙ୍କୁ କୋଳରେ ଧରି ବସିଲେ ଏବଂ ସବୁ ରାଣୀ ଓ କନ୍ୟାମାନଙ୍କୁ ଅର୍ଜୁନଙ୍କ ଶିରରେ ଅର୍ଘ୍ୟ ଦେଇ ବନ୍ଦାପନା କରିବାପାଇଁ ଆଦେଶ ଦେଲେ । ରାଣୀମାନେ ଖୁବ୍ ଖୁସିରେ ସବେଶ ହୋଇ ଅର୍ଘ୍ୟଥାଳୀଧରି ଅର୍ଜୁନଙ୍କୁ ବନ୍ଦାପନା କରିବାକୁ ଆସିଲେ ।

ମାତ୍ର ଶ୍ରୀକୃଷ୍ଣ ଓ ଅର୍ଜୁନଙ୍କୁ ଏକାକାର ଦେଖି କିଏ ଶ୍ରୀକୃଷ୍ଣ କିଏ ଅର୍ଜୁନ ଚିହ୍ନି ପାରିଲେ ନାହିଁ । ଜାମ୍ବବତୀ କହିଲେ "ମୁଁ ଠିକ୍ କହୁଛି ଅର୍ଜୁନର କୋଳରେ ଜଗନ୍ନାଥ (ଶ୍ରୀକୃଷ୍ଣ) ବସିଛନ୍ତି ।" ରୁକ୍ମିଣୀ ବାଧା ଦେଇ କହିଲେ "ନା, ଏକଥା ଠିକ୍ ନୁହେଁ । ଅର୍ଜୁନ ଆମର ଅତିଥି । ପୁଣି ବୟସରେ ସାନ । ତେଣୁ ସେ ନିଶ୍ଚୟ ସ୍ୱାମୀ ଶ୍ରୀକୃଷ୍ଣଙ୍କ କୋଳରେ ବସିଥିବେ ।

ରାଣୀମାନଙ୍କର ଏ ଅବସ୍ଥାକୁ ଶ୍ରୀକୃଷ୍ଣ ମନେ ମନେ ବେଶ୍ ଉପଭୋଗ କରୁଥିଲେ । ଯେତେବେଳେ ସେ ଦେଖିଲେ ଯେ ସେ ନିଜେ ଅର୍ଜୁନଙ୍କୁ ଚିହ୍ନାଇ ନଦେଲେ ରାଣୀମାନଙ୍କ ପକ୍ଷରେ ତାଙ୍କୁ ଚିହ୍ନିବା ଅସମ୍ଭବ ସେତେବେଳେ ସେ ଅର୍ଜୁନ ମସ୍ତକରେ ହାତ ଦେଇ କହିଲେ, "ବାବୁରେ ଅର୍ଜୁନ, ତୋର ବନବାସ ସରିବା ପାଇଁ ଆଉ କେତେଦିନ ବାକି ଅଛି?" ଶ୍ରୀକୃଷ୍ଣ ଏପରି କହିବାରୁ ରାଣୀମାନେ ଅର୍ଜୁନଙ୍କୁ ଚିହ୍ନିଲେ ଓ ପ୍ରଥମେ ଅର୍ଘ୍ୟଦେଇ ବନ୍ଦାପନା କଲେ ।

ରାଣୀମାନଙ୍କ ସହିତ ଶ୍ରୀକୃଷ୍ଣବଳରାମଙ୍କ ଭଗିନୀ ସୁଭଦ୍ରା ମଧ୍ୟ ଅର୍ଜୁନଙ୍କ ବନ୍ଦାପନା କରିବାକୁ ଆସିଥିଲେ । ଅର୍ଜୁନଙ୍କୁ ଦେଖି ପ୍ରଥମ ଦର୍ଶନରେହିଁ ସୁଭଦ୍ରା ଅର୍ଜୁନଙ୍କ ପ୍ରତି ପ୍ରେମାସକ୍ତ ହୋଇ ପଡ଼ିଲେ ।

ଏହା ଶ୍ରୀକୃଷ୍ଣ ସତ୍ୟଭାମା ଉଭୟଙ୍କୁ ଲକ୍ଷ୍ୟ କଲେ । ବନ୍ଦାପନା କରିସାରି ଫେରିଆସିବା ପରେ ସୁଭଦ୍ରାଙ୍କର ଉଦାସ ଓ ଅନ୍ୟମନସ୍କ ଭାବକୁ ଲକ୍ଷ୍ୟ କରି ସତ୍ୟଭାମା ତାଙ୍କୁ ତା'ର କାରଣ ପଚାରୁ ପଚାରୁ ସ୍ପଷ୍ଟ କହିଦେଲେ "ତୁ ଅର୍ଜ୍ଜୁନ ପ୍ରେମରେହିଁ ପଡିଯାଇଚୁ ।" ସୁଭଦ୍ରା ଭାଉଜଙ୍କ ପାଦ ଦୁଇଟି ଜାବୁଡ଼ି ଧରି କଲ୍ଲିକଲ୍ଲି ହୋଇ କାନ୍ଦିଉଠିଲେ ଓ କହିଲେ ଯେ ଅର୍ଜ୍ଜୁନଙ୍କୁ ନପାଇଲେ ତାଙ୍କର ଜୀବନ ଧରିବା ଅସମ୍ଭବ । ସତ୍ୟଭାମା ନିଜର ଅଲିଅଳୀ ନଣନ୍ଦକୁ କୋଳ ଗତ କରି କହିଲେ ଯେ ସେ ଉପଯୁକ୍ତ ପତି ବାଛିଚି । ତେଣୁ ଏଥିରେ ସଂକୋଚ କରିବାର କିଛି ନାହିଁ । ସେ ନିଜେ ଅର୍ଜ୍ଜୁନ ସହିତ ତାର ବିବାହର ବ୍ୟବସ୍ଥା କରିବେ ।

ସତ୍ୟଭାମା ଶୀଘ୍ର ଶ୍ରୀକୃଷ୍ଣଙ୍କୁ ଏ ବିଷୟ ଜଣାଇଲେ । ଶ୍ରୀକୃଷ୍ଣ ତ ନିଜେ ଏହା ଲକ୍ଷ୍ୟ କରିଥିଲେ । ତେଣୁ ସେ ଏହା ଜାଣି ଖୁସିହେଲେ ଏବଂ କହିଲେ ଯେ ଏଥିପାଇଁ ବଡ଼ଭାଇଙ୍କର ଅନୁମତି ନେବାକୁ ହେବ । ମାତ୍ର ସେ ତ ପାଣ୍ଡବଙ୍କ ନାଁ ଶୁଣିଲେ ଚିଡ଼ନ୍ତି । ତେଣୁ ମାତା ଯଶୋଦାଙ୍କ ଦ୍ୱାରା ଭାଇଙ୍କ ଆଗରେ ଏ ପ୍ରସ୍ତାବ ପକାଯିବ । ତାହାହିଁ ହେଲା । ମାତ୍ର ନିଜ ଭଗିନୀର ଅର୍ଜ୍ଜୁନ ସଙ୍ଗେ ବିବାହ ପ୍ରସ୍ତାବ ଶୁଣି ବଳରାମ ବିରକ୍ତ ହେଲେ ଓ କହିଲେ, "ମା, ଅର୍ଜ୍ଜୁନ କଳଙ୍କିତ କୁଳର ସନ୍ତାନ । ତାର ପିତା ବ୍ରହ୍ମହତ୍ୟା କରିଥିଲେ । ମା ତାର ଅପଖ୍ୟାତିତ ଜଗତରେ ବିଦିତ । ତାକୁ ପୁଣି ମୁଁ ମୋର ଭଗିନୀକୁ ଅର୍ପଣ କରିବି । ଏହା କେବେ ସମ୍ଭବ ନୁହେଁ । ସୁଭଦ୍ରାର ଯୋଗ୍ୟ ପତି ମାନଗୋବିନ୍ଦ ଦୁର୍ଯ୍ୟୋଧନ । ମୁଁ ତା'ରି ହାତରେ ସୁଭଦ୍ରାକୁ ଅର୍ପଣ କରିବି ।" ଏହା କହି ସଙ୍ଗେ ସଙ୍ଗେ ଉଦ୍ଧବଙ୍କୁ ଡକାଇ ଦୁର୍ଯ୍ୟୋଧନଙ୍କୁ ବରଣ କରି ଆଣିବାକୁ ହସ୍ତିନାକୁ ପଠାଇଲେ ।

ଶ୍ରୀକୃଷ୍ଣ ଏହା ଶୁଣି ଆଶ୍ଚର୍ଯ୍ୟ ହେଲେ ନାହିଁ । ତେବେ ବଡ଼ଭାଇଙ୍କର ଏପରି ମନୋଭାବରେ ସେ ଟିକିଏ ଚିନ୍ତିତ ହେଲେ । ଦୁଷ୍ଟ, ଦୁରାଗ୍ରହୀ ଦୁର୍ଯ୍ୟୋଧନ ପୁଣି ହେବ ତାଙ୍କର ଭଗିନୀପତି । ଏହା କି କେବେ ସମ୍ଭବ ! ସେ କାଳବିଳମ୍ବ ନ କରି ସତ୍ୟଭାମାଙ୍କ ସହିତ ପରାମର୍ଶ କଲେ, କିପରି ଯଥାଶୀଘ୍ର ଏ ବିବାହ କାର୍ଯ୍ୟ ସମ୍ପନ୍ନ କରିବାକୁ ହେବ । ଏ ମଙ୍ଗଳକୃତ୍ୟ କିପରି ନିର୍ବିଘ୍ନରେ ସମ୍ପନ୍ନ ହେବ ଏହି ମାନସିକ କରି ସେ ସର୍ବମଙ୍ଗଳମୟୀ

ଶିବ ଓ ପାର୍ବତୀଙ୍କ ଦର୍ଶନ କରିବାପାଇଁ ରୁକ୍ମିଣୀରୂପିଣୀ ମହାଲକ୍ଷ୍ମୀଙ୍କୁ ସଙ୍ଗରେ ନେଇ କପିଳାସ ଯାତ୍ରା କଲେ । ମହାଲକ୍ଷ୍ମୀ ପଚ୍ଚରିଲେ, "ପ୍ରଭୁ, ତୁମେତ ଜଗତର ଠାକୁର । ତୁମ ଉପରେ ପୁଣି କାହାକୁ ଠାକୁର କରିଛ ? ଶ୍ରୀକୃଷ୍ଣରୂପୀ ନାରାୟଣ କହିଲେ, "ସେ ହେଉଛନ୍ତି ଅଶୋକାର ପୁରୁଷ, ଅପାପୀ, ଅଲେଖ୍ୟ, ପରମ ଯୋଗୀ, ସର୍ବତ୍ୟାଗୀ ବିଶ୍ୱସମ୍ରାଟ ସ୍ୱୟମ୍ଭୁ ଶିବ ଓ ତାଙ୍କର ପତ୍ନୀ ମହାସତୀ ପାର୍ବତୀ" ।

ଲକ୍ଷ୍ମୀ ନାରାୟଣଙ୍କର ଆଗମନ ବିଷୟ ଶିବ ଦୂରରୁ ଜାଣିଗଲେ ଓ ସେମାନେ ପହଞ୍ଚିବା ସଙ୍ଗେ ସଙ୍ଗେ ପାର୍ବତୀଙ୍କ ସହିତ ଯାଇ ତାଙ୍କୁ ପାଛୋଟି ଆଣିଲେ । ନାରାୟଣ ଶିବଙ୍କ ସହିତ ଓ ଲକ୍ଷ୍ମୀ ପାର୍ବତୀଙ୍କ ସହିତ ବସି କଥାବାର୍ତ୍ତା କଲେ । ମାତ୍ର ଲକ୍ଷ୍ମୀଙ୍କ ମନରେ ତ ଅଭିମାନ ରହିଛି । ସେ ଜଗତର ଚଳଦାତ୍ରୀ । ତାଙ୍କର ଇଚ୍ଛାରେ କେହି ସମ୍ରାଟ ହୁଏ ତ କେହି ଭିକାରୀ ହୁଏ । ପାର୍ବତୀ କଣ ତାଙ୍କଠାରୁ ବଡ଼ ? ପୁଣି ତାଙ୍କର ସ୍ୱାମୀ ଜଗତର ଠାକୁର । ଅଥଚ ସେ କହୁଛନ୍ତି ଶିବ, ସର୍ବତ୍ୟାଗୀ ବିଶ୍ୱସମ୍ରାଟ ! ସେ ମନକଥା ମନରେ ରଖି ପାର୍ବତୀଙ୍କୁ ଅପମାନିତ କରିବା ପାଇଁ ଶିବଙ୍କୁ ଲକ୍ଷ୍ୟକରି ପଚ୍ଚରିଲେ—

ଲକ୍ଷ୍ମୀ—ହେ ଦେବୀ ପାର୍ବତୀ, ଗୋଟିଏ ଭିକାରୀ ଏ ବାଟେ ଯିବାର ଦେଖିଲ କି ?

ପାର୍ବତୀ—ଭିକାରୀ ଯଦି ଦେଖିବାକୁ ଚାହଁ ତେବେ ବଳି ଦ୍ୱାରକୁ ଯାଅ । ସେଠାରେ ହୁଏତ ବାମନ ଦ୍ୱିଜ, ବଳିକୁ ଭିକ୍ଷାମାଗୁଥିବାର ଦେଖିବ ।

ଲକ୍ଷ୍ମୀ—ଆଚ୍ଛା, ତାଣ୍ଡବ ନୃତ୍ୟ କରିଯିବାର କୌଣସି ଲୋକଙ୍କୁ ଦେଖିଲ କି ?

ପାର୍ବତୀ—ବୃନ୍ଦାବନକୁ ଯାଉନା, ସେଠି ଦେଖିବ ନଟପୁରୁଷ, ବଂଶୀବଜାଇ ଗୋପାଳୁଣୀଙ୍କ ସାଙ୍ଗରେ ନାଚ କରୁଛି ।

ଲକ୍ଷ୍ମୀ—ହଉହେଲା, ଏବେ କହିଲ, ମୃଗଚ୍ଛାଲପିନ୍ଧା ଯୋଗୀ ଜଣେ ଏ ବାଟେ ଗଲା କି ?

ପାର୍ବତୀ—ଆହେ, ମୃଗ କଥା ବାରହାକୁ ପଚ୍ଚର । (ନାରାୟଣ ବରାହ ରୂପ ହୋଇଥିଲେ । )

ଲକ୍ଷ୍ମୀ—ଆଜ୍ଞା ପ୍ରଭୁ, ବୃଦ୍ଧା ଯୋଗୀଟାଏ ହାଡ଼ମାଳ ବେକରେ ପକାଇ ବଳଦ ଚଢ଼ି ଏବାଟେ ଗଲେ କି ?

ପାର୍ବତୀ—ଗୋରୁ ବଳଦଙ୍କ କଥା ଗଉଡ଼ ଜାଣନ୍ତି । ସେ କଥା ଗୋପପୁରରେ ଯାଇ ପଚାର । ଆଉ ହାଡ଼, ମାଉଁସ, ରକ୍ତରେ ପୂର୍ଣ୍ଣ ହିରଣ୍ୟ ରାକ୍ଷସର ମୁଣ୍ଡାଟାକୁ ତଳେ ନ ପକାଇ ସବୁବେଳେ ଯେ କୋଳରେ ଧରିଛି ହାଡ଼ ପିନ୍ଧିବା କଥା ସେଇଆକୁ ଯାଇ ପଚାର ।

ଲକ୍ଷ୍ମୀ ମନେ ମନେ ଭାବିଲେ ଏ ସେ ଧରିଗଲେ । ଶିବଙ୍କୁ ଲକ୍ଷ୍ୟକରି ସେ ଯେତେ ଯେତେ କଥା କହିଲେ, ନାରାୟଣଙ୍କୁ ଲକ୍ଷ୍ୟକରି ପାର୍ବତୀ ସବୁ କଥାକୁ ଲେଉଟାଇ କହିଲେ । ଲକ୍ଷ୍ମୀ ପାର୍ବତୀଙ୍କର ଚରଣ ଛୁଇଁବାକୁ ଯାଆନ୍ତେ ପାର୍ବତୀ ସଙ୍ଗେ ସଙ୍ଗେ ଲକ୍ଷ୍ମୀଙ୍କୁ କୋଳାଗ୍ରତ କଲେ । ହରି ହର ଲକ୍ଷ୍ମୀ ପାର୍ବତୀ ଏକାକାର ହେଲେ ।

କୈଳାସରୁ ଫେରି ଶ୍ରୀକୃଷ୍ଣ, ସୁଭଦ୍ରାଙ୍କର କପରି ମିଳନ ହେବ ତାର ଯୋଗାଡ଼ରେ ଲାଗିଲେ । ଶ୍ରୀକୃଷ୍ଣଙ୍କର ନିର୍ଦ୍ଦେଶରେ ସତ୍ୟଭାମା ସୁଭଦ୍ରାଙ୍କୁ ଅର୍ଜ୍ଜୁନଙ୍କର ଶୟନ ମନ୍ଦିରକୁ ଅର୍ଦ୍ଧରାତ୍ର ସମୟରେ ନେଇ ଗଲେ । ଉଦ୍ଦେଶ୍ୟ ହେଉଛି, ସୁଭଦ୍ରା ଅର୍ଜ୍ଜୁନ ମଧ୍ୟରେ ପରସ୍ପର ପ୍ରୀତି ପ୍ରତିଷ୍ଠାହେଲେ ବଳରାମଙ୍କର ଆଉ ବିରୋଧ କରିବାକୁ ନଥିବ । ତେଣୁ ସୁଭଦ୍ରାଙ୍କୁ ବିବାହ କରିବାକୁ ଆଉ ଦ୍ୱିତୀୟ ବ୍ୟକ୍ତିର ପ୍ରଶ୍ନ ଉଠିବ ନାହିଁ ।

ମାତ୍ର ଏ ଯୋଜନା ପଣ୍ଡ ହୋଇଗଲା । ସତ୍ୟଭାମା ଓ ସୁଭଦ୍ରା ଯେତେ ଅନୁନୟ ବିନୟ କଲେମଧ୍ୟ ଅର୍ଜ୍ଜୁନ କବାଟ ଫିଟାଇଲେ ନାହିଁ । ଭିତରେ ଥାଇ କହିଲେ "ମା'ଗୋ ସତ୍ୟଭାମା, ପର ସ୍ତ୍ରୀ ମୋ ମାତା, ପର ପୁରୁଷ ମୋର ପିତା । ତୁମେମାନେ ଦେବ ନାରୀ । ମୁଁ ଛାର ମନୁଷ୍ୟ । ପୁଣି ସୁଭଦ୍ରା ଦୁର୍ଯ୍ୟୋଧନଙ୍କୁ ବିବାହ କରିବା ପ୍ରସ୍ତାବ ମୁଁ ଜାଣିଛି । ଦୁର୍ଯ୍ୟୋଧନ ମୋର ଜ୍ୟେଷ୍ଠଭ୍ରାତା । ତେଣୁ ସୁଭଦ୍ରା ତାଙ୍କର ସ୍ତ୍ରୀ ହେଲେ ମୋର ମାତୃ ସ୍ଥାନୀୟା ହେବେ । ପୁଣି ମୁଁ ଏଠାରେ ଅତିଥି ରୂପେ ରହି ଏ ଦୁଷ୍କାର୍ଯ୍ୟରେ ପ୍ରବୃତ୍ତ ହେଲେ ଶ୍ରୀକୃଷ୍ଣ, ବଳରାମ ମୋତେ କଅଣ କହିବେ ? ଦୁନିଆଁ ମତେ କଅଣ କହିବ ? କୋଟିଏ ସିଂହର ପରାକ୍ରମଶାଳୀ ବଳରାମ ମୋତେ ଆଉ ଜୀବନଧରି ଫେରିବାକୁ ଦେବେ ନାହିଁ ।"

ସୁଭଦ୍ରା ସହିତ ଅର୍ଜ୍ଜୁନଙ୍କର ମିଳନ ଶ୍ରୀକୃଷ୍ଣଙ୍କର ଇଚ୍ଛା ଏବଂ ତାଙ୍କର ନିର୍ଦ୍ଦେଶରେ ସେମାନେ ଆସିଛନ୍ତି ବୋଲି କହିଲେ ମଧ୍ୟ ଅର୍ଜ୍ଜୁନଙ୍କ ମନରେ କୌଣସି ପରିବର୍ତ୍ତନ ହେଲା ନାହିଁ । ସୁଭଦ୍ରାମଧ୍ୟ ଶେଷରେ କାନ୍ଦି କରି କହିଲେ ଯେ ସେ ତାଙ୍କୁ ପତିରୂପେ ବରଣ କରି-ସାରିଛନ୍ତି । ଦୁର୍ଯ୍ୟୋଧନଙ୍କ ଦୂରର କଥା, ସ୍ୱୟଂ କାମଦେବଙ୍କୁ ମଧ୍ୟ ସେ ନିଶ୍ଚିତଭାବେ ପ୍ରତ୍ୟାଖ୍ୟାନ କରିବେ । ମାତ୍ର ଏ ସବୁ କଥା ବ୍ୟର୍ଥହେଲା । ଶେଷରେ ଅର୍ଜ୍ଜୁନ ରାଗିକରି ସୁଭଦ୍ରାଙ୍କୁ କହିଲେ, "ତୁ ଅତି ଦୁଷ୍ଟା, ନିର୍ଲଜ୍ଜି ଝିଅଟା । ଗଉଡ଼ କୁଳରେ ତୋର ଜନ୍ମ । ତୋର ଯୋଗେ ରାମକୃଷ୍ଣଙ୍କର ବଦ୍‌ନାମ ହେବ । ଶୀଘ୍ର ଏଠୁ ଚାଲିଯା କହୁଛି ।"

ସତ୍ୟଭାମା ଓ ସୁଭଦ୍ରା ନିରାଶ ହୋଇ ଫେରି ଶ୍ରୀକୃଷ୍ଣଙ୍କୁ ସବୁ ବିଷୟ ଜଣାଇଲେ । ଶ୍ରୀକୃଷ୍ଣ ତାଙ୍କୁ ତୁରନ୍ତ ପ୍ରଦ୍ୟୁମ୍ନର ସ୍ତ୍ରୀ ମାୟାବତୀଙ୍କ ନିକଟକୁ ଯିବାକୁ ପରାମର୍ଶ ଦେଲେ । ମାୟାବତୀ ତନ୍ତ୍ର ମନ୍ତ୍ରରେ ନିପୁଣା । ସତ୍ୟଭାମା ଓ ସୁଭଦ୍ରାଙ୍କୁ ସେ ବହୁତ ଆଦର ଗୌରବ କଲେ ଓ ଆସିବାର କାରଣ ପଚାରିଲେ । ସବୁ ଶୁଣି ସାରି ସେ ପ୍ରଥମେ ସୁଭଦ୍ରାଙ୍କୁ 'ଫାଟଣି' ମନ୍ତ୍ର ଶିଖାଇଦେଲେ । ଏହି ମନ୍ତ୍ର ପଢ଼ି ଛୁଇଁଦେଲେ ସାତପରସ୍ଥ କବାଟ ମଧ୍ୟ ଫିଟି ଯିବ । ଉଲ୍ଲୁକ ବିଦ୍ୟା ଦ୍ୱାରା ମନ୍ତ୍ର କରି ଆଖିରେ ଲଗାଇବାକୁ ଏକ ଅଞ୍ଜନ ଦେଲେ । ତାକୁ ଆଖିରେ ଲଗାଇଲେ ରାତିରେ ମଧ୍ୟ ସହସ୍ର ଯୋଜନ ଦେଖାଯିବ । ଶେଷରେ ବଶୀକରଣ ମନ୍ତ୍ର ଶିଖାଇଲେ । ଏହାକୁ ପଢ଼ି ଧୂଳି ମନ୍ତ୍ର କରି ଯାହା ଉପରେ ପକାଇବ ସେ ଯେତେ ନିଷ୍ଠୁର ପାଷାଣ ହେଲେ ମଧ୍ୟ ନିମିଷକ ମଧ୍ୟରେ ସମ୍ପୂର୍ଣ୍ଣ ଆୟତ୍ତ ଓ ବଶ ହୋଇଯିବ ।

ସତ୍ୟଭାମା ଓ ସୁଭଦ୍ରା ଅତ୍ୟନ୍ତ ଆନନ୍ଦିତ ହୋଇ ନିଶାର୍ଦ୍ଧରେ ପୁଣି ଅର୍ଜ୍ଜୁନଙ୍କର ଶୟନ କକ୍ଷକୁ ଗଲେ । ମନ୍ତ୍ର ପଢ଼ି କବାଟରେ ହାତ ମାରି-ଦେବା ମାତ୍ରେ ସାତ ପରସ୍ଥ କବାଟ ଫିଟି ଗଲା । ରତ୍ନ ଦୀପର ଆଲୋକରେ ଅର୍ଜ୍ଜୁନ ସ୍ପଷ୍ଟ ଭାବେ ସତ୍ୟଭାମା ଓ ସୁଭଦ୍ରାଙ୍କୁ ଦେଖିବାକୁ ପାଇଲେ । ତାଙ୍କର ଆଶ୍ଚର୍ଯ୍ୟରେ ସୀମା ରହିଲା ନାହିଁ । ସାତ କବାଟ ଫିଟିଲା କିପରି ? ଏଣେ ସୁଭଦ୍ରା ବିଳମ୍ବ ନ କରି ଅର୍ଜ୍ଜୁନଙ୍କ ଅଲକ୍ଷ୍ୟରେ ତାଙ୍କ

ଉପରେ ମନ୍ତ୍ର ଧୂଳି ନିକ୍ଷେପ କଲେ । ସତ୍ୟଭାମା ହସି ହସି କହିଲେ, "ହେ ବୀରଶ୍ରେଷ୍ଠ ଅର୍ଜୁନ, ଏବେ ସୁଭଦ୍ରାଙ୍କୁ ତୁମେ ସମ୍ଭାଳ । ମୁଁ ଚାଲିଲି" । ଏହା କହି ସେ ଚାଲିଗଲେ । ଅର୍ଜୁନଙ୍କୁ ଏସବୁ ଭେଲକି ଲାଗିଲା ପରି ମନେ ହେଉଥାଏ । ସେ ଦେଖିଲେ, ସୁଭଦ୍ରାଙ୍କଠାରେ ଯେତେ ଯେପରି ସମଗ୍ର ବିଶ୍ୱ ବ୍ରହ୍ମାଣ୍ଡର ଶୋଭାରାଶି ଠୁଳ ହୋଇଛି । ନାରୀର ଏପରି ସୌନ୍ଦର୍ଯ୍ୟ ସେ ହୁଏତ ଜୀବନରେ ଆଉ କେଉଁଠି ଦେଖି ନାହାନ୍ତି । ସୁଭଦ୍ରା ମୃଦୁ ମୃଦୁ ହସି ଅର୍ଜୁନଙ୍କ ପ୍ରତି କଟାକ୍ଷ ପାତ କଲେ । ଅର୍ଜୁନ ଏତେ କାମାସକ୍ତ ହୋଇ ପଡ଼ିଲେ ଯେ ସେ ସମ୍ପୂର୍ଣ୍ଣ ଆତ୍ମ ବିସ୍ମୃତ ହୋଇ ସୁଭଦ୍ରାଙ୍କୁ ଗାଢ଼ ଆଲିଙ୍ଗନ ପାଶରେ ଆବଦ୍ଧ କଲେ । ସୁଭଦ୍ରା କୃତ୍ରିମ କ୍ରୋଧ ପ୍ରକାଶ କରି କହିଲେ, "ହେ ଅର୍ଜୁନ, ମତେ ଛାଡ଼ । ମୁଁ ଘରକୁ ଯାଏଁ । ମୁଁ ତ ଦୁଷ୍ଟା କଳଙ୍କିନୀ, ଗଉଡ଼ କୁଳରେ ଜନ୍ମ । ତୁମର ପତ୍ନୀ ହେବାକୁ ଅଯୋଗ୍ୟ । ପୁଣି ମୁଁ ତୁମର ପ୍ରିୟ ସଖା ଶ୍ରୀକୃଷ୍ଣଙ୍କର ଭଉଣୀ । ମୋ ପ୍ରତି ତୁମର ଏପରି ଆଚରଣ ଶୋଭନୀୟ ନୁହେଁ । କୃଷ୍ଣ ବଳରାମ ଏହା ଜାଣିଲେ କଣ କହିବେ ? ଦୁନିଆଁ କଣ କହିବ ? ମୋ ଭାଇ ବଳରାମ ମହା ବଳବାନ୍ ଓ ଖୁବ୍ ରାଗୀ । ଏହା ଜାଣିଲେ ସେ ତୁମକୁ ନିଶ୍ଚୟ ହତ୍ୟା କରିବେ" । ମାତ୍ର ଅର୍ଜୁନଙ୍କ ମୁଖରେ ଭାଷା ନ ଥିଲା ।

ଏ ଘଟଣା ବେଶି ଦିନ ଲୁଚି ରହିଲା ନାହିଁ । ଦିନେ ଜଳକେଳୀ ସମୟରେ ରେବତୀ, ସୁଭଦ୍ରାଙ୍କ ଶରୀରରେ ସମ୍ଭୋଗର ଚିହ୍ନମାନ ଲକ୍ଷ୍ୟ କରି ବଡ଼ ଆଶ୍ଚର୍ଯ୍ୟ ହେଲେ । ଯେଉଁ ଦ୍ୱାରକାପୁରୀ ଦେବତାଙ୍କୁ ଦୁର୍ଲ୍ଲଭ, ସ୍ୱୟଂ ସୁଦର୍ଶନ ଚକ୍ର ଯେଉଁ ପୁରର ରକ୍ଷାକାରୀ ତା ଭିତରେ ପଶି ଏତେ ବଡ଼ କାଣ୍ଡ କିଏ କରି ପାରିଲା ? ସେ ସୁଭଦ୍ରାଙ୍କୁ ଗୋପନରେ ଡାକି ପଚାରିବାରୁ ସୁଭଦ୍ରା ବଡ଼ ଭାଉଜଙ୍କର ଚରଣ ଧରି ସବୁ ସତ କଥା କହିଗଲେ ଏବଂ ବଡ଼ ଭାଇଙ୍କ କୋପରୁ ରକ୍ଷା କରିବାକୁ ଆକୁଳ ନିବେଦନ ଜଣାଇଲେ । ରେବତୀ ସୁଭଦ୍ରାଙ୍କୁ ଆଶ୍ୱାସନା ଦେଇ ସ୍ୱାମୀ ବଳରାମଙ୍କୁ ଏ ଘଟଣା ଜଣାଇଲେ ଓ କ୍ରୋଧ ନ କରିବାକୁ ଅନେକ ପ୍ରକାରେ ବୁଝାଇଲେ । ମାତ୍ର ଏହା ଶୁଣୁ ଶୁଣୁ ବଳରାମ ପ୍ରଚଣ୍ଡ କ୍ରୋଧରେ ଅଗ୍ନିଶର୍ମା ହୋଇ ଉଠିଲେ ଓ ଅର୍ଜୁନଙ୍କୁ ଧରି ଆଣି ମାରି ଛିକ୍ ଛିକ୍ କରିଦେବାକୁ ଯାଦବ ସେନାବାହିନୀକୁ ସଙ୍ଗେ ସଙ୍ଗେ ଆଦେଶ ଦେଲେ । ଏ ଖବର ପାଇ ଶ୍ରୀକୃଷ୍ଣ

ବିଞ୍ଚ ଭାଇଙ୍କ ପାଦ ଧରିବହୁତ ଅନୁନୟ ବିନୟ କଲେ । "ଆମେ ତ ଯୁବତୀ କନ୍ୟାକୁ ହେଳାରେ ବିବାହ ନ ଦେଇ ଘରେ ସାଇଛିଲେ । ଆମ କୁଳରେ ତ ଗାନ୍ଧର୍ବ ବିବାହ ଅଛି । ଅର୍ଜ୍ଜୁନ ଦ୍ୱାରକାର କେତେ ଉପକାର ନ କରିଛି, ତାଙ୍କୁ ମାରିବାକୁ ଆପଣଙ୍କର କିପରି ସତ ବଳିବ ?" ମାତ୍ର ସବୁ ବୃଥା ହେଲା । ବଳରାମଙ୍କ କ୍ରୋଧ ଶାନ୍ତ ନ ହୋଇ ବରଂ ଦ୍ୱିଗୁଣିତ ହେଲା । ସେ ଶ୍ରୀକୃଷ୍ଣଙ୍କ ଉପରେ ମଧ୍ୟ ବିରକ୍ତ ହୋଇ ତାଙ୍କୁ ବହୁତ ଭର୍ତ୍ସନା କରି କହିଲେ । ଏଣେ ରାଜା ଦୁର୍ଯ୍ୟୋଧନ ବର ବେଶ ହୋଇ କୁରୁଥାଟ ଧରି ଦ୍ୱାରକାରେ ପ୍ରବେଶ କଲେ ।

ସତ୍ୟଭାମା ଓ ସୁଭଦ୍ରା ଏହା ଶୁଣି ପାରି ଅର୍ଜ୍ଜୁନଙ୍କ କକ୍ଷକୁ ଯାଇ ତାଙ୍କୁ ସବୁ ବିଷୟ ଜଣାଇଲେ ଏବଂ ଅତି ଶୀଘ୍ର ସୁଭଦ୍ରାଙ୍କ ସହିତ ଦ୍ୱାରକା ଛାଡ଼ି ରାତାରାତି ଚାଲିଯିବା ପାଇଁ ଅନୁରୋଧ କଲେ । ମାତ୍ର ଅର୍ଜ୍ଜୁନ କହିଲେ, "ମା, ଚୋର ପରି ପଳାଇ ଯିବା ମୋ ପକ୍ଷରେ ଅସମ୍ଭବ । ଯେ କେହି ହୁଅନ୍ତୁ, ଶତ୍ରୁରୂପରେ ଆସିଲେ ମୁଁ ତାଙ୍କ ସଙ୍ଗେ ନିଶ୍ଚୟ ଯୁଦ୍ଧ କରିବି । କେବଳ 'ଜଗନ୍ନାଥ'ଙ୍କୁ କହିବି, ସେ ମୋତେ କିଞ୍ଚିତ ମାତ୍ର ଦୟା କରିଥିବେ ।" ସତ୍ୟଭାମା ଫେରିଯାଇ ଶ୍ରୀକୃଷ୍ଣଙ୍କୁ ଅର୍ଜ୍ଜୁନ କହିବା ମତେ ଜଣାଇଲେ । ତା ପରେ ଅର୍ଜ୍ଜୁନ ସୁଭଦ୍ରାଙ୍କୁ କହିଲେ, "ତୁମେ ଚିନ୍ତାକର ନାହିଁ । ବଳକାରରେ ତ ମୋ ସହିତ ପ୍ରୀତି କଲ । ମୁଁ ଯଦି ଯୁଦ୍ଧରେ ମରିଯାଏ ତେବେ ତୁମେ କର୍ମ ଫଳ ଭୋଗ କରିବ ।" ଏହା ଶୁଣି ସୁଭଦ୍ରା ଅତି ବିକଳ ହୋଇ କାନ୍ଦିବାରୁ ଅର୍ଜ୍ଜୁନ ତାଙ୍କୁ ସାନ୍ତ୍ୱନା ଦେଇ କହିଲେ, "ଦେବୀ, ତୁମେ ବ୍ୟସ୍ତ ହୁଅ ନାହିଁ । ତୁମେ ମୋର ଧର୍ମ ପତ୍ନୀ ହେବା ବିଧି ନିର୍ଦ୍ଦେଶ । ଯଦି କେବଳ "ଜଗନ୍ନାଥ" ମୋତେ କିଞ୍ଚିତ ଦୟା କରିଥିବେ ତେବେ ମୋତେ ଜିଣନ୍ତା ହୋଇ ଏ ବିଶ୍ୱ ବ୍ରହ୍ମାଣ୍ଡରେ କେହି ନାହିଁ ।" ସୁଭଦ୍ରା ସ୍ମରଣ କରିବାରୁ ମାୟାଦେବୀ ଅର୍ଜ୍ଜୁନଙ୍କ ପାଇଁ ଏକ ଦିବ୍ୟ ବିମାନ ଯୋଗାଇ ଦେଲେ ।

ପରଦିନ ପ୍ରଭାତ ହେବା ପୂର୍ବରୁ ଲକ୍ଷ ଲକ୍ଷ ଯାଦବ ସୈନ୍ୟ ଅର୍ଜ୍ଜୁନଙ୍କର ଶୟନକକ୍ଷ ଚତୁର୍ଦ୍ଦିଗରେ ଘେରିଗଲେ । ଅର୍ଜ୍ଜୁନ ମାୟାଦେବୀଙ୍କ ପ୍ରଦତ୍ତ ବିମାନରେ ସୁଭଦ୍ରାଙ୍କ ସହିତ ବସି ଯୁଦ୍ଧ ଆରମ୍ଭ କଲେ । ନିମିଷକ

ମଧ୍ୟରେ ଯାଦବ ସୈନ୍ୟ ହାରି ଛତ୍ରଭଙ୍ଗ ଦେଇ ପଳାଇଲେ । ତାପରେ ସ୍ୱୟଂ ବଳରାମ ଅକଳନ ଯାଦବ ସୈନ୍ୟ ନେଇ ଯୁଦ୍ଧରେ ଅବତୀର୍ଣ୍ଣ ହେଲେ । ଦୁର୍ଯ୍ୟୋଧନଙ୍କ କୁରୁସେନା ମଧ୍ୟ ତାଙ୍କ ସହିତ ଯୋଗ ଦେଲେ । ଏହା ଦେଖି ଶ୍ରୀକୃଷ୍ଣଙ୍କର ଲକ୍ଷେ ଷାଠିଏ ହଜାର ପୁଅ ଅର୍ଜ୍ଜୁନଙ୍କ ପକ୍ଷରେ ରହି ଯୁଦ୍ଧ କରିବାକୁ ତାଙ୍କ ପଛରେ ଆସି ଠିଆ ହେଲେ । ଯାଦବ ସୈନ୍ୟମାନେ ସେମାନଙ୍କୁ ଅର୍ଜ୍ଜୁନଙ୍କ ସପକ୍ଷରେ ଦେଖି ଅସ୍ତ୍ର ତ୍ୟାଗ କରି ବଳରାମଙ୍କୁ ଅନୁନୟ କରି କହିଲେ, "ପ୍ରଭୁ, ଆମେ ଆମରି ମୁନିବମାନଙ୍କ ବିପକ୍ଷରେ କପରି ଅସ୍ତ୍ର ଧାରଣ କରିବୁ ? ବଳରାମ କିଛି ନଶୁଣି ମହା-କ୍ରୋଧରେ ଅର୍ଜ୍ଜୁନଙ୍କୁ ଆକ୍ରମଣ କଲେ । ବଳରାମ ଓ ଅର୍ଜ୍ଜୁନଙ୍କ ମଧ୍ୟରେ ଏପରି ପ୍ରବଳ ଯୁଦ୍ଧ ହେଲା ଯେ ଦେବତାମାନେ ମଧ୍ୟ ଆକାଶରେ ରହି ଏହି ଅଦ୍ଭୁତ ପୂର୍ବ ଯୁଦ୍ଧ ଦେଖିବାକୁ ଲାଗିଲେ । ବଳରାମ, ଅର୍ଜ୍ଜୁନଙ୍କ ବୀରତ୍ୱକୁ ମନେ ମନେ ପ୍ରଶଂସା କଲେ । ଶେଷରେ ଶ୍ରୀକୃଷ୍ଣ ଆପଣାର ତେଜକୁ ଅର୍ଜ୍ଜୁନଙ୍କ ଶରୀରରେ ପ୍ରଦାନ କଲେ । ବଳରାମ ଦେଖିଲେ ସେ ଯେପରି ଅର୍ଜ୍ଜୁନ ଶରୀରରେ ସ୍ୱୟଂ ଶ୍ରୀକୃଷ୍ଣଙ୍କୁ ଦେଖୁଛନ୍ତି । ଏହା ଦେଖି ତାଙ୍କର କ୍ରୋଧ କ୍ରମେ ଶାନ୍ତ ହୋଇ ଆସିଲା । ସେ ଶରାସନ ତ୍ୟାଗ କଲେ । ଏହା ଦେଖି ଅର୍ଜୁନ ରଥରୁ ଓହ୍ଲାଇ ତାଙ୍କର ପାଦ ତଳେ ସାଷ୍ଟାଙ୍ଗ ପ୍ରଣିପାତ କରି ଅପରାଧ ମାର୍ଜନା କରିବାକୁ ପ୍ରାର୍ଥନା କଲେ । ସୁଭଦ୍ରା ମଧ୍ୟ ଜ୍ୟେଷ୍ଠ ଭ୍ରାତାଙ୍କର ପାଦତଳେ ସାଷ୍ଟାଙ୍ଗ ପ୍ରଣିପାତ କଲେ । ସେତେବେଳକୁ ଦୁର୍ଯ୍ୟୋଧନଙ୍କ ସହିତ କୌରବ ଆଦି ଯୁଦ୍ଧରେ ଛତ୍ରଭଙ୍ଗ ଦେଇ ପଳାଇ ଯାଇଥିଲେ । ମହା ସମାରୋହରେ ସୁଭଦ୍ରା ଅର୍ଜୁନଙ୍କର ବିବାହ ହେଲା ।



ମ
ହା
ଭା
ର
ତ

ସାରଳା

୨୪ଶ ଅଧ୍ୟାୟ

## ସୁଗନ୍ଧିକା ହରଣ

ଥରେ ଦେବର୍ଷି ନାରଦ ଦ୍ୱାରକାରେ ପହଞ୍ଚି ଶ୍ରୀକୃଷ୍ଣଙ୍କର ମାତା ଦେବକୀ ଓ ଯଶୋଦାଙ୍କୁ କହିଲେ ଯେ ଦୁହେଁ କାମାକ୍ଷୀ ବ୍ରତ କରନ୍ତୁ । ଏହି ବ୍ରତ କଲେ ଜନ୍ମେ ଜନ୍ମେ ବିଷ୍ଣୁଙ୍କୁ ପୁତ୍ର ରୂପେ ପାଇବେ । ନାରଦ ଏହି ବ୍ରତ ପାଳନ ବିଧି ବତାଇ ଦେଲେ । ସେହି ମୁତାବକ ସମସ୍ତ ଦ୍ରବ୍ୟ ଯୋଗାଡ଼ ହେଲା । ଶେଷରେ ନାରବ ଏହି ବ୍ରତ ପାଇଁ ଏକ ଅତି ଦୁର୍ଲ୍ଲଭ ପୁଷ୍ପ ଆବଶ୍ୟକ ବୋଲି କହିଲେ । ତାହା ହେଉଛି ସୁଗନ୍ଧିକା ପୁଷ୍ପ । ଏହା କେବଳ ଯକ୍ଷ ରଜାର ମଧୁବନ ତୋଟାରେ ଥିବା ମନୋହରୀ ସରୋବରରେ ଫୁଟେ । ସେଠାରୁ ଫୁଲ ଆଣିବା ଏକ ଦୁରୂହ ବ୍ୟାପାର । କାରଣ କାଳୀ ନାଗୁଣୀ ତାର ବଂଶ କୁଟୁମ୍ବଙ୍କୁ ଧରି କାଳନ୍ଦୀ ହ୍ରଦରୁ ପଳାଇ ଯାଇ ସେହି ସରୋବରରେ ରହିଛି । କଶ୍ୟପ ମୁନିଙ୍କର ଶାପ ହେତୁ ଗରୁଡ଼ ସେହି ସରୋବରରେ ପଶିପାରେ ନାହିଁ । କାରଣ ଥରେ ଗରୁଡ଼ ଏହି ସରୋବରରୁ ଗୋଟିଏ ବଡ଼ କଇଁଛକୁ ଧରି ଖାଇ ସାରି ତାର ଖୋଳା ପକାଇ ଦେବାରୁ ତାହା ଆସି ସନ୍ଧ୍ୟା କରୁଥିବା କଶ୍ୟପ ମୁନିଙ୍କ ଉପରେ ପଡ଼ିଲା । ତେଣୁ ମୁନି ଶାପ ଦେଲେ ଯେ ଗରୁଡ଼ ଏ ସରୋବରରେ ପଶିଲେ ସଙ୍ଗେ ସଙ୍ଗେ ଜଳିଯିବ । ସେହି ଦିନୁ ଗରୁଡ଼ ଏହି ସରୋବରରେ ପଶି ପାରେ ନାହିଁ । ତେଣୁ କାଳୀ ନାଗୁଣୀ ତାର ଅସଂଖ୍ୟ କୁଟୁମ୍ବଙ୍କୁ ଧରି ନିଶ୍ଚିନ୍ତରେ ଏହି ସରୋବରରେ ବାସ କରିଥାଏ ।

ଏହା ଛଡ଼ା ତ୍ରେତା ଯୁଗ ମଲ୍ଲ ରାମ ଭକ୍ତ ହନୁମାନ ମଧ୍ୟ ବାନରଙ୍କ ଦଳଙ୍କୁ ଧରି ସେହି ମଧୁବନ ତୋଟା ଓ ମନ୍ଦାକିନୀ ସରୋବରର ରକ୍ଷକ ରୂପେ ରହିଥାନ୍ତି । ତେଣୁ ସେଠାରୁ ସୁଗନ୍ଧିକା ପୁଷ୍ପ ଆଣିବା ଅତି କଠିନ କାର୍ଯ୍ୟ । ଏହା ଶୁଣି ଦେବକୀ ଓ ଯଶୋଦା ଏକ ପ୍ରକାର ନିର୍ବାକ ହୋଇ ପଡ଼ିଲେ । ଅର୍ଜୁନଙ୍କ କାନକୁ ଏ ଖବର ଗଲା । ସେ ସଙ୍ଗେ ସଙ୍ଗେ ଚହଞ୍ଚି ମାତା ଦ୍ୱୟଙ୍କୁ ଭୂମିଷ୍ଠ ପ୍ରଣାମ ଜଣାଇ କହିଲେ, "ସୁଗନ୍ଧିକା ପୁଷ୍ପ ଆଣିବା ଦାୟିତ୍ୱ ମୁଁ ନିଜେ ନେଲି" । ଅର୍ଜୁନଙ୍କପରି ବୀରଙ୍କ ମୁଖରୁ ଏ ପ୍ରତିଜ୍ଞା ଶୁଣି ମା'ମାନେ ନିଶ୍ଚିନ୍ତ ମନରେ ବ୍ରତ ପାଳନରେ ଲାଗିଲେ ।

ସାପ ମାନଙ୍କୁ ଘଉଡ଼ାଇବା ପାଇଁ ଶ୍ରୀକୃଷ୍ଣ ଗରୁଡ଼ଙ୍କୁ ସ୍ମରଣ କଲେ ଓ ସେ ଆସିବାରୁ ଅର୍ଜୁନଙ୍କୁ ନେଇ ମନ୍ଦାକିନୀ ସରୋବର ନିକଟରେ ଛାଡ଼ିବାକୁ ଆଦେଶ ଦେଲେ । ଅର୍ଜୁନ ଗରୁଡ଼ଙ୍କୁ ନମସ୍କାର କରି କହିଲେ, "ହେ ଦେବ ବୈନତେୟ, ଆପଣ ସ୍ୱୟଂ ବିଷ୍ଣୁଙ୍କର ବାହନ ଓ ମହାଭକ୍ତ । ମୁଁ କି ଆପଣଙ୍କର ପୃଷ୍ଠରେ ବସିବାକୁ ଯୋଗ୍ୟ ? ଅର୍ଜୁନଙ୍କର ବିନୟ ବାକ୍ୟ ଶୁଣି ଗରୁଡ଼ ଆନନ୍ଦିତ ହେଲେ ଓ ଅର୍ଜୁନଙ୍କୁ ଧରି ନେଇ ପିଠିରେ ବସାଇ ମନ୍ଦାକିନୀ ସରୋବର କୂଳକୁ ଉଡ଼ିଗଲେ । ଅର୍ଜୁନଙ୍କର ଅନୁରୋଧରେ ଗରୁଡ଼ ତାଙ୍କୁ ସେଠାରେ ଛାଡ଼ି ଦେଇ ନିଜ ବାସ ସ୍ଥାନ ରମ୍ୟକ ଦ୍ୱୀପକୁ ଚାଲିଗଲେ । କଥା ହେଲା ଯେ ଯଦି ଆବଶ୍ୟକ ପଡ଼େ ତେବେ ଅର୍ଜୁନ ସ୍ମରଣ କଲେ ସେ ଆସି ପହଞ୍ଚିବେ ।

ଅର୍ଜୁନଙ୍କୁ ଦେଖି ଅସଂଖ୍ୟ ବିଭିନ୍ନ ଆକାର ପ୍ରକାରର ବାନର ତାଙ୍କୁ ଘେରିଲେ । ଧନୁଶର ଦ୍ୱାରା ଏମାନଙ୍କୁ ମାରିବା ଅନାବଶ୍ୟକ ଭାବି ଅର୍ଜୁନ ଖଣ୍ଡେ ଗଛ ଡାଳଧରି ଏମାନଙ୍କୁ ପ୍ରଥମେ ତଡ଼ିବାକୁ ଆରମ୍ଭ କଲେ । ମାତ୍ର ସେମାନେତ ଦେବଅଂଶୀ, ଅର୍ଜୁନଙ୍କ ଏତେ ସହଜରେ ତଡ଼ି ପାରନ୍ତେ କପରି ? ଅର୍ଜୁନଙ୍କୁ ସେମାନେ ବ୍ୟତିବ୍ୟସ୍ତ କରିପକାଇଲେ । ଶେଷରେ ଅର୍ଜୁନ ଗାଣ୍ଡିବ ଧନୁରେ ଦିବ୍ୟଅସ୍ତ୍ରମାନ ପ୍ରୟୋଗ କରି ସେମାନଙ୍କୁ ଛିନ୍ନଛିନ୍ନ କରିଦେଲେ । ସେମାନେ ପଳାଇଯାଇ ହନୁମାନଙ୍କୁ ଏ ଘଟଣା କହିଲେ । ହନୁମାନ ମହାକ୍ରୋଧରେ ଆସି ପହଞ୍ଚି ଗୋଟାଏ ପର୍ବତ ଉପାଡ଼ି ଅର୍ଜୁନଙ୍କ ଉପରକୁ ନିକ୍ଷେପ କଲେ । ଅର୍ଜୁନ ସଙ୍ଗେ ସଙ୍ଗେ

ଶର ପ୍ରୟୋଗକରି ପର୍ବତକୁ ଗୁଣ୍ଡାକରିଦେଲେ, ପରେ ପରେ ଗୁରିଗୋଟି ଶର ମାରିବାରୁ ହନୁମାନଙ୍କପରି ମହାବୀରଙ୍କର ବକ୍ଷ ଅଙ୍ଗରେ ମଧ୍ୟ ଛାତି ବାଜି ରୁଧିର ଝରିଲା ।

ହନୁମାନ ବଡ଼ ଆଶ୍ଚର୍ଯ୍ୟହୋଇ ଅର୍ଜ୍ଜୁନଙ୍କୁ ପରିଚୟ ମାଗିଲେ । ଅର୍ଜ୍ଜୁନ ନିଜ ପରିଚୟ ଦେଲାପରେ ହନୁମାନ ନିଜ ପରିଚୟ ଦେଇ କହିଲେ ଯେ ସେ ଶ୍ରୀରାମଙ୍କର ଦୂତ । ତ୍ରେତାଯୁଗରେ ଗୁରିଦିନରେ ସମୁଦ୍ରରେ ବନ୍ଧ ବାନ୍ଧି ଲଙ୍କାର ରାଜା ରାବଣକୁ ସବଂଶେ ବିନାଶ କରାଇ ଥିଲେ । ଅର୍ଜ୍ଜୁନ ହସି ହସି କହିଲେ ଯେ ସମୁଦ୍ରରେ ଗୋଟାଏ ବନ୍ଧ ପକାଇବାକୁ ଗୁରିଦିନ କଅଣ ଦରକାର ? ସେ ତ ଇଚ୍ଛାକଲେ ନିମିଷକ ଭିତରେ ସମୁଦ୍ରରେ ଗୋଟାଏ ବନ୍ଧ ପକାଇ ଦେଇ ପାରିବେ । ଏହା ଶୁଣି ହନୁମାନ ତାଙ୍କୁ ବନ୍ଧ ପକାଇବାକୁ କହିବାରୁ ଉଭୟେ ସମୁଦ୍ର କୂଳକୁ ଗଲେ । ଅର୍ଜ୍ଜୁନ ମନବେଧୀ ଶର ପ୍ରୟୋଗ କରି ପ୍ରକୃତରେ ମୁହୂର୍ତ୍ତିକ ମଧ୍ୟରେ ଶରର ଏକ ବିରାଟ ବନ୍ଧ ସୃଷ୍ଟି କରିଦେଲେ । ହନୁମାନ ଏହା ଦେଖି ଅବଶ୍ୟ ଆଶ୍ଚର୍ଯ୍ୟ ହେଲେ ଓ କହିଲେ, "ଏ ଶର ବନ୍ଧରେ କଣ ସୈନ୍ୟସାମନ୍ତ ଗୁଲିଯାଇ ପାରିବେ ? ଏକା ମୋର ଭାରାତ ଏ ବନ୍ଧ ସହି ପାରିବ ନାହିଁ । ଅର୍ଜ୍ଜୁନ ହସି ହସି କହିଲେ, "ତୁମପରି ଲକ୍ଷେ ଏ ବନ୍ଧ ଉପରେ ଉଠିଲେ ମଧ୍ୟ ଏହାର କିଛି କ୍ଷତି ହେବନାହିଁ ।" ହନୁମାନ ଏହା ଶୁଣି ମହା କ୍ରୋଧରେ ବିଶ୍ୱରୂପ ଧାରଣ କଲେ ଓ ଲକ୍ଷେ ପର୍ବତର ମାଳା ଗଳାରେ ଧାରଣ କରି ଅର୍ଜ୍ଜୁନଙ୍କର ଶର ବନ୍ଧ ଉପରକୁ ଉଠିବାକୁ ବାହାରିଲେ ।

ଅର୍ଜ୍ଜୁନ, ହନୁମାନଙ୍କର ବିରାଟ ବିଶ୍ୱମୂର୍ତ୍ତି ଦେଖି ମନରେ ଭୟ ପାଇଲେ । ଗରୁଡ଼ ଅନ୍ତରୀକ୍ଷରେ ଥାଇ ସମସ୍ତଙ୍କ ଅଗୋଚରରେ ଏହା ଦେଖିଲେ ଓ ଅର୍ଜ୍ଜୁନଙ୍କୁ ବିପଦଗ୍ରସ୍ତ ବୋଲି ଜାଣି ସଙ୍ଗେ ସଙ୍ଗେ ଶ୍ରୀକୃଷ୍ଣଙ୍କୁ ସ୍ମରଣ କଲେ । ଶ୍ରୀକୃଷ୍ଣ ସବୁ କଥା ଜାଣିଲେ ଓ ହନୁମାନ କବଳରୁ ଅର୍ଜ୍ଜୁନ ମୋର ବର୍ତ୍ତିବ ନାହିଁବୋଲି ଜାଣି ସଙ୍ଗେ ସଙ୍ଗେ ଗରୁଡ଼ ପୃଷ୍ଠରେ ବସି ଘଟଣାସ୍ଥଳରେ ପହଞ୍ଚିଲେ । ଅନ୍ତରୀକ୍ଷରେ ଥାଇ ଦେଖିଲେ ହନୁମାନ ବିରାଟ ରୂପଧରି ପର୍ବତମାଳା ବେକରେ ଲମ୍ବାଇ ଲକ୍ଷ ଲକ୍ଷ କପିଙ୍କୁ

କାନ୍ଧରେ, ପିଠିରେ ଓ ହାତରେ ବସାଇ ଶରବନ୍ଧ ଉପରକୁ ଉଠୁଛନ୍ତି । ଅର୍ଜ୍ଜୁନ ହତାଶ ଦୃଷ୍ଟିରେ ସେ ବିରାଟ ଅସାଧାରଣ ଦୃଶ୍ୟକୁ ଅନାଇ ରହିଛନ୍ତି । ଶ୍ରୀକୃଷ୍ଣ ଆଉ କାଳ ବିଳମ୍ବ ନକରି ଗୋପ୍ୟ ରୂପରେଯାଇ ସେହି ଶରବନ୍ଧ ତଳେ ରହିଗଲେ । ହନୁମାନଙ୍କ ଶରୀର ଭାର ସହି ନପାରି ଶର ବନ୍ଧ ଭାଙ୍ଗି ବୁଡ଼ିଯାଉ ଯାଉ ଶ୍ରୀକୃଷ୍ଣଙ୍କର ଶରୀର ଆଶ୍ରୟପାଇ ରହିଗଲା । ତେବେ ବିଶ୍ୱରୂପୀ ହନୁମାନଙ୍କର ବିରାଟ ଶରୀରର ଭାର ବହନକରି ଶ୍ରୀକୃଷ୍ଣଙ୍କର ମୁଖରୁ ନାକରୁ ବହୁତ ରକ୍ତ ବାହାରି ସମୁଦ୍ର ପାଣିକୁ ଲାଲ କରିଦେଲା । ହନୁମାନ ପାଣି କାହିଁକି ଲାଲ ହେଲାବୋଲି ପଚାରିବାରୁ ଅର୍ଜ୍ଜୁନ କହିଲେ ଯେ ଅନେକ ଦିନଧରି ଯୁଦ୍ଧ ହୋଇ ନଥିବାରୁ ଶରରେ କଳଙ୍କି ଲାଗିଯାଇ ଥିଲା । ସେହି କଳଙ୍କି ସବୁ ପାଣିରେ ଧୋଇହୋଇ ଗୁଡ଼ିଯିବାରୁ ପାଣି ଲାଲ ହୋଇ ଯାଉଛି ।

ହନୁମାନ ମନେ ମନେ ଅର୍ଜ୍ଜୁନଙ୍କୁ ବହୁତ ପ୍ରଶଂସା କଲେ । ବନ୍ଧରୁ ଓହ୍ଲାଇଆସି ଅର୍ଜ୍ଜୁନଙ୍କୁ ଆଲିଙ୍ଗନ କଲେ, ଉଭୟଙ୍କ ମଧ୍ୟରେ ପ୍ରୀତି ପ୍ରତିଷ୍ଠିତ ହେଲା । ହନୁମାନ ଓ ଭୀମ ଉଭୟେ ପବନ ଦେବତାଙ୍କର ପୁତ୍ର । ଅର୍ଜ୍ଜୁନ ଭୀମଙ୍କର ସାନଭାଇ । ତେଣୁ ହନୁମାନଙ୍କର ମଧ୍ୟ ସେ ସାନଭାଇ । ଏହି ସମ୍ପର୍କନେଇ ଅର୍ଜ୍ଜୁନ, ହନୁମାନଙ୍କର ପଦ ବନ୍ଦନା କଲେ । ଶ୍ରୀକୃଷ୍ଣ ଏହାଦେଖି ଆଶ୍ୱସ୍ତ ହୋଇ ଯେପରି ଗୋପନରେ ଆସି-ଥିଲେ ସେହିପରି ଗୋପନରେ ଗରୁଡ଼ ପୃଷ୍ଠରେ ବିଜେକରି ଦ୍ୱାରକା ଫେରିଗଲେ । ହନୁମାନ ଅର୍ଜ୍ଜୁନଙ୍କୁ ସ୍ନେହରେ କହିଲେ ସେ ଯୁଦ୍ଧସମୟରେ ଅର୍ଜ୍ଜୁନଙ୍କର ବିଜୟ କାମନା କରି ତାଙ୍କର ରଥର ପତାକାରେ ଅବସ୍ଥାନ କରିବେ ।

ହନୁମାନ ଯିବାବେଳେ ଅର୍ଜ୍ଜୁନଙ୍କୁ ସତର୍କ କରି କହିଲେ ଯେ ନୀଳେନ୍ଦୀ ହ୍ରଦରେ ଅତି ଭୀଷଣ ସପ୍ତଫେଣା ବିଶିଷ୍ଟ କାଳୀ ନାଗୁଣୀ ତାର କୁଟୁମ୍ବଧରି ରହିଛି । ସେହି ହ୍ରଦରେ ପଶିଲାବେଳେ ଖୁବ୍ ସତର୍କ ହୋଇ ଥିବ । ଅର୍ଜ୍ଜୁନ, ଶ୍ରୀକୃଷ୍ଣନାମ ସ୍ମରଣ କରି ନିର୍ଭୟରେ ସେହି ସରୋବରରେ ପଶି ସୁଗନ୍ଧିକା ପୁଷ୍ପ ତୋଳିଲେ । ସଙ୍ଗେ ସଙ୍ଗେ ଅସଂଖ୍ୟ ନାଗ ଆସି ତାଙ୍କୁ ଆକ୍ରମଣ କଲେ । ଅର୍ଜ୍ଜୁନ ଶରପେଶି ସେମାନଙ୍କ ମଧ୍ୟରୁ ଅନେକଙ୍କୁ ମାରି

ପକାଇଲେ । ଖବରପାଇ ନନ୍ଦେ କାଳୀନାଗୁଣୀ ତାର ଭୟଙ୍କର ସାତ-ଫେଣାକୁ ବିସ୍ତାର କରି ମାଡ଼ିଆସିଲା । ଅର୍ଜ୍ଜୁନ ଯେତେ ଶର ମାରିଲେ ସେ ସବୁ ଗିଳିଦେଲା । ଶେଷରେ ଅର୍ଜ୍ଜୁନ ଖାଣ୍ଡବବନ ଦହନ କାଳରେ ଅଗ୍ନି-ଦେବତା ଦେଇଥିବା ସର୍ପବିଧ୍ୱଂସିମା ମନ୍ତ୍ରୌଷଧିକୁ ମନଭେଦୀ ଶରଦ୍ୱାରା ପ୍ରୟୋଗ କଲେ । ଔଷଧିର ଗନ୍ଧଲାଗି ସର୍ପମାନଙ୍କର ଦର୍ପ ଭାଙ୍ଗିଲା । ସେମାନେ ଜଳଭ୍ରୂବନ ତେଜି ପଳାଇଲେ । ପରେ ପରେ ଗରୁଡ଼ ଶର ପେଶି ଅର୍ଜ୍ଜୁନ ସେମାନଙ୍କୁ ମାରିଦେଲେ । ବୈଷ୍ଣବ ଚକ୍ରରେ କାଳୀ-ନାଗୁଣୀର ମସ୍ତକ ଛେଦି ପକାଇଲେ ।

ମାତ୍ର ଏହି ସମୟରେ ଏକ ଆଶ୍ଚର୍ଯ୍ୟ ଘଟଣା ଘଟିଲା । ଅର୍ଜ୍ଜୁନ ନୀଳେନ୍ଦୀ ସରୋବରକୁ ନିଷ୍କଣ୍ଟକ କରି ଫୁଲତୋଳିବା ପାଇଁ ହାତ ବଢାଇଲାବେଳକୁ ତାଙ୍କୁ ଲାଗିଲା ଯେମିତି କୌଣସି ଜଳଚର ପ୍ରାଣୀ ତାଙ୍କର ଗୋଡ଼ଆଡୁ ଗିଳି ଆସୁଛି । ଅଥଚ ଆଖିକୁ କିଛି ଦେଖାଯାଉ ନାହିଁ । ମହାଧନୁର୍ଦ୍ଧର ଅର୍ଜ୍ଜୁନ ମଧ୍ୟ ଶେଷରେ ନିରୁପାୟ ହୋଇ ହନୁମାନଙ୍କୁ ଡାକ ପକାଇଲେ । ହନୁମାନ ଧାଇଁ ଆସି ଡାକିଦେଲେ, "ହେ ଅର୍ଜ୍ଜୁନ, ତୁମେ ମୋ ଆଡ଼କୁ ଚାହଁ ।" ଅର୍ଜ୍ଜୁନ ଚାହିଁବା ସଙ୍ଗେ ସଙ୍ଗେ ହନୁମାନ ପାଣିକୁ ଡେଇଁପଡ଼ି ଅର୍ଜ୍ଜୁନଙ୍କୁ ଆକର୍ଷି ଧରିନେଲେ । ଗିଳୁଥିବା ଜନ୍ତୁ ଅର୍ଜ୍ଜୁନଙ୍କୁ ଛାଡିଦେଲା ।

ଅର୍ଜ୍ଜୁନ ଏହାର କାରଣ ପଚାରିବାରୁ ହନୁମାନ କହିଲେ ଯେ ତ୍ରେତା-ଯୁଗରେ ଶ୍ରୀରାମ ରାବଣର ଭାଇ କୁମ୍ଭକର୍ଣ୍ଣକୁ ବଧ କରିବାପରେ ମଧ୍ୟ ତାର ମସ୍ତକ ଡେଇଁ ଡେଇଁ ଯାଇ ଶହ ଶହ କପିଙ୍କୁ ଗିଳିଲା । କୁମ୍ଭକର୍ଣ୍ଣ ବର ପାଇଥିଲା ଯେ ସେ ଶତ୍ରୁର ପୃଷ୍ଠପାଖ ଦେଖିଲେ ଯାଇଁ ତା ପ୍ରାଣଯିବ । ବିଭୀଷଣଙ୍କ ପରାମର୍ଶରେ ଶ୍ରୀରାମ ତାର ମୁଣ୍ଡକୁ ପଛକରି ଶରମାରି ତାକୁ ଦୁଇଫାଳ କରିଦେଲେ । ଗୋଟିଏ ଫାଳ ଶ୍ରୀରାମଙ୍କ ପୃଷ୍ଠ ଦର୍ଶନ ପୂର୍ବରୁ ଏହି ସରୋବରରେ ଆସି ପଡିଥିଲା । ସେହି ତୁମକୁ ଗିଳୁଥିଲା । ମାତ୍ର ମୋତେ ଦେଖି ଭୟରେ ତୁମଙ୍କୁ ଛାଡ଼ିଦେଲା ଓ ଶତ୍ରୁରୂପେ ତୁମର ପୃଷ୍ଠ ଦର୍ଶନ କରି ଆଜଠାରୁ କ୍ଷୟଗଲା । ଅର୍ଜ୍ଜୁନ ଏହାଶୁଣି ହନୁମାନଙ୍କ ପ୍ରତି

ଙ୍କଠାରେ କୃତଜ୍ଞତା ପ୍ରକାଶ କଲେ ଏବଂ ବହୁତ ସୁଗନ୍ଧିକା ପୁଷ୍ପ ନେଇ ଦ୍ୱାରକା ଫେରିଲେ । ସେହି ପୁଷ୍ପରେ ଦେବକୀ ଓ ଯଶୋଦା କାମାକ୍ଷୀ ବ୍ରତ ପାଳନ କଲେ ଓ ଅର୍ଜ୍ଜୁନଙ୍କୁ ବହୁତ ପ୍ରଶଂସା କଲେ ।

## ନୀଳେନ୍ଦ୍ରୀ ହରଣ

ନୀଳେନ୍ଦ୍ରୀ, ସପ୍ତସମୁଦ୍ରର ଅଧିପତି ବରୁଣଙ୍କର କନ୍ୟା । ଦେଖିବାକୁ ଅତ୍ୟନ୍ତ ସୁନ୍ଦରୀ । ମାତ୍ର କନ୍ୟାକୁ ଷୋଳବର୍ଷ ହେବା ପର୍ଯ୍ୟନ୍ତ ଗଣ୍ଡ ଦୋଷ ଲାଗିବାରୁ ଜ୍ୟୋତିଷମତରେ ପିତା ତାର ମୁଖ ସେତିକି ବର୍ଷ ପର୍ଯ୍ୟନ୍ତ ଦେଖିବେ ନାହିଁ । ରାଜାଙ୍କ ଆଦେଶରେ ନୀଳେନ୍ଦ୍ରୀ ବନକୁ ନିର୍ବାସିତ ହେଲା । ତାର ମାତା ରାଣୀ ନୀରବତୀ କନ୍ୟାକୁ ମୁର୍ଚ୍ଛି ନପାରି ତା ସହିତ ବନକୁ ଗଲେ । ଥରେ ନିଶାର୍ଦ୍ଧରେ ରାଣୀ, ବନରେ ବିକଳ ହୋଇ କାନ୍ଦୁଥିବାର ଶୁଣି ହରପାର୍ବତୀ ତାଙ୍କ ନିକଟରେ ଉଭାହୋଇ ଅତ୍ୟନ୍ତ ସୁନ୍ଦରୀ ଝିଅଟିଏ ଦେଖି ତାକୁ ସଂସ୍କାର କରିଦେଲେ । ଫଳରେ ନୀଳେନ୍ଦ୍ରୀର ଗଣ୍ଡ ଦୋଷ କଟିଗଲା । ରାଣୀ ନୀରବତୀ ଅତ୍ୟନ୍ତ କୃତଜ୍ଞ ହୋଇ ହରପାର୍ବତୀଙ୍କର ଚରଣ ବନ୍ଦନା କଲେ । ମହାଦେବ ନୀଳେନ୍ଦ୍ରୀକୁ ଲକ୍ଷ୍ୟକରି କହିଲେ, "ଏ ଝିଅଟି ମୋର ବୋହୂ । ତୁ ଏହାକୁ ମୋର ପୁତ୍ର କାର୍ତ୍ତିକ ସହିତ ବାହାଦେବୁ ।" ଏହା କହି ନୀଳେନ୍ଦ୍ରୀ ହାତରେ ଗୋଟିଏ ଅମୂଲ୍ୟ ମଣି ଉପହାର ସ୍ୱରୂପ ଦେଇ ପାର୍ବତୀଙ୍କ ସହିତ ଅନ୍ତର୍ଦ୍ଧାନ ହେଲେ ।

ନୀରବତୀ କନ୍ୟାଙ୍କ ସହିତ ନଗରକୁ ଫେରିଆସି କନ୍ୟାଙ୍କୁ ଗୋପନରେ ପାଳନ କରିବାକୁ ଲାଗିଲେ । ଷୋଳବର୍ଷ ପୂର୍ଣ୍ଣ ହେଲାପରେ ସେ ବାହାରେ ଆତ୍ମପ୍ରକାଶ କଲା । ପିତା ବରୁଣ ମଧ୍ୟ ତାକୁ ଦେଖି ଚହ୍ନି ନପାରି ପଚାରିଲେ ଯେ ରାଜ ଉଆସରେ ଏ ଅନନ୍ୟ ସୁନ୍ଦରୀ କନ୍ୟାଟି କିଏ ? ସେ ଯେତେବେଳେ ଜାଣିଲେ ଯେ ଏହି ସୁନ୍ଦରୀ ଝିଅଟି ତାଙ୍କର ନିଜକନ୍ୟା ନୀଳେନ୍ଦ୍ରୀ, ସେତେବେଳେ ତାଙ୍କର ଆନନ୍ଦର ସୀମା ରହିଲା-ନାହିଁ । ସ୍ୱୟଂ ମହାଦେବ ଯେ ତାକୁ ନିଜର ପୁତ୍ରବଧୂ ରୂପେ ବରଣ କରିଛନ୍ତି ଏହାମଧ୍ୟ ସେ ରାଣୀଠାରୁ ଶୁଣିଲେ ଓ ଖୁସିହେଲେ ।

ଏଣେ ଅନେକ ଦିନ ଧରି କିଛି କଳି ସୃଷ୍ଟି କରି ପାରି ନଥିବା ହେତୁ ଦେବର୍ଷି ନାରଦଙ୍କ ମନଟା ଭଲ ନଥାଏ । ଗୋଟାଏ ବଡ଼ ଧରଣର କଳି ଲଗାଇ ଦେଇ ମଜା ଦେଖିବାକୁ ସେ ମନେ ମନେ ସୁଯୋଗ ଖୋଜୁଥାନ୍ତି । ସର୍ବସୁଲକ୍ଷଣୀ ଅତ୍ୟନ୍ତ ରୂପବତୀ ମାଳେନ୍ଦ୍ରୀକୁ ଦେଖି ତାକୁହିଁ କେନ୍ଦ୍ର କରି ଗୋଟାଏ ଖୁବ୍ ବଡ଼ କଳି କଜିଆ ସୃଷ୍ଟି କରିବାକୁ ସେ ମନେ ମନେ ପାଞ୍ଚିଲେ । ସଙ୍ଗେ ସଙ୍ଗେ ମନଯାନରେ ଉଡ଼ିଯାଇ ପହଞ୍ଚିଗଲେ ଦ୍ୱାରକାପୁରରେ । ସେଠାରେ ବଳରାମଙ୍କର ଜ୍ୟେଷ୍ଠପୁତ୍ର ଆନନ୍ଦକୁ ଭେଟିଲେ । ଆନନ୍ଦ, କନ୍ଦର୍ପଠାରୁ ଅତ୍ୟନ୍ତ ସୁନ୍ଦର ତରୁଣ ଓ ନିଜର ବାପଙ୍କ ପରି ମହାବୀର । ନାରଦ ତାଙ୍କ ଆଗରେ ମାଳେନ୍ଦ୍ରୀର ରୂପଗୁଣକୁ ବିସ୍ତାରିତ ଭାବେ କହି ତା ମନକୁ ଉଚାଟ କଲେ । ସ୍ୱୟଂ ନାରଦଙ୍କ ମୁଖରୁ କନ୍ୟାର ରୂପଗୁଣର ଏତେ ପ୍ରଶଂସା ଶୁଣି ଆନନ୍ଦ, ମାଳେନ୍ଦ୍ରୀର ପ୍ରେମରେ ପଡ଼ିଗଲା ଓ ତାକୁ କିପରି ପାଇବ ସେଥିପାଇଁ ଉପାୟ ବତାଇବାକୁ ମୁନିଙ୍କୁ ବିନମ୍ର ସହିତ ପ୍ରାର୍ଥନା କଲା । ନାରଦ ତ ସେଇଆ ଚାହୁଁଥିଲେ । ସେ ସଙ୍ଗେ ସଙ୍ଗେ କହିଲେ, "ବାପା, ବ୍ୟସ୍ତହୁଅନା । ମୁଁ ତୁମକୁ ମନ୍ତ୍ରବଳରେ ଅଦୃଶ୍ୟ କରିଦେଇ କନ୍ୟାପାଖକୁ ନେଇଯିବି । ତା ପରେ କନ୍ୟାକୁ ମନାଇ ବିବାହ କରିବା ଦାୟିତ୍ୱ ତୁମର ।"

ଏହା କହି ନାରଦ ଆନନ୍ଦକୁ ସମସ୍ତଙ୍କର ଅଲକ୍ଷ୍ୟରେ ନେଇଯାଇ ମାଳେନ୍ଦ୍ରୀ କନ୍ୟାର ନିକଟରେ ପହଞ୍ଚାଇ ଦେଲେ । ଯେଉଁ ବରୁଣ ପୁରରେ ଯମ ମଧ୍ୟ ପଶିପାରେ ନାହିଁ ସେଠାରେ ପୁଣି ରାଜକନ୍ୟାର ଅନ୍ତଃପୁରରେ ଏତେ ସହଜରେ ପ୍ରବେଶ କରି ଆନନ୍ଦ ଅତ୍ୟନ୍ତ ଆଶ୍ଚର୍ଯ୍ୟ ହେଲା । ମାଳେନ୍ଦ୍ରୀ ଓ ଆନନ୍ଦ ପରସ୍ପରକୁ ଦେଖି କୋଟିନିଧି ପାଇଲା ପରି ଅନୁଭବ କଲେ । ନାରଦଙ୍କର ଉପସ୍ଥିତିରେ ଉଭୟଙ୍କର ଗାନ୍ଧର୍ବ ମତରେ ବିବାହ ହେଲା । ଆନନ୍ଦ ଗୋପନରେ ମାଳେନ୍ଦ୍ରୀର ପୁରରେ ଅବସ୍ଥାନ କଲା । କୁମାର କୁମାରୀ ଦୁହେଁ ପରସ୍ପରର ପ୍ରେମଜଳଧିରେ ବୁଡ଼ିଗଲେ ।

ଏଣେ ବରୁଣ ରାଜା ଯୁବତୀ ଝିଅକୁ ଆଉ ବେଶିଦିନ ଘରେ ରଖିବା ଅନୁଚିତ ବୋଲି ବିଚାରି କାର୍ତ୍ତିକଙ୍କ ସହିତ ତାର ବିବାହର ଆୟୋଜନ

କଲେ । ମହାଦେବଙ୍କ ନିକଟକୁ ନିମନ୍ତ୍ରଣ ପତ୍ର ଗଲା । ମହାଦେବ ବିବାହର ସମସ୍ତ ଆୟୋଜନ ସହିତ ଶିବଗଣଙ୍କୁ ସଙ୍ଗରେ ନେଇ ବରୁଣାଳୟକୁ ଯାତ୍ରା ଅନୁକୂଳ କଲେ । ଠିକ୍ ଏତିକିବେଳେ ନାରଦ ପହଞ୍ଚି ମହାଦେବଙ୍କୁ ଏସବୁ ଆୟୋଜନର କାରଣ ପଚାରିଲେ । ମହାଦେବ, ଏସବୁ ବରୁଣକନ୍ୟା ମାଳେନ୍ଦ୍ରୀର କାର୍ତ୍ତିକ ସହିତ ବିବାହ ଆୟୋଜନ ବୋଲି କହିବାରୁ ନାରଦ କରଯୋଡ଼ି ପ୍ରକାଶ କଲେ "ହେ ଯୋଗେଶ୍ୱର, ସେ କନ୍ୟାତ ବଳରାମଙ୍କ ପୁତ୍ର ଆନନ୍ଦକୁ ସ୍ୱଇଚ୍ଛାରେ ବରଣକରି ତା ସହିତ ଗାନ୍ଧର୍ବ ମତରେ କେବେଠାରୁ ବିବାହ କରି ସାରିଲାଣି ।" ଏହାଶୁଣି ମହାଦେବ ସ୍ତମ୍ଭୀଭୂତ ହୋଇଗଲେ । କି ଆଶ୍ଚର୍ଯ୍ୟ କଥା ! କନ୍ୟାକୁ ସେ ବାଲ୍ୟକାଳରୁ ବଧୂରୂପେ ବରଣ କରିସାରିଛନ୍ତି । ଅଥଚ ତାଙ୍କପ୍ରତି ଏ ଅପମାନ, ଏ ଅବମାନନା ! ମହାଦେବ ଅତ୍ୟନ୍ତ କ୍ରୋଧାନ୍ୱିତ ହୋଇ ଦୋଷୀକୁ ଉପଯୁକ୍ତ ଶାସ୍ତି ଦେବାନିମିତ୍ତ ଶିବଗଣଙ୍କୁ ସଙ୍ଗରେ ନେଇ ବରୁଣପୁରକୁ ବାହାରିଲେ ।

ଏହାଦେଖି ନାରଦ ତୁରନ୍ତ ମାଳେନ୍ଦ୍ରୀ ପୁରକୁ ଯାଇ ଆନନ୍ଦକୁ ଏ ସମ୍ବାଦ ଦେଲେ ଓ କନ୍ୟା ସହିତ ଶୀଘ୍ର ଦ୍ୱାରକା ପଳାଇ ଯିବାକୁ କହିଲେ । ଆନନ୍ଦ ପିଲାଟିହେଲେ ମଧ୍ୟ ମହାବୀର । ସେ ସମ୍ମୁଖ ଯୁଦ୍ଧ ନକରି ଏପରି ଭାବେ ପଳାଇଯିବାକୁ ପ୍ରଥମେ ରାଜି ହେଲେନାହିଁ । ମାତ୍ର ବିରାଟ ଶିବଗଣଙ୍କ ସହିତ ସେ ଏକାକୀ ଲଢିବା ସମ୍ଭବ ନୁହେଁ ବୋଲି ନାରଦ ବୁଝାଇ ଦେବାରୁ କନ୍ୟାକୁ ସଙ୍ଗରେ ଧରି ଦ୍ୱାରକା ଚାଲି ଯିବାକୁ ରାଜିହେଲେ । ନାରଦ ଆନନ୍ଦକୁ ପାଦୁକା ମନ୍ତ୍ର ଓ ମାୟାବିମାନ ଦେଲେ । ଆନନ୍ଦ ପାଦୁକାମନ୍ତ୍ର ପଢି କନ୍ୟାସହିତ ସମସ୍ତଙ୍କର ଅଦୃଶ୍ୟରେ ନଗରରୁ ବାହାରିଗଲେ ଓ ମାୟାବିମାନରେ ବସି ଦ୍ୱାରକା ଅଭିମୁଖେ ଚାଲିଲେ ।

ମହାଦେବ ଶିବଗଣଙ୍କ ସହିତ ବରୁଣପୁରରେ ପଶି କନ୍ୟାକୁ ଖୋଜି ଖୋଜି ପାଇଲେ ନାହିଁ । ଶେଷରେ କୌଣସି ସୂତ୍ରରୁ ଖବର ମିଳିଲା ଯେ ଆନନ୍ଦ କନ୍ୟାକୁ ନେଇ ଦ୍ୱାରକା ଅଭିମୁଖେ ଚାଲିଯାଉଛି । ଏହାଶୁଣି ଶିବଗଣମାନେ ଗୋଡାଇଲେ । ଆନନ୍ଦ ଶିବଗଣଙ୍କୁ ଦୂରରୁ ଆସୁଥିବାର ଦେଖି ମାୟାବିମାନରେ କନ୍ୟାକୁ ଅନ୍ତରୀକ୍ଷରେ ରଖି ନିଜେ ଯୁଦ୍ଧପାଇଁ

ପ୍ରସ୍ତୁତ ହୋଇଗଲେ । ଶିବଗଣଙ୍କ ସହିତ ତାଙ୍କର ଘୋର ଯୁଦ୍ଧହେଲା । ଅସଂଖ୍ୟ ଶିବଗଣ ତାଙ୍କର ଶରରେ ମଶ ଶୋଇଗଲେ । ମାତ୍ର ଏକାକୀ ସେ ବରାଟ ବାହିନୀ ସହିତ କେତେକାଳ ବା ଯୁଦ୍ଧ କରିପାରନ୍ତେ ? ଶେଷରେ କାର୍ତ୍ତିକଙ୍କ ଶରରେ ସେ ଭୂତଳଶାୟୀ ହେଲେ । ଆକାଶରେ ରଥରେ ଥାଇ ମାନେନ୍ଦ୍ରୀ ଏହାଦେଖି ଅତ୍ୟନ୍ତ ବିକଳ ହୋଇ କାନ୍ଦି ଉଠିଲା । ନାରଦ ହଠାତ୍ ପହଞ୍ଚିଯାଇ ତାକୁ ପ୍ରବୋଧନା ଦେଇ କହିଲେ, "ମା, ତୁ ବ୍ୟସ୍ତ ହୁଅନା । ତୋର ବିଧବା ଯୋଗ ନାହିଁ । ପରେ ଅବଶ୍ୟ ସବୁ ଶୁଭ ହେବ ।" ଏହା କହି ତାକୁ ଭଲୁକମନ୍ତ୍ର ଦେଲେ । ଏହି ମନ୍ତ୍ର ଦ୍ୱାରା ସେ ଅଦୃଶ୍ୟହୋଇ ରହିଥିବ ଓ ଯଥା ସମୟରେ ଆତ୍ମପ୍ରକାଶ କରିବ ବୋଲି କହି ମୁନି ସଙ୍ଗେ ସଙ୍ଗେ ଦ୍ୱାରକା ଗଲେ ଓ ଶ୍ରୀକୃଷ୍ଣ ବଳରାମଙ୍କୁ ଏହି ଦୁଃସମ୍ବାଦ ଜଣାଇଲେ ।

ପୁତ୍ରର ନିଧନଶୁଣି ବଳରାମ ଅତି ଦୁଃଖରେ ଚେତା ହରାଇ ପଡ଼ିଗଲେ । ପରେ ଚେତାପାଇ ମହାକ୍ରୋଧରେ ଶ୍ରୀକୃଷ୍ଣ ଓ ବିରାଟ ଯାଦବ ବାହିନୀକୁ ଧରି ବରୁଣପୁର ଆଡ଼କୁ ଅଗ୍ରସର ହେଲେ । ବାଟରେ ଶିବଗଣଙ୍କ ସହିତ ତାଙ୍କର ଭେଟା ଭେଟି ହେଲା । ଏକ ପକ୍ଷରେ ଶିବ, କାର୍ତ୍ତିକ, ଗଣେଶ ଓ ଅସଂଖ୍ୟ ଶିବଗଣ ଏବଂ ଅନ୍ୟ ପକ୍ଷରେ ଶ୍ରୀକୃଷ୍ଣ, ବଳରାମ ଓ ବିରାଟ ଯାଦବ ବାହିନୀ । ଉଭୟ ପକ୍ଷ ମଧ୍ୟରେ ଘୋର ଯୁଦ୍ଧ ହେଲା । ସେ ଯୁଦ୍ଧର ପଟାନ୍ତର ନାହିଁ । ନାରଦ ମୁନି ଏତେ ଦିନକେ ତାଙ୍କର ଉଦ୍ଦେଶ୍ୟ ସଫଳ ହେଲାବୋଲି ବଡ଼ ଆନନ୍ଦରେ ଆକାଶରେ ରହି ହରିହରଙ୍କ ଯୁଦ୍ଧ ଦେଖିଲେ । ମାତ୍ର ଏ ଯୁଦ୍ଧ ଫଳରେ ସ୍ୱର୍ଗ, ମର୍ତ୍ତ୍ୟ, ପାତାଳ କମ୍ପିଲା । ଦେବତାମାନେ ଦେଖିଲେ ଯେ ହରିହରଙ୍କ ମଧ୍ୟରେ ଯଦି ଏପରି ଯୁଦ୍ଧ ଦୀର୍ଘକାଳଧରି ଚାଲେ ତେବେ ବ୍ରହ୍ମାଣ୍ଡ ଧ୍ୱଂସ ହୋଇ-ଯିବ । ତେଣୁ ସେମାନେ ବ୍ରହ୍ମାଙ୍କୁ ଗୁହାରି କଲେ । ବ୍ରହ୍ମା ମଧ୍ୟସ୍ଥ ହୋଇ ଯାଇ ଯୁଦ୍ଧକ୍ଷେତ୍ରରେ ଉପସ୍ଥିତ ହେଲେ । ବ୍ରହ୍ମାଙ୍କୁ ଦେଖି ଉଭୟ ପକ୍ଷ ନିବୃତ୍ତ ହେଲେ । ବ୍ରହ୍ମା, ବଳରାମ ଶ୍ରୀକୃଷ୍ଣ ଓ ମହାଦେବଙ୍କୁ ବହୁତ ବୁଝାଇ ସୁଝାଇ କହିଲେ ଯେ ବିଶ୍ୱ ବ୍ରହ୍ମାଣ୍ଡର ପାଳକ ଓ ସଂହାରକ ତୁମେ ଯଦି ଏପରି ଯୁଦ୍ଧରେ ପ୍ରବୃତ୍ତ ହେବେ ତେବେ ସୃଷ୍ଟି ଧ୍ୱଂସ ହୋଇ-ଯିବ । ତେଣୁ ଏହି ସମସ୍ୟାର ସମାଧାନ ପାଇଁ ମାନେନ୍ଦ୍ରୀ କନ୍ୟା

ହାତରେ ଏକ ବରଣମାଳା ଦିଆଯାଉ । ସେ ଆନନ୍ଦ ବା କାର୍ତ୍ତିକ ଯାହାଙ୍କ ବେକରେ ବରଣମାଳା ଲମ୍ବାଇ ଦେବ ସେହି ସେ କନ୍ୟାକୁ ପ୍ରାପ୍ତ ହେବେ । ସମସ୍ତେ ଏ ପ୍ରସ୍ତାବରେ ରାଜିହେଲେ । ବ୍ରହ୍ମା ମନ୍ତ୍ରଜଳ ସିଞ୍ଚିବାରୁ ଆନନ୍ଦ ଚେତାପାଇ ଉଠିଲା । ନାରଦଙ୍କ ନିର୍ଦ୍ଦେଶରେ ମାଳେନ୍ଦ୍ରୀ କନ୍ୟା ମଧ୍ଯ ଆସିଲା । ସେ ଗୋଟିଏ ବରଣମାଳା ଧରି ଯାଇ ସମସ୍ତଙ୍କର ସମ୍ମୁଖରେ ତାକୁ ଆନନ୍ଦ ବେକରେ ଲମ୍ବାଇ ଦେଲା । ବ୍ରହ୍ମା, ଶ୍ରୀକୃଷ୍ଣ ବଳରାମଙ୍କୁ କହିଲେ ଯେ ସେମାନେ ଏବେ ବରୁଣପୁରକୁ ଯାଇ ବିବାହ ଉତ୍ସବ କରନ୍ତୁ । ତାପରେ ବ୍ରହ୍ମା, ଶିବକୁ ଶାନ୍ତକରି ଶିବଗଣଙ୍କ ସହିତ କପିଳାସକୁ ଫେରି ଯିବାକୁ ନିବେଦନ କଲେ । ଏତେ ବଡ଼ କଳହ ବ୍ରହ୍ମାଙ୍କର ହସ୍ତକ୍ଷେପ ଫଳରେ ମେଣ୍ଟିଗଲା ।

## ଚନ୍ଦ୍ରାବତୀ ହରଣ

ଚନ୍ଦ୍ରାବତୀ, ରାଜା ଦୁର୍ଯୋଧନଙ୍କର କନ୍ୟା । ତାର ସୁନ୍ଦର ପଣର ପଟାନ୍ତର ନାହିଁ । ଜନ୍ମ ସମୟରେ ଚନ୍ଦ୍ରକିରଣ ଠାରୁ ବଳି ତାର ଜ୍ୟୋତି ପ୍ରକାଶୁଥିଲା ବୋଲି ତାର ନାମ ଚନ୍ଦ୍ରାବତୀ ଦିଆଯାଇଥିଲା । ରାଜା ଦୁର୍ଯୋଧନ ଓ ରାଣୀ ଭାନୁମତୀ ତାକୁ ଅତି ଯତ୍ନରେ ଲାଳନ ପାଳନ କରିଥିଲେ । ତାର ଯୁବା ଅବସ୍ଥା ଉପସ୍ଥିତ ହେବାରୁ ତାକୁ ବିଭା ଦେବା ନିମିତ୍ତ ରାଜା, ଉପଯୁକ୍ତ ବରଟିଏ ପାଇଁ ବହୁତ ସନ୍ଧାନ କଲେ । ମାତ୍ର ପାଇଲେ ନାହିଁ । ତେଣୁ ସେ ଗୋଟିଏ ସ୍ୱୟମ୍ବର ସଭାର ଆୟୋଜନ କଲେ ।

ଦିନେ ଦେବର୍ଷି ନାରଦ ଶୂନ୍ୟରେ ଯାଉ ଯାଉ ଚନ୍ଦ୍ରାବତୀ କନ୍ୟାକୁ ଦେଖିଲେ । ତାଙ୍କର ମନେ ହେଲା ଏପରି ସୁନ୍ଦରୀ ଝିଅକୁ ଶ୍ରୀକୃଷ୍ଣଙ୍କର ପୁତ୍ର ଶାମ୍ବହିଁ ଉପଯୁକ୍ତ ବର । ମାତ୍ର ଦୁର୍ଯୋଧନତ ଶ୍ରୀକୃଷ୍ଣଙ୍କ ବିରୋଧୀ । ଏ ବିବାହ କେଉଁରେ ହେବ କପରି ? ମୁନି ମନେ ମନେ ଗୋଟିଏ ଉପାୟ ପାଞ୍ଚିଯାଇ, ଦୁର୍ଯୋଧନଙ୍କ ରାଜସଭାରେ ପହଞ୍ଚିଲେ । ଦୁର୍ଯୋଧନ ତାଙ୍କୁ ଉପଯୁକ୍ତ ସମ୍ମାନ ଦେଇ ଆସନରେ ବସାଇଲେ ଓ ଆସିବାର କାରଣ ପଚାରିଲେ । ଦେବର୍ଷି କହିଲେ ଯେ ସେ ଏହି ବାଟରେ ଯାଉ ଯାଉ ଏ

ବିରାଟ ଉତ୍ସବର ଆୟୋଜନ ଦେଖି କାରଣ ଜାଣିବାପାଇଁ ଏଆଡ଼େ ଚାଲିଆସିଲେ । ଦୁର୍ଯ୍ୟୋଧନ କହିଲେ, "ଦେବର୍ଷି, ମୋର କନ୍ୟା ଚନ୍ଦ୍ରାବତୀ ପାଇଁ ବହୁ ସନ୍ଧାନ କରି ମଧ୍ୟ ଉପଯୁକ୍ତ ବରଟିଏ ପାଇଲି ନାହିଁ । ତେଣୁ ତାର ବିବାହ ପାଇଁ ଏହି ସ୍ୱୟମ୍ବର ଉତ୍ସବର ଆୟୋଜନ କରୁଛି ।" ନାରଦ କହିଲେ, "ଚନ୍ଦ୍ରାବତୀ ପରି ରୂପଗୁଣରେ ପରିପୂର୍ଣ୍ଣା ଝିଅଟିଏ ପାଇଁ ଉପଯୁକ୍ତ ବର ଅବଶ୍ୟ ଦୁର୍ଲ୍ଲଭ । ତେବେ ଶ୍ରୀକୃଷ୍ଣଙ୍କର ସବୁ ପୁଅ ଗୁଡ଼ିକ କନ୍ଦର୍ପଠାରୁ ବଳି ସୁନ୍ଦର ଓ ଖୁବ୍ ବୀର । ସ୍ୱୟଂ ଶ୍ରୀକୃଷ୍ଣ ତ ତ୍ରୈଲୋକ୍ୟ ଠାକୁର । ପୂର୍ବରୁ ମଧ୍ୟ ତୁମର ବଂଶ, ପରିବାର ସହିତ ତାଙ୍କର ବନ୍ଧୁତ୍ୱ ରହିଛି । ସେଇଠାରେ ସମ୍ପର୍କ କଲେ ଭଲ ହୁଅନ୍ତା ବୋଲି ମୁଁ ଭାବୁଛି ।" ଦୁର୍ଯ୍ୟୋଧନ ଚିଡ଼ିଯାଇ କହିଲେ, "ଆପଣ ଏପରି ଅନ୍ୟାୟ କଥା କିମିତି କହୁଛନ୍ତି ? ସେ ମୋ ସାନଭାଇ ଅର୍ଜ୍ଜୁନକୁ କନ୍ୟା ଦେଇ ତାର ଚରଣ ପଖାଳିଲେ । ମୁଁ ଏବେ କଣ ତାଙ୍କ ପୁଅକୁ କନ୍ୟା ଦେଇ ଗୋପାଳର ଚରଣ ପଖାଳିବି ?" ନାରଦ ଆଉ କିଛି ନକହି ଯିବାକୁ ବାହାରିଲେ । ସେ ଗଲାବେଳେ ଦୁର୍ଯ୍ୟୋଧନ କହିଲେ ଯେ ସେ ତାଙ୍କୁ ନିମନ୍ତ୍ରଣ କରୁଛନ୍ତି । କନ୍ୟାର ସ୍ୱୟମ୍ବରକୁ ଯେପରି ନିଶ୍ଚୟ ସେ ଆସନ୍ତି । ନାରଦ ଆସିବାପାଇଁ କଥାଦେଇ ଚାଲିଗଲେ ।

ବର୍ତ୍ତମାନ ନାରଦଙ୍କର ଜିଦ୍ ହେଲା, "ଯୋଗ୍ୟଂ ଯୋଗ୍ୟେନ ଯୋଜୟେତ୍" । ଅର୍ଥାତ୍ ଶ୍ରୀକୃଷ୍ଣଙ୍କ ପୁତ୍ର ଶାମ୍ବକୁ ଚନ୍ଦ୍ରାବତୀ ସହିତ ନିଶ୍ଚୟ ବିଭା କରାଇବେ । ଏ ବିବାହର ପରିଣତି ସ୍ୱରୂପ କୌରବ ଓ ଯାଦବଙ୍କ ମଧ୍ୟରେ ଯେଉଁ ଘୋର କଳହ ସୃଷ୍ଟି ହେବ ତାକୁ ଆପ୍ରାଣ ଉପଭୋଗ କରିବେ ।

ଚନ୍ଦ୍ରାବତୀ ତ ନିଜର ରୂପଗୁଣରେ ସମସ୍ତଙ୍କର ପ୍ରିୟଭାଜନ ହୋଇ-ଥାଏ । ତେଣୁ ଧାଈ ମୁଦୁସୁଲୀଠାରୁ ଆରମ୍ଭକରି ମହାରାଜା ଯୁଧିଷ୍ଠିର ପର୍ଯ୍ୟନ୍ତ ସମସ୍ତେ ଚାହାନ୍ତି ଚନ୍ଦ୍ରାବତୀକୁ ଉପଯୁକ୍ତ ବର ପ୍ରାପ୍ତ ହେଉ । ସ୍ୱୟଂବରର ଆୟୋଜନ ଦେଖି ଯୁଧିଷ୍ଠିର ମହାରାଜା ଦିନେ କୌତୂହଳ ବଶତଃ ସହଦେବଙ୍କୁ ପଚାରିଲେ, "ବାବୁରେ, କହିବୁଟି, ଚନ୍ଦ୍ରାବତୀ କାହାକୁ ବରଣ କରିବ ?" ସହଦେବ କରତଳକୁ ଚାହିଁ ସଙ୍ଗେ ସଙ୍ଗେ

କହିଲେ, "ଚନ୍ଦ୍ରାବତୀ ଶ୍ରୀକୃଷ୍ଣଙ୍କର ପୁତ୍ର ଶାମ୍ବ କୁମାରକୁ ବରଣ କରିବ।" ମାତ୍ର ଏହା କିପରି ସମ୍ଭବ ? ଦୁର୍ଯ୍ୟୋଧନତ ଶ୍ରୀକୃଷ୍ଣଙ୍କୁ ନିମନ୍ତ୍ରଣ କରିନାହାନ୍ତି କି କରିବେ ନାହିଁ । ତେବେ ଶାମ୍ବ ସ୍ୱୟଂବରସଭାକୁ ଆସିବ କିପରି ? ଯୁଧିଷ୍ଠିର ତ ମହା ଧର୍ମବନ୍ତ, ସମସ୍ତଙ୍କର ହିତାକାଂକ୍ଷୀ । ସେ ସଙ୍ଗେ ସଙ୍ଗେ ଦୁର୍ଯ୍ୟୋଧନଙ୍କ ନିକଟକୁ ଯାଇ କହିଲେ, "ରାମ କୃଷ୍ଣ ହେଉଛନ୍ତି ଆମର ସହାପକ୍ଷ । ତାଙ୍କୁ ନିମନ୍ତ୍ରଣ ନକରି ଉପେକ୍ଷା କରିବାଟା ଆମର ଉଚିତ୍ ହେବନାହିଁ । ତାଙ୍କୁ ନିମନ୍ତ୍ରଣ ଦେବା । ମାତ୍ର ଦୁଷ୍ଟ ଦୁର୍ଯୋଧନ ରାମ କୃଷ୍ଣଙ୍କୁ ବହୁତ ନିନ୍ଦାକରି କହି ସେମାନଙ୍କୁ ନିମନ୍ତ୍ରଣ ଦେବା ସଂପୂର୍ଣ୍ଣ ଅସମ୍ଭବ ବୋଲି ସଫା କହିଦେଲେ । ଯୁଧିଷ୍ଠିର ଆଉ ଦ୍ୱିରୁକ୍ତି ନକରି ଫେରିଗଲେ ।

ଏଣେ ନାରଦ ମୁନି ନିଜର ଯୋଜନା କାର୍ଯ୍ୟକାରୀ କରିବାପାଇଁ ପ୍ରଥମେ ଯାଇ ଚନ୍ଦ୍ରାବତୀ ପୁରରେ ପହଞ୍ଚିଲେ । ପ୍ରଥମେ କନ୍ୟାର ମନ ଜାଣିବା ଦରକାର । ଚନ୍ଦ୍ରାବତୀ ମୁନିଙ୍କର ପାଦତଳେ ପ୍ରଣାମକରି ତାଙ୍କୁ ଆସନରେ ବସାଇଲା ପରେ ଆସିବା କାରଣ ପଚାରିଲା । ମୁନି କଥା ପ୍ରସଙ୍ଗରେ ସ୍ୱୟମ୍ବର ବିଷୟ କହୁ କହୁ ତା'ର ମନର ପୁରୁଷ କିଏ ବୋଲି ପଚାରିଲେ । ଚନ୍ଦ୍ରାବତୀ ପ୍ରଥମେ ଲଜ୍ଜାରେ କିଛି କହିପାରିଲା ନାହିଁ । ମାତ୍ର ମୁନିଙ୍କଠାରୁ ଆଶ୍ୱାସନା ପାଇଁ ଲୁହ ଛଳଛଳ ଆଖିରେ କହିଲା ଯେ ସେ ଶ୍ରୀକୃଷ୍ଣଙ୍କର ପୁତ୍ର ଶାମ୍ବର ରୂପଗୁଣ ବିଷୟ ପୂର୍ବରୁ ଶୁଣି ତାଙ୍କୁହିଁ ମନେ ମନେ ପତିରୂପେ ବରଣ କରିସାରିଛି । ମାତ୍ର ଲଜ୍ଜାବଶତଃ ଏକଥା କାହାଆଗେ ପ୍ରକାଶ କରିପାରୁ ନାହିଁ । ପିତା ଦୁର୍ଯ୍ୟୋଧନ ମନେ ମନେ ଶ୍ରୀକୃଷ୍ଣଙ୍କ ପ୍ରତି ବୈରଭାବ ପୋଷଣକରି ତାଙ୍କୁ ନିମନ୍ତ୍ରଣ କରୁନାହାନ୍ତି । ତେଣୁ ସେ ଦୁଃଖ ଓ ଅଶାନ୍ତିରେ ରହି କେବଳ ଭଗବାନଙ୍କୁ ଡାକୁଛି । ନାରଦ ଏହାଶୁଣି ମନେମନେ ଖୁସି ହେଲେ ଏବଂ ପ୍ରକାଶ୍ୟରେ କହିଲେ, "ମା ତୁ ଚିନ୍ତା କରନା । ମୁଁ ତୋପାଇଁ ସମସ୍ତ ବ୍ୟବସ୍ଥା କରିବି ।" ଏହା କହି ନିଜ ମୁଣିରୁ ଶାମ୍ବର ଗୋଟିଏ ଚିତ୍ରପଟ ଦେଖାଇଲେ । ଚନ୍ଦ୍ରାବତୀ ସେ ଚିତ୍ରପଟକୁ ଦେଖି ଅତ୍ୟନ୍ତ ମୋହିତ ହୋଇ ତାକୁ ମସ୍ତକରେ ଲଗାଇଲା ଓ ତାଙ୍କୁ ଆଣି ଦେବାକୁ ମୁନିଙ୍କର ଚରଣଧରି ଅଳିକଲା । ନାରଦ ଚନ୍ଦ୍ରାବତୀକୁ ପ୍ରବୋଧନା ଦେଇ ଶାମ୍ବକୁମରକୁ ଆଣିବା ନିମିତ୍ତ ଦ୍ୱାରିକାପୁରକୁ ଚାଲିଲେ ।

ଜମ୍ବୁବତୀଙ୍କର ନନ୍ଦନ ଶାମ୍ବ ନିଜର ପିତା ଶ୍ରୀକୃଷ୍ଣଙ୍କ ପରି ରୂପରେ ଅତି ସୁନ୍ଦର । ବ୍ରହ୍ମାଙ୍କପରି ବୁଦ୍ଧିମାନ, ବୃହସ୍ପତିଙ୍କପରି ପଣ୍ଡିତ । ଶରୀରରେ ସ୍ୱୟଂ ଦେବରାଜ ଇନ୍ଦ୍ର ମଧ୍ୟ ସରି ହେବେ ନାହିଁ । ନାରଦଙ୍କୁ ଦେଖି ସେ ତାଙ୍କର ପାଦତଳେ ପ୍ରଣାମ କରି ଆସିବା କାରଣ ପଚାରିଲେ । ନାରଦ ତା ଆଗରେ ଚନ୍ଦ୍ରାବତୀର ରୂପଗୁଣ ବର୍ଣ୍ଣନାକରି କହିଲେ, "ତୁ ପୁରୁଷ ରତ୍ନ, ସେ ସ୍ତ୍ରୀ ରତ୍ନ । ଏ ଦ୍ୱାରବତୀପୁରରେ ଏପରି ସୁନ୍ଦରୀ ନାହିଁ । ପୁଣି ତୋତେ ସେ କନ୍ୟା ମନେ ମନେ ବରଣକରି ସାରିଛି । ତେଣୁ ନ୍ୟାୟତଃ ସେ ତୋର ଧର୍ମପତ୍ନୀ । ତୁ ଇଚ୍ଛାକଲେ ମୁଁ ତୋତେ ନେଇ ତାହା ନିକଟରେ ପହଞ୍ଚାଇବି ।" ଶାମ୍ବ ସେ ଅତି ଆନନ୍ଦରେ ଏ ପ୍ରସ୍ତାବରେ ଖାଲି ରାଜି ହେଲା ନାହିଁ, ତାଙ୍କୁ ଶୀଘ୍ର ଚନ୍ଦ୍ରାବତୀପୁରରେ ନେଇ ପହଞ୍ଚାଇବାକୁ ମୁନିଙ୍କର ପାଦଧରି ଆକୁଳ ନିବେଦନ କଲା । ମାତ୍ର ମୁନି ଟିକିଏ ରହସ୍ୟ କରିବାଲାଗି କିଛି ବିଳମ୍ବ କରିବା ମଧ୍ୟରେ କନ୍ୟାର ବୟସ କେତେ ବୋଲି ଶାମ୍ବ ପଚାରିଲା । ନାରଦ କହିଲେ ଯେ କନ୍ୟାର ବୟସ ଷୋଳବର୍ଷ । ଶାମ୍ବ କହିଲା ଯେ ତା'ର ବୟସ ପନ୍ଦର, ତେଣୁ ସେ କନ୍ୟାଠାରୁ ବୟସରେ ସାନ । ମାତ୍ର ମୁନି ବୁଝାଇ ଦେଲେଯେ ବଳରାମ, ରେବତୀଙ୍କଠାରୁ ସାନ । ଇନ୍ଦ୍ର, ଶଚୀଙ୍କଠାରୁ ସାନ, ବ୍ରହ୍ମା ସାବିତ୍ରୀଙ୍କଠାରୁ ସାନ, ରୁଦ୍ର ପାର୍ବତୀଙ୍କଠାରୁ ସାନ, କୃଷ୍ଣ ଲକ୍ଷ୍ମୀଙ୍କଠାରୁ ସାନ ଅଟନ୍ତି । ତେଣୁ ଏଥିରେ କିଛି ବାଧା-ନାହିଁ । ଏହାଶୁଣି ଶାମ୍ବ ମୁନିଙ୍କ ଚରଣଧରି ଶୀଘ୍ର ଚନ୍ଦ୍ରାବତୀପୁରକୁ ନେଇ ଯିବାପାଇଁ ପ୍ରାର୍ଥନା କଲା । ମୁନି ମନ୍ତ୍ର ବଳରେ ସମସ୍ତଙ୍କର ଅଗୋଚରରେ ଶାମ୍ବକୁ ନେଇ ଚନ୍ଦ୍ରାବତୀପୁରରେ ପହଞ୍ଚିଲେ ।

ଏହି ସମୟରେ ଚନ୍ଦ୍ରାବତୀର ବାମପାଖରେ ଥିବା ଏକ ମୁଦୁସୁଲୀ ଛିଙ୍କି ଉଠିଲା । ଏହା ଏକ ଶୁଭ ଶକୁନବୋଲି ଜାଣି ଚନ୍ଦ୍ରାବତୀ ଆଗକୁ ଚାହିଁଲା ବେଳକୁ ମୁନିଙ୍କ ସହିତ ଏକ ଅନିନ୍ଦ୍ୟ ସୁନ୍ଦର ତେଜୋବନ୍ତ କୁମାରକୁ ଦେଖି ତାଙ୍କୁହିଁ ନିଜର ଭାବୀ ସ୍ୱାମୀ ଶାମ୍ବ କୁମାର ବୋଲି ଜାଣି ଅତ୍ୟନ୍ତ ଆନନ୍ଦିତ ହେଲା । ମୁନିଙ୍କ ପ୍ରତି ତା'ର ହୃଦୟ ଗଭୀର କୃତଜ୍ଞତାରେ ଭରିଗଲା । ଶାମ୍ବ ମଧ୍ୟ ଚନ୍ଦ୍ରାବତୀର ଅପୂର୍ବ ସଜ୍ଜାରାଣୀ

ରୂପମାଧୁରୀକୁ ଦେଖି ଅତ୍ୟନ୍ତ ବିମୋହିତ ହୋଇଗଲା । ମୁନିଙ୍କପ୍ରତି ତାଙ୍କର ହୃଦୟରେ ମଧ୍ୟ ଗଭୀର କୃତଜ୍ଞତାର ସଂଚାର ହେଲା । ମୁନି ଓ ମୃଦୁସୁଲିମାନଙ୍କ ସମ୍ମୁଖରେ ଶାମ୍ବ ଓ ଚନ୍ଦ୍ରାବତୀ ପରସ୍ପର ବେକରେ ବରଣମାଳା ଲମ୍ବାଇଦେଲେ । ଶାମ୍ବଙ୍କୁ ଅର୍ପଣକରି ମୁନି ବିଦାୟ ନେଇ ଅନ୍ତର୍ଦ୍ଧାନ ହେଲେ । ଗଲାବେଳେ କହିଗଲେ ଯେ ସେ ପୁଣି ଆସି ଶାମ୍ବଙ୍କୁ ଗୋପନରେ ନେଇଯିବେ । କୁମାର କୁମାରୀ ଦୁହେଁ ପରସ୍ପର ନିବିଡ଼ ପ୍ରେମରେ ଆବଦ୍ଧ ହୋଇଗଲେ । ଏହା ଚନ୍ଦ୍ରାବତୀର ବିଶ୍ୱସ୍ତା ମୃଦୁସୁଲୀମାନଙ୍କ ବ୍ୟତୀତ ଆଉକେହି ଜାଣିପାରିଲେ ନାହିଁ ।

ଏଣେ ଲକ୍ଷେ ରାଜା ବରଣ ହୋଇ ଆସି ସ୍ୱୟମ୍ବର ସଭା ମଣ୍ଡନ କରିସାରିଲାପରେ କନ୍ୟାକୁ ସୁବେଶ କରାଇ ବରଣମାଳା ହାତରେ ସଭାମଧ୍ୟକୁ ଅଣାଯିବାର କଥା । ଏଥିପାଇଁ ଯଥା ସମୟରେ ଅନ୍ତଃପୁରକୁ ଦୁର୍ଯ୍ୟୋଧନଙ୍କର ଆଦେଶ ପ୍ରେରିତ ହେଲା । ମାତ୍ର କନ୍ୟା ନ ଆସେ । ବହୁତ ବିଳମ୍ବ ହେବାରୁ ଦୁର୍ଯ୍ୟୋଧନ, ଦୁଃଶାସନଙ୍କୁ ଶୀଘ୍ର କନ୍ୟା ଆଣିବାପାଇଁ ଅନ୍ତଃପୁରକୁ ପଠାଇଲେ । ଦୁଃଶାସନ କଞ୍ଚୁକୀଠାରୁ ଗୁପ୍ତ ସମ୍ବାଦ ପାଇଲେ ଯେ କନ୍ୟାପୁରରେ ଏକ ପୁରୁଷ ଆସି ରହିଛି ଓ ତା ସହିତ କନ୍ୟାର ଗାନ୍ଧର୍ବମତରେ ବିବାହ ହୋଇ ସାରିଛି । ଏପରି ସୁରକ୍ଷିତ ପୁର ମଧ୍ୟକୁ ବାହାରର ଜଣେ ପୁରୁଷ କପରି ଆସିଲା ଏହା ଭାବି ଦୁଃଶାସନ ଯେତିକ ଆଶ୍ଚର୍ଯ୍ୟ ହେଲେ ତତୋଽଧିକ କ୍ରୋଧାନ୍ୱିତ ହେଲେ ।

ସେ ସଙ୍ଗେ ସଙ୍ଗେ ସୈନ୍ୟସାମନ୍ତ ଧରି ଚନ୍ଦ୍ରାବତୀପୁରକୁ ଘେରାଉ କଲେ । ପୁଣି ଏକଥା ସ୍ୱୟମ୍ବର ସଭାରେ ଯେପରି ପ୍ରକାଶ ନପାଉ ସେଥିପାଇଁ ମଧ୍ୟ ସତର୍କ ହେଲେ । ବେଶି ଗୋଳ ନକରି ଚନ୍ଦ୍ରାବତୀ ପୁରରୁ ସେ ବିଟ ପୁରୁଷକୁ ଧରିଆଣି ଶୀଘ୍ର ମାରିଦେବାକୁ ସେ ଚେଷ୍ଟା କଲେ । ମାତ୍ର ଚନ୍ଦ୍ରାବତୀର ବାରଣ ନମାନି, ପଳାଇଯିବାକୁ ମଧ୍ୟ ରାଜି ନହୋଇ, ଶାମ୍ବ ଖଡ୍ଗମୂର୍ତ୍ତି ଧରି ଆତ୍ମପ୍ରକାଶ କଲେ ଓ ଏକାକୀ ଯୁଦ୍ଧ କରି ବହୁ ସୈନ୍ୟଙ୍କୁ ହତାହତ କଲେ । ଦୁଃଶାସନଙ୍କ ପରି ବୀର ଗୋଟାଏ ମେଞ୍ଚଡ଼ ଟୋକାର ବୀରତ୍ୱ ଦେଖି ବଡ଼ ଆଶ୍ଚର୍ଯ୍ୟ ହେଲେ ଓ ସେ ଯେ

ନିଶ୍ଚିତଭାବେ ମହତ୍ତ୍ୱ ସନ୍ତାନ ଏହା ଅନୁମାନ କଲେ । ଅଧିକ ସୈନ୍ୟଦ୍ୱାରା ଯୁଦ୍ଧରେ ପ୍ରବୃତ୍ତ ହେଲେ କଥାଟା ବାହାରେ କାଳେ ପ୍ରକାଶିତ ହୋଇଯିବ ଓ ସେହି କାରଣରୁ କୁଳରେ କଳଙ୍କ ଲାଗିବ ଏହି ଆଶଙ୍କାରେ ଦୁଃଶାସନ ନିଜେ ପ୍ରାଣପଣେ ଯୁଦ୍ଧକଲେ ଓ ଶେଷରେ ତାଙ୍କର ଗଦାଘାତରେ ଶାମ୍ବର ତରବାରି ଭାଙ୍ଗିଗଲା । ସଙ୍ଗେ ସଙ୍ଗେ ସୈନ୍ୟମାନେ ତାକୁ ବନ୍ଦୀକରି ବଧଭୂମିକୁ ନେଇଗଲେ ।

ପାଣ୍ଡବମାନେ କୌଣସି ସୂତ୍ରରୁ ଏ ସମ୍ବାଦ ପାଇ ଶୀଘ୍ର ଯାଇ ବଧଭୂମିରେ ଉପସ୍ଥିତ ହେଲେ ଓ ଅର୍ଜୁନ ଶାମ୍ବକୁ ଘାତକଠାରୁ ଛଡ଼ାଇନେଇ ତାର ବନ୍ଧନ ଖୋଲିଦେଇ ତାକୁ କୋଳାଗ୍ରତ କଲେ । ଅନ୍ୟ ଭାଇମାନେ ତାଙ୍କୁ ଘେରି ରହିଲେ । ଏ ସମ୍ବାଦ ଗୃହଆଡ଼େ ପ୍ରଚାର ହେବାକୁ ବେଶି ସମୟ ଲାଗିଲାନାହିଁ । ନିମନ୍ତ୍ରିତ ରାଜାମାନଙ୍କ ମଧ୍ୟରୁ ଅନେକ ଫେରିଗଲେ । ଆଉ କେତେକ ରାଜା କୌରବମାନଙ୍କ ପକ୍ଷନେଇ ଯୁଦ୍ଧକରିବାକୁ ଆଗେଇ ଆସିଲେ । କୌରବ ପାଣ୍ଡବଙ୍କ ମଧ୍ୟରେ ଶାମ୍ବକୁ କେନ୍ଦ୍ରକରି ଘୋର ଯୁଦ୍ଧ ଲାଗିଗଲା । ନାରଦମୁନି ଆକାଶରେ ରହି ଏ ଯୁଦ୍ଧ ଦୃଶ୍ୟକୁ ଆନନ୍ଦରେ ଉପଭୋଗ କଲେ । ତାପରେ ଧାଇଁଲେ ରାମକୃଷ୍ଣଙ୍କୁ ଏ ଖବର ଦେବାପାଇଁ ।

ରାମ କୃଷ୍ଣ ଏ ଖବର ପାଇ ମହାକ୍ରୋଧରେ ଆଉ ସହିତ ହସ୍ତିନା ଆକ୍ରମଣ କଲେ । ଦୁର୍ଯ୍ୟୋଧନ ମଧ୍ୟ ନଳିଁଯିବା ଲୋକ ନୁହନ୍ତି । ଯାଦବ ଓ କୌରବ ଆଉ ମଧ୍ୟରେ ପ୍ରବଳ ସଂଗ୍ରାମ ଚାଲିଲା । ଶେଷରେ ବଳରାମ ଅତ୍ୟନ୍ତ କ୍ରୋଧରେ ନୃସିଂହ ରୂପ ଧାରଣ କରି ଲଙ୍ଗଳ ମୁନରେ ହସ୍ତିନାକୁ ଟାଣି ସମୁଦ୍ରରେ ପକାଇ ଦେବାକୁ ବାହାରିଲେ । ଏତେବେଳକୁ ସମସ୍ତଙ୍କର ଚେତା ପଶିଲା । ସ୍ୱର୍ଗରେ ଦେବତାମାନେ ମଧ୍ୟ ଭୟରେ ଥରହର ହେଲେ । ତାପରେ ନିଜେ ବ୍ରହ୍ମା, ଦୁର୍ଯ୍ୟୋଧନକୁ ସଙ୍ଗରେ ନେଇ ଆସି ବଳରାମଙ୍କର କ୍ରୋଧ ଶାନ୍ତ ପାଇଁ ପ୍ରାର୍ଥନା କଲେ । "ହେ ପ୍ରଭୁ ଦେବ ଅନନ୍ତ, ହେ ଶେଷଦେବ, ଆପଣ କ୍ରୋଧଶାନ୍ତ ନକଲେ ପୃଥିବୀ ରସାତଳଗାମୀ ହେବ ।" ସଙ୍ଗେ ସଙ୍ଗେ ଶ୍ରୀକୃଷ୍ଣ, ନାରଦ ମଧ୍ୟ

ଆସି ପହଞ୍ଚିଗଲେ । ସମସ୍ତେ ଏକ ସ୍ୱରରେ ବଳରାମଙ୍କୁ ଶାନ୍ତ ହେବାପାଇଁ ନିବେଦନ କଲେ । ମାତ୍ର ବଳରାମ କହିଲେ, "ଦୁର୍ଯ୍ୟୋଧନକୁ ମୁଁ କେବେହେ ଭଲ ପାଉ ନଥିଲି ! ଶେଷରେ ସେ ମୋ ସଙ୍ଗେ ଯୁଦ୍ଧ କରିବାକୁ ବାହାରିଲା । ମୋର ପୁଅ ବୋଲି ଜାଣିମଧ୍ୟ ଶାମ୍ବ କୁମରକୁ ଏତେ ନିର୍ଯ୍ୟାତନା ଦେଲା ! ମୁଁ ପ୍ରତିଜ୍ଞା କରୁଛି ହସ୍ତିନାକୁ ସମୁଦ୍ରରେ ବୁଡ଼ାଇବି । ମୋ ପ୍ରତିଜ୍ଞା ମୁଁ ନିଶ୍ଚୟ ପାଳନ କରିବି । ଶ୍ରୀକୃଷ୍ଣ ହାତଯୋଡ଼ି କହିଲେ, "ହେ ପ୍ରଭୁ, ଶାମ୍ବ କୁମର ସହିତେ ପାଣ୍ଡବ ପାଞ୍ଚଭାଇ, ସୁଭଦ୍ରା ସମସ୍ତେ ବର୍ତ୍ତମାନ ହସ୍ତିନାରେ ଅଛନ୍ତି । ଯଦି ଆପଣ ହସ୍ତିନାକୁ ସମୁଦ୍ରରେ ବୁଡ଼ାଇଦେବେ ତେବେ ଆମର ଶତ୍ରୁ ସହିତ ମିତ୍ରମାନେ ମଧ୍ୟ ବିନାଶ ହେବେ । ଆମେ ବନ୍ଧୁହୀନ ଜୀବନ ଯାପନ କରିବା । ଏଥିକୁ ଅବଧାନ ହେଉ । ଏହି ସମୟରେ ବ୍ରହ୍ମାଙ୍କ ନିର୍ଦ୍ଦେଶରେ ଦୁର୍ଯ୍ୟୋଧନ, ଶାମ୍ବ ଓ ଚନ୍ଦ୍ରାବତୀଙ୍କୁ ଆଣି ବଳରାମଠାରେ ସମର୍ପି ଦେଇ ଶରଣ ପଶିଲେ । ସମସ୍ତଙ୍କୁ ଦେଖି ବଳରାମଙ୍କର କ୍ରୋଧ କ୍ରମେ ଶାନ୍ତ ହେଲା । ସେ ନିଜର ପୂର୍ବତନ ପରମ ଭକ୍ତ ଓ ବର୍ତ୍ତମାନ ସମ୍ମୁଖ ଦୁର୍ଯ୍ୟୋଧନଙ୍କୁ ସ୍ନେହପୂର୍ଣ୍ଣ ଦୃଷ୍ଟିରେ ଚାହିଁଲେ । ଶାମ୍ବ କୁମର ଓ ଚନ୍ଦ୍ରାବତୀକନ୍ୟାକୁ କୋଳାଗ୍ରତ କଲେ । ଦୁର୍ଯ୍ୟୋଧନଙ୍କର ଏହି ମହା ଅପରାଧର ସ୍ମାରକୀ ସ୍ୱରୂପ ବଳରାମ, ହସ୍ତିନା ରାଜଭବନର ସିଂହଦ୍ୱାରକୁ ଅଳ୍ପ ବଙ୍କା କରିଦେଲେ । ସେହି ଦିନରୁ ସିଂହଦ୍ୱାରଟିକୁ ଅଳ୍ପ ବଙ୍କାହୋଇ ନିର୍ମିତ ହୋଇ ଆସୁଥିବାର କଥିତ ଅଛି ।

## କଟମ୍ବାସୁର ଉପାଖ୍ୟାନ

ହସ୍ତିନାରେ ଶାମ୍ବ ଓ ଚନ୍ଦ୍ରାବତୀଙ୍କର ବିବାହ ମହାସମାରୋହରେ ଅନୁଷ୍ଠିତ ହେଲା । ନିଜେ ବ୍ୟାସଦେବ ଉପସ୍ଥିତ ହୋଇ ବିବାହ କରାଇଲେ । ବିବାହର ଅନ୍ୟାନ୍ୟ ସମସ୍ତ ଯୋଗାଡ଼ ସହିତ 'କଟମ୍ବା' ଆଣ ବୋଲି ବ୍ୟାସଦେବ କହିବାରୁ ଯୁଧିଷ୍ଠିର, 'କଟମ୍ବା' କଅଣ ବୋଲି ପଚାରିଲେ । ବ୍ୟାସଦେବ କହିଲେ, "ସତ୍ୟଯୁଗରେ କଞ୍ଚନ ବ୍ରହ୍ମାଙ୍କର କନ୍ୟା ସରସ୍ୱତୀ ବିଷ୍ଣୁଙ୍କୁ ପତିରୂପେ ବରଣ କଲେ । ମେରୁ ପର୍ବତ ଉପରେ

ଉଭୟଙ୍କର ବିବାହ ମହା ଆଡ଼ମ୍ବରରେ ହେଉଥିବା ସମୟରେ ବ୍ରହ୍ମା-ବରରେ ବଳୀୟାନ୍ କଂସାସୁର ଆସି ପହଞ୍ଚି ବ୍ରହ୍ମାଙ୍କୁ ବହୁତ ଭର୍ତ୍ସନା କରି କହିଲା ଯେ ଏ କନ୍ୟାକୁ ବିବାହ କରିବାପାଇଁ ବହୁକାଳରୁ ସେ ଆଶାକରି ରହିଛି । ଅଥଚ ବ୍ରହ୍ମା ତାକୁ ବିଷ୍ଣୁଙ୍କୁ ପ୍ରଦାନ କରୁଛନ୍ତି ? ଏହା କହି ମହାକ୍ରୋଧରେ ଉପସ୍ଥିତ ସମସ୍ତ ଦେବତାଙ୍କୁ ଯୁଦ୍ଧରେ ପରାସ୍ତ କରି ବ୍ରହ୍ମାଙ୍କ କୋଳରୁ ବଳାତ୍କାରରେ କନ୍ୟାକୁ ଛଡ଼ାଇ ନେଇ ଚାଲିଗଲା । ବିଷ୍ଣୁ ଏହାଦେଖି ବରବେଶ ଫିଙ୍ଗିଦେଇ ଅସୁର ସହିତ ଯୁଦ୍ଧକଲେ । ମାତ୍ର ତାକୁ ମାରି ପାରିଲେ ନାହିଁ । ବ୍ରହ୍ମାଙ୍କୁ ଏହାର କାରଣ ପଚାରିବାରୁ ବ୍ରହ୍ମା କହିଲେ ଯେ ସେ ତାକୁ ନିଜେ ବଞ୍ଚିଥିବା ପର୍ଯ୍ୟନ୍ତ ବଞ୍ଚିରହିବାକୁ ବରଦେଇ ସାରିଛନ୍ତି । ତେଣୁ ବିଷ୍ଣୁ ବ୍ରହ୍ମାଙ୍କର ଏପରି ଜଣେ ଭକ୍ତକୁ ନମାରି ନିଜର ଶାଳକ ଲେଖାକରି ତାର ବକ୍ଷସ୍ଥଳକୁ ମାଡ଼ିବସି କନ୍ୟାଦାନ କରିବାକୁ ବ୍ରହ୍ମାଙ୍କୁ ନିର୍ଦ୍ଦେଶ ଦେଲେ । ସେହି ଦିନଠାରୁ ବିବାହ ବେଳେ କନ୍ୟାପିତା ପାଇଁ କଂସମ୍ବା ଆସନର ବିଧାନ ରହିଛି । କନ୍ୟାପିତା କଂସମ୍ବା ଆସନରେ କଂସମ୍ବା ରାକ୍ଷସକୁ ପ୍ରତୀକ ଭାବେ ମାଡ଼ିବସି କନ୍ୟାଦାନ କରିଥାନ୍ତି ।" ଯୁଧିଷ୍ଠିର ଓ ଅନ୍ୟମାନେ ବ୍ୟାସଦେବଙ୍କ ମୁଖରୁ ଏହାଶୁଣି ବଡ଼ ଆନନ୍ଦିତ ହେଲେ । ରାଜା ଦୁର୍ଯ୍ୟୋଧନ ନିଜର କନ୍ୟାକୁ ବିପୁଳ ଧନରାଶି ଯୌତୁକ ରୂପେ ପ୍ରଦାନ କଲେ ଓ ବିନୟ ହୋଇ କହିଲେ, "ସ୍ୱୟଂ ମହାଲକ୍ଷ୍ମୀ ଯାହାଙ୍କର ଘରଗୃହିଣୀ, ତାଙ୍କର ପୁଅକୁ ମୁଁ ବା କି ଯୌତୁକ ଦେଇ ପାରିବି ?"

ବିବାହ ଶେଷ ପରେ ରାମକୃଷ୍ଣ ପୁଅ ବୋହୂଙ୍କୁ ସଙ୍ଗରେ ଧରି ନିଜର ଆଠ ସହିତ ମହା ଆନନ୍ଦରେ ଦ୍ୱାରବତୀ ପୁରକୁ ଫେରିଗଲେ ।

## ଉଷା ହରଣ

ଶୋଣିତ ପୁରର ମହାପ୍ରତାପଶାଳୀ ରାଜା ବାଣାସୁରର କନ୍ୟା ଉଷା । ରୂପରେ "କୋଟିଏ ପାଙ୍କରି ରୂପକୁ ପାରଇ ସେ ଜଣି ।" ସେ ଦିନେ ଏକ ଉତ୍ତମ ସୁନ୍ଦର ପୁରୁଷକୁ ସ୍ୱପ୍ନରେ ଦେଖି ସେହି ଦିନଠାରୁ ମଦନ ଶରରେ ପୀଡ଼ିତ ହୋଇ ଆହାର ନିଦ୍ରା ଛାଡ଼ିଲା । ତାର ସଖୀ

ଚିତ୍ର ରେଖା ତାଙ୍କୁ ବହୁ ରାଜପୁତ୍ରଙ୍କର ଚିତ୍ରପଟ ଲେଖି ଦେଖାଇବାରେ ଶ୍ରୀକୃଷ୍ଣଙ୍କ ନାତି ପ୍ରଦ୍ୟୁମ୍ନଙ୍କ ପୁତ୍ର ଅନିରୁଦ୍ଧଙ୍କୁ ସେ ନିଜର ସ୍ୱପ୍ନର ପୁରୁଷ ବୋଲି ଚିହ୍ନିଲେ ଓ ତାଙ୍କୁ ଆଣି ନ ଦେଲେ ସେ ନିଶ୍ଚୟ ମରିବ ବୋଲି କହିଲା । ଚିତ୍ରଲେଖା ପ୍ରିୟ ସଖୀର ଏପରି ବିକଳ ଦେଖି ନାରଦଙ୍କ ମନ୍ତ୍ର ସ୍ମରଣ କରି ନିଶାର୍ଦ୍ଧରେ ଦ୍ୱାରାବତୀପୁରକୁ ଯାଇ ଅନିରୁଦ୍ଧର ଶୟନ କକ୍ଷରେ ପଶିଲା ଏବଂ ମନ୍ତ୍ର ବଳରେ ପଲଙ୍କ ସହିତ ଅନିରୁଦ୍ଧଙ୍କୁ ଉଡ଼ାଇ ନେଇ ଯାଇ ଉଷା ପାଖରେ ହାଜର କରାଇଲା । ଉଷା, ତାଙ୍କୁ ଦେଖି କୋଟିନିଧି ପାଇଲାପରି ଖୁସି ହେଲା । ଅନିରୁଦ୍ଧ ମଧ୍ୟ ଉଷାର ଅପ୍ସରାନିନ୍ଦୀ ଅପୂର୍ବ ସୌନ୍ଦର୍ଯ୍ୟ ଦେଖି ମୋହିତ ହେଲେ । ଉଭୟଙ୍କର ଗାନ୍ଧର୍ବ ମତରେ ବିବାହ ହୋଇଗଲା ଓ କୁମାର କୁମାରୀ କିଛି ଦିନ ଗୋପନରେ ସମ୍ଭୋଗ ସୁଖରେ ମାତିଲେ ।

କ୍ରମେ କନ୍ୟାର ଗୁପ୍ତ ପ୍ରଣୟ ସମ୍ବାଦ ବାଣାସୁର କାନକୁ ଗଲା । ସେ ମହାକ୍ରୋଧରେ ଆସି ଅନିରୁଦ୍ଧଙ୍କୁ ନାଗପାଶରେ ବନ୍ଧନ କରି ଦେଇ କନ୍ୟାର ବିକଳ ହେତୁ ପ୍ରାଣରେ ନ ମାରି ଫେରି ଗଲା ଓ ଉଷାର ନଗରକୁ ଅସଂଖ୍ୟ ପ୍ରହରୀ ଦ୍ୱାରା ଜଗାଇ ରଖିଲା ।

ନାରଦଙ୍କଠାରୁ ସମ୍ବାଦପାଇ ରାମକୃଷ୍ଣଙ୍କ ସହିତ ବାଣାସୁରର ଘୋର ଯୁଦ୍ଧ ହେଲା । ସ୍ୱୟଂ ମହାଦେବ ଭକ୍ତ ବାଣାସୁର ସପକ୍ଷରେ ଯୁଦ୍ଧ କଲେ । ହରିହରଙ୍କ ଯୁଦ୍ଧ ଶେଷ ହେବାର ନୁହେଁ । ଶେଷରେ ମହାଦେବ କହିଲେ, "ହେ ଶ୍ରୀକୃଷ୍ଣ, ମୋହର ବରରେ ବାଣାସୁର ଅମର । ତୁମେ ଯଦି ତାକୁ ମାରିବାକୁ ସୁଦର୍ଶନ ଚକ୍ର ଧରିଲ, ତେବେ ଆମକୁ ଈଶ୍ୱର ପଦ ଦେବା ନିରର୍ଥକ । ତେଣୁ ମୋର ଅନୁରୋଧ, ତୁମେ ତାର ସହସ୍ର ଭୁଜକୁ ଚକ୍ରରେ ଛେଦନ କରି କେବଳ ଚାରିଭୁଜ ରଖ ଓ କ୍ରୋଧ ଶାନ୍ତ କର । ଏ ଅସୁର ବର ପାଇ ସାରି ମୋ ସହିତ ବଳ ପରୀକ୍ଷା କରିବାକୁ ଆହ୍ୱାନ କରିବାରୁ ମୁଁ ଏହାକୁ ଏ ବର ସହିତ ଏହି ଅଭିଶାପ ମଧ୍ୟ ଦେଇଛି ଯେ ତୋର ସହସ୍ର ଭୁଜ ଶ୍ରୀକୃଷ୍ଣ ଚକ୍ରରେ ଛେଦନ କରି ତୋର ଦର୍ପ ହରଣ କରିବେ ।

ତାହାହିଁ ହେଲା । ବାଣାସୁରର ଗର୍ବ ଖର୍ବ ହେଲା । ଶ୍ରୀକୃଷ୍ଣ ବଳରାମ କ୍ରୋଧ ଶାନ୍ତ କଲେ ଓ ମହାସମାରୋହରେ ଉଷା ଅନିରୁଦ୍ଧଙ୍କର ବିବାହ ଉତ୍ସବ କରାଇ ବର କନ୍ୟା ସଙ୍ଗରେ ନେଇ ଦ୍ୱାରକା ଫେରିଗଲେ । **



# ମ ହା ଭା ର ତ

ସାରଳା

୨୭ଶ ଅଧ୍ୟାୟ

## ଶ୍ରୀକୃଷ୍ଣ ବଳରାମଙ୍କ ବିଦ୍ୟା ପଠନ

ଶ୍ରୀକୃଷ୍ଣ ବଳରାମ ପିଲା ଦିନେ ଗୋ ଗୋଷ୍ଠରେ ରହି ପାଠ ପଢ଼ିବାର ସୁଯୋଗ ପାଇ ନ ଥିଲେ । ତେଣୁ ଦୁଇ ଭାଇ ଅବନ୍ତୀପୁରର ଶାନ୍ତପନ (ସାନ୍ଦୀପନ) ମୁନିଙ୍କ ଆଶ୍ରମରେ ରହି ବିଦ୍ୟାଭ୍ୟାସ କରିବାକୁ ଲାଗିଲେ । ମୁନି ଓ ମୁନି ପତ୍ନୀ ତାଙ୍କୁ ନିଜର ପୁଅଠାରୁ ବଳି ସ୍ନେହ ଶ୍ରଦ୍ଧା କରୁଥିଲେ ।

ଶାନ୍ତପନ ମୁନିଙ୍କର ପାଞ୍ଚ ପୁଅ ମଧ୍ୟରୁ ତିନି ପୁଅ ମରି ଯାଇଥିଲେ । ବାକି ଦୁଇ ପୁଅଙ୍କୁ ମୁନି ଦିନେ ସାଙ୍ଗରେ ନେଇ ସମୁଦ୍ର ସ୍ନାନ କରିବାକୁ ଯାଇଥିଲେ । ହଠାତ୍ ସମୁଦ୍ର ଲହରୀ ମାଡି ଆସି ଦୁଇ ପୁଅଙ୍କୁ ଭସାଇ ନେଲା । ମୁନି ଓ ମୁନିପତ୍ନୀ ଶେଷ ଦୁଇ ପୁଅଙ୍କୁ ହରାଇ ଦୁଃଖରେ ଏକେ ମିୟମାଣ ହୋଇ ପଡ଼ିଲେ ଯେ ଆଶ୍ରମ ଭାଙ୍ଗି ଦେଇ ପ୍ରୟାଗରେ ଝାସ ଦେବାକୁ ବାହାରିଲେ । ଶ୍ରୀକୃଷ୍ଣ ବଳରାମ ସହିତେ ତାଙ୍କର ଏକ ହଜାର ଶିଷ୍ୟଙ୍କୁ ଡ଼ାକି କହିଲେ, "ବାପାମାନେ, ତୁମେମାନେ ଏବେ ନିଜ ନିଜ ଘରକୁ ଯାଅ । ଆମେ ଦୁଇ ଅଭାଗା ପ୍ରାଣୀ ପ୍ରୟାଗଠାରେ ଗଙ୍ଗାନଦୀରେ ଝାସ ଦେଇ ଅପୁତ୍ରକ ଦୋଷରୁ ମୁକ୍ତ ହେବାକୁ ଶେଷ ଚେଷ୍ଟା କରିବୁ ।

ଏହାଶୁଣି ସବୁ ଶିଷ୍ୟମାନେ କାନ୍ଦିଲେ । ଶ୍ରୀକୃଷ୍ଣ ବଳରାମ ବହୁତ ବୁଝାଇ କହିଲେ, "ଗୁରୁଦେବ, ଆମେମାନେ ଆପଣଙ୍କର ଏକ ହଜାର ପୁଅ ଅଛୁ । ଆମ ମୁହଁକୁ ଚାହିଁ ଆପଣ ପୁତ୍ରଶୋକ ପାଶୋରନ୍ତୁ ।" ଏହିପରି ବହୁତ ବୁଝାଇବା ପରେ ସେମାନେ ଟିକିଏ ଶାନ୍ତ ହେଲେ । ମାତ୍ର ଗୁରୁ ପତ୍ନୀଙ୍କ ଆଖିରୁ ଲୁହ ଶୁଖିଲା ନାହିଁ । ଯାହା ହେଉ ଆଶ୍ରମରେ ବିଦ୍ୟା ଶିକ୍ଷା ପୂର୍ବପରି ଚାଲିଲା ।

ଦିନେ ଆଶ୍ରମରେ କାଠ ନଥିବାରୁ ସବୁ ଶିଷ୍ୟମାନେ କାଠ ଆଣିବାକୁ ବଣକୁ ଗଲେ । କାଠ ସଂଗ୍ରହ କରି ଆଶ୍ରମକୁ ଫେରିଲାବେଳକୁ ଶ୍ରୀକୃଷ୍ଣ କୌତୁକରେ ମାୟା ରଚନା କଲେ । ସଙ୍ଗେ ସଙ୍ଗେ ମେଘ ଘୋଟି ଯାଇ ପ୍ରବଳ ବର୍ଷା ହେଲା । ଶିଷ୍ୟମାନେ କିଏ କେଉଁଠି ଯାଇ ଆଶ୍ରୟ ନେଲେ । ଶ୍ରୀକୃଷ୍ଣ, ତାଙ୍କର ପୂର୍ବ ଜନ୍ମର ବନ୍ଧୁ ଦାମୋଦର (ସୁଦାମା) ନାମକ ବ୍ରାହ୍ମଣ ପିଲାକୁ ସାଙ୍ଗରେ ନେଇ ଯାଇ ଗୋଟିଏ ବୃକ୍ଷ କୋରଡରେ ଆଶ୍ରୟ ନେଲେ । ତା ସହିତ ପୁଣି ମଇଦ ବସିଲେ ଓ ଧାନିଟି ତା ସଙ୍ଗେ ଖୁସି ଗପରେ କଟାଇ ସକାଳୁ ସବୁ ଶିଷ୍ୟମାନଙ୍କୁ ସଙ୍ଗରେ ଧରି ଆଶ୍ରମକୁ ଫେରିଚଲେ ।

ଗୁରୁ ଓ ଗୁରୁପତ୍ନୀ ନ ଖାଇ ନ ପିଇ ଶିଷ୍ୟମାନଙ୍କ ବାଟ ଚାହିଁ ବସିଥାନ୍ତି । ସମସ୍ତେ କାଠ ନେଇ ପହଞ୍ଚି ଯିବାରୁ ସେମାନେ ଆଶ୍ୱସ୍ତ ହେଲେ । କିଛି କାଳ ପରେ ବିଦ୍ୟା ଶିକ୍ଷା ଶେଷ ହେଲା । ଗୁରୁ ଓ ଗୁରୁପତ୍ନୀ ଶିଷ୍ୟ-ମାନଙ୍କଠାରୁ ବିଦାୟ ନେଇ ପୁନର୍ବାର ପ୍ରୟାଗରେ ବାସ କରିବାକୁ ବାହାରିଲେ । ଶ୍ରୀକୃଷ୍ଣ ବଳରାମ ବିଦ୍ୟା ଶେଷରେ କିଛି ଗୁରୁ ଦକ୍ଷିଣା ଯାଚିବାରୁ ଗୁରୁଦେବ କହିଲେ, "ବାପା, ମୁଁ ତ ପ୍ରୟାଗରେ ବାସ କରିବାକୁ ବାହାରିଛି । ମୋର ଦକ୍ଷିଣା କଣ ହେବ ? ତୁମର ମାତାଙ୍କୁ ପଚାର ।" ଗୁରୁପତ୍ନୀ କହିଲେ, "ବାପା, ମୁଁ ନିଶ୍ଚୟ ସ୍ୱାମୀଙ୍କର ଅନୁ-ଗାମିନୀ ହେବି । ଏକମାତ୍ର ଦକ୍ଷିଣା ରୂପେ ତୁମେ ମୋର ମୃତ ପୁତ୍ରମାନଙ୍କୁ ଆଣି ଦେଇ ପାରିବ କି ? ଯଦି ଭାବୁଛ, ତାହା ସମ୍ଭବ ନୁହେଁ, ତେବେ ଘରକୁ ଯାଅ । ଆମେ ଆମର ଗନ୍ତବ୍ୟ ପଥରେ ଚାଲିଲୁ ।" ଶ୍ରୀକୃଷ୍ଣ ମନେ

ମନେ ଭାବିଲେ, ଏମାନେ ଯଦି ଚାହାଁନ୍ତେ ମୁଁ ଏମାନଙ୍କୁ ପରମ ଦୁର୍ଲ୍ଲଭ "ମୋକ୍ଷ" ପ୍ରଦାନ କରି ପାରିଥାନ୍ତି । ମାତ୍ର ସଂସାର ମାୟାରେ ମୋହିତ ହୋଇ ଏମାନେ ମୃତ ପୁତ୍ରମାନଙ୍କୁ ଫେରି ପାଇବାକୁ ଚାହୁଁଛନ୍ତି । ଶ୍ରୀକୃଷ୍ଣ ଜାଣିଥିଲେ ଯେ ଶାନ୍ତିପତ୍ନୀ ମୁନି ବ୍ରହ୍ମାଙ୍କ ଅଂଶରେ ଜାତ । ନଚେତ୍ ତାଙ୍କର ଓ ବଳରାମଙ୍କର ନମସ୍କାର ସେ ସହ୍ୟ କରି ପାରନ୍ତେ ନାହିଁ । ଦେବ ଅଂଶରେ ଜାତ ପ୍ରାଣୀମାନଙ୍କୁ ମଧ୍ୟ ତାଙ୍କରି ଦ୍ୱାରା ସୃଷ୍ଟ ସଂସାରର ମାୟା କେତେ ଦୂର ବଶୀଭୂତ କରି ପାରୁଛି ତାହା ଦେଖି ସେ ମନେ ମନେ ମଧ୍ୟ ଆଶ୍ଚର୍ଯ୍ୟ ହେଲେ ।

ପ୍ରକାଶ୍ୟରେ କହିଲେ, "ଗୁରୁଦେବ, ମୁଁ ଆପଣଙ୍କର ମୃତ ପୁତ୍ର ସଂଧାନରେ ଚାଲିଲି । ମୁଁ ଆଶା କରୁଛି, ସେମାନଙ୍କୁ ମୁଁ ନିଶ୍ଚୟ ଫେରାଇ ଆଣି ପାରିବି । ଆପଣ ଗଙ୍ଗାରେ ଝାସ ଦେବା ଚିନ୍ତା ମନରୁ ପରିତ୍ୟାଗ କରି ଶାନ୍ତ ମନରେ ଆଶ୍ରମରେ ବାସ କରୁଥାନ୍ତୁ ।"

ଏହା କହି ଶ୍ରୀକୃଷ୍ଣ ଭାଇ ବଳରାମଙ୍କୁ ଦ୍ୱାରକା ପଠାଇ ଦେଇ ଏକାକୀ ସମୁଦ୍ର ମଧ୍ୟରେ ପଶିଲେ । ବରୁଣ ରାଜା ତାଙ୍କର ଯଥା ଯୋଗ୍ୟ ସତ୍କାର କରିସାରି ଆସିବାର କାରଣ ପଚାରିବାରୁ ଶ୍ରୀକୃଷ୍ଣ ଯେ ଶାନ୍ତିପତ୍ନୀ ଋଷିଙ୍କର ମୃତ ପୁତ୍ରମାନଙ୍କ ସନ୍ଧାନରେ ଆସିଛନ୍ତି ଏହା ପ୍ରକାଶ କଲେ । ବରୁଣ କହିଲେ ଯେ ସେମାନଙ୍କର ଆୟୁଷ ପୂର୍ଣ୍ଣ ହେବାରୁ ଯମଦେବତା ତାଙ୍କୁ ମୃତ୍ୟୁ ପ୍ରଦାନ କରି ନିଜପୁରକୁ ନେଇ ଯାଇଛନ୍ତି । ସେ ଏହି କାର୍ଯ୍ୟରେ କେବଳ ଏକ ମାଧ୍ୟମ ରୂପେ କାର୍ଯ୍ୟ କରିଛନ୍ତି ।

ଶ୍ରୀକୃଷ୍ଣ ସେଠାରୁ ସଂଯମନୀ ପୁରକୁ ବାହାରିଲେ । ସେଠାରେ ବହୁତ ପାପୀ ଜଗନ୍ନାଥ (ଶ୍ରୀକୃଷ୍ଣ)ଙ୍କୁ ଦର୍ଶନ କରି ମୋକ୍ଷ ପାଇଗଲେ । ଯମ ଦେବତା ଶ୍ରୀକୃଷ୍ଣଙ୍କୁ ପାଦ ଅର୍ଘ୍ୟ ଦେଇ ପୂଜା କରି ଆସିବା କାରଣ ପଚାରିବାରୁ ଶ୍ରୀକୃଷ୍ଣ ନିଜର ଉଦ୍ଦେଶ୍ୟ ଜଣାଇଲେ ଓ ମୁନିଙ୍କର ବାଳୁତ କୁମରଙ୍କୁ ଏତେ ଅଳ୍ପ ବୟସରେ କାହିଁକି ମୃତ୍ୟୁ ଦେଲ ବୋଲି ପଚାରିଲେ । ଯମ-ଦେବ ହାତ ଯୋଡ଼ି କହିଲେ, "ପ୍ରଭୁ ସଂସାରରେ ମନୁଷ୍ୟମାନେ ଶୃଙ୍ଗାରର ବିଧି ନିୟମ ପାଳନ କରୁ ନାହାଁନ୍ତି । ତେଣୁ ଅଳ୍ପାୟୁ ସନ୍ତାନ

ଜନ୍ମ ହେଉଛନ୍ତି । ଧ୍ୱବସରେ, ନିଷିଦ୍ଧ ତିଥିମାନଙ୍କରେ ଏବଂ ଅସ୍ପୃଶ୍ୟ ନାରୀ ସଙ୍ଗରେ ଶୃଙ୍ଗାର ଆଦୌ କରିବାର ନୁହେଁ । କେବଳ ଋତ୍ତିର ନିର୍ଦ୍ଦିଷ୍ଟ ଚ୍ରହରରେ ନାରୀ ପୁରୁଷ ମିଳିତ ହେବା ଉଚିତ୍ ।

ମାତ୍ର ମନୁଷ୍ୟମାନେ ଏହି ସବୁ ନିୟମ ପାଳନ କରୁ ନାହାନ୍ତି । ଏଥିକୁ ମୋର ଅପରାଧ କଣ ? ଆପଣଙ୍କର ଗୁରୁ ଭାଇମାନେ କ ଶୀଶ୍ୱର ତୀର୍ଥରେ ରହି ଚୌର୍ଯ୍ୟ କର୍ମ କରି ବଞ୍ଚୁଛନ୍ତି । ଏ ଜନ୍ମ ଶେଷରେ ପୁଣି ଏଠାକୁ ଫେରିଥାନ୍ତେ । ଏବେ ସେମାନଙ୍କୁ ଆଣିବାକୁ ମୁଁ ମୋର ଦୁଇ ଜଣ ସେନାପତିଙ୍କୁ ପଠାଉଛି । ଏବେ ଏଠାରେ ସତ୍ୟଯୁଗର ସମ୍ପଦ, ଜଳତରଙ୍ଗ ଓ କୌଶିକ ନାମକ ତିନିଜଣ ଅତି ପୁଣ୍ୟବନ୍ତ ରାଜା, ପରି- ସ୍ଥିତିରେ ପଡ଼ି ଯଥାକ୍ରମେ ବ୍ରହ୍ମହତ୍ୟା, ଗୋହତ୍ୟା ଓ ସ୍ତ୍ରୀ ହତ୍ୟାକରି ବହୁ କାଳ ହେଲା ଅତ୍ୟନ୍ତ ଦାରୁଣ ନର୍କ ଭୋଗ କରୁଛନ୍ତି । ଏମାନଙ୍କୁ ଆପଣ ଦର୍ଶନ ଦେଇ ଉଦ୍ଧାର କରନ୍ତୁ । ଶ୍ରୀକୃଷ୍ଣଙ୍କର ଦର୍ଶନରେ ସେମାନଙ୍କର ମୁକ୍ତି ହୋଇଗଲା । ସେମାନେ ଶ୍ରୀକୃଷ୍ଣଙ୍କର ଚରଣ ବନ୍ଦନା କରି ଦିବ୍ୟ ବିମାନରେ ବସି ବୈକୁଣ୍ଠପୁରକୁ ଗଲେ । ଏହାପରେ ଶ୍ରୀକୃଷ୍ଣ ଦେଖିଲେ ଯେ, ମହାରାଜ ପାଣ୍ଡୁ ନର୍କ ଭୋଗ କରୁଛନ୍ତି । ସେ ଯମଦେବଙ୍କୁ କହିଲେ, "ମହାରାଜ ପାଣ୍ଡୁ ମୋର ଧର୍ମ ପିତା । ସେ ଜଣେ ଆଦର୍ଶ ରାଜା, ପୁଣି ବଡ଼ ଭାଇଙ୍କପାଇଁ ସର୍ବସ୍ୱ ତ୍ୟାଗ କରିଥିଲେ । ତାଙ୍କର କାହିଁକି ଏ ଦଣ୍ଡ ହେଲା । ଶୀଘ୍ର ତାଙ୍କୁ ଏ ଦଣ୍ଡରୁ ମୁକ୍ତ ଦିଅ ।" ଯମଦେବ କହିଲେ, "ଆପଣଙ୍କ ଆଦେଶ ମାନି ମୁଁ ଏବେ ତାଙ୍କୁ ଦଣ୍ଡରୁ ମୁକ୍ତ ଦେଉଛି । ମାତ୍ର ତାଙ୍କର ଦଣ୍ଡ ଅଳ୍ପକାଳ ହେଲା ଆରମ୍ଭ ହୋଇଥିବାରୁ ଆପଣଙ୍କ ଦର୍ଶନରେ ସେ ସମ୍ପୂର୍ଣ୍ଣ ମୁକ୍ତ ହୋଇ ପାରୁ ନାହାନ୍ତି । ଅଗ୍ନିକା ଋଷିଙ୍କୁ ବଧ କରିବା ଦ୍ୱାରା ବ୍ରହ୍ମହତ୍ୟା ଜନିତ ମହାପାତକ ତାଙ୍କୁ ଲାଗିଛି ।

ଏହି ମହାପାତକରୁ ସେ କିପରି ମୁକ୍ତ ହେବେ ବୋଲି ଶ୍ରୀକୃଷ୍ଣ ପଚାରିବାରୁ ଯମଦେବ କହିଲେ, "ମନୁଷ୍ୟର କେବଳ ଜ୍ୟେଷ୍ଠପୁତ୍ର ହିଁ ଧର୍ମଜ ସନ୍ତାନ । ତାହାର ଧର୍ମାନୁଷ୍ଠାନର ଫଳ ପିତୃଲୋକ ପ୍ରାପ୍ତ ହୁଅନ୍ତି । ସୁତରାଂ ଯଦି ପାଣ୍ଡୁଙ୍କର ଜ୍ୟେଷ୍ଠ ସନ୍ତାନ ଯୁଧିଷ୍ଠିର ଧାରତୀର୍ଥ କରନ୍ତି ବା

ବ୍ରହ୍ମଜ୍ଞାନ ସାଧନା କରନ୍ତୁ କମ୍ବା ଧର୍ମଯଜ୍ଞ କରନ୍ତୁ ତେବେ ପଣ୍ଡୁଙ୍କର ପାପ ମୋଚନ ହେବ । ଆପଣ ଯାଇ ତାଙ୍କୁ କହନ୍ତୁ, ଏ ତିନଗୋଟି ପନ୍ଥାରୁ ନିଜ ସୁବିଧା ମତେ କୌଣସି ଗୋଟିଏ ପନ୍ଥା ଗ୍ରହଣ କଲେ ତାଙ୍କର ପିତା ନର୍କ ଭୋଗରୁ ସମ୍ପୂର୍ଣ୍ଣ ଉଦ୍ଧାର ପାଇବେ ।

ତେଣେ ଜଗଦ ଓ ଯମନକ ନାମକ ଯମ ଦେବତାଙ୍କର ଦୁଇ ସେନାପତି ଶାନ୍ତିପନଙ୍କ ପାଞ୍ଚ ପୁଅଙ୍କୁ ଆଣିବା ପାଇଁ ବ୍ୟାଘ୍ର ବାହନରେ ଯାଇ କାଶୀଶ୍ୱର ତୀର୍ଥରେ ପହଞ୍ଚିଲେ । ସେଠାରେ ସେମାନେ ମାୟା ସାଧବ ରୂପ ଧରି ଅନେକ ଚନ୍ଦ୍ରମାଳା ବେକରେ ପକାଇ ବାଟରେ ଚାଲିବାରୁ ପାଞ୍ଚ ଭାଇ ଯାକ ଆସି ତାଙ୍କୁ ଘେରିଲେ । ମାତ୍ର ଯମଦୂତଙ୍କୁ ସେମାନେ ପାରିବା କି ସମ୍ଭବ ? ସଙ୍ଗେ ସଙ୍ଗେ ଯମଦେବଙ୍କର ଦୁଇ ସେନାପତି ସେମାନଙ୍କୁ କାବୁ କରି ଧରି ନେଇଗଲେ । ଯମ ଦେବତା ସେମାନଙ୍କୁ ସଂସ୍କାର କରି ଦେଇ ଶ୍ରୀକୃଷ୍ଣଙ୍କ ହାତରେ ଅର୍ପଣ କଲେ । ଶ୍ରୀକୃଷ୍ଣ ଆନନ୍ଦରେ ଗୁରୁପୁତ୍ରମାନଙ୍କୁ ସଙ୍ଗରେ ଧରି ଶାନ୍ତିପନ ମୁନିଙ୍କ ଆଶ୍ରମକୁ ଫେରି ଆସିଲେ । ପିତା ମାତା ନିଜର ମୃତ ପୁତ୍ରମାନଙ୍କୁ ଫେରି ପାଇ ଆନନ୍ଦ ସାଗରରେ ବୁଡିଗଲେ ଏବଂ ଶ୍ରୀକୃଷ୍ଣଙ୍କୁ ବହୁତ ଆଶୀର୍ବାଦକରି ଅନ୍ତରର ଗଭୀର କୃତଜ୍ଞତା ଜଣାଇଲେ । ଶ୍ରୀକୃଷ୍ଣ, ଗୁରୁଦେବ ଓ ଗୁରୁପତ୍ନୀଙ୍କଠାରୁ ବିଦାୟ ନେଇ ଗଲାପରେ ଶାନ୍ତିପନଙ୍କର ଜ୍ଞାନ ଉଦୟ ହେଲା । ସେ ସ୍ତ୍ରୀଙ୍କୁ କହିଲେ, "ଏ ତ ସ୍ୱୟଂ ପୁରୁଷୋତ୍ତମ, ପରଂବ୍ରହ୍ମ" । ତାଙ୍କୁ 'ଚରମଗତି' ମାଗିଥିଲେ ତ ସେ ଦେଇଥାନ୍ତେ । ମାୟାରେ ଅନ୍ଧ ହୋଇ ଆମେ ତାଙ୍କୁ ଚିହ୍ନି ପାରିଲେ ନାହିଁ ।

## କଲ୍ପାସୁର ବଧ

ଥରେ ଶ୍ରୀକୃଷ୍ଣ ଗରୁଡ ପିଠିରେ ବସି ଏକା ବୁଲିବାକୁ ବାହାରିଲେ । ବାଟରେ ମହାଦେବଙ୍କ ସହିତ ତାଙ୍କର ଭେଟ ହେଲା । ହରିହର ଉଭୟେ ଯାଇ ମହେନ୍ଦ୍ର ପର୍ବତ ଉପରେ ବସି କଥାବାର୍ତ୍ତା ହେଉଥିଲେ । ଅଦ୍ଭୁତ ଭାବେ କଲ୍ପାସୁର ନାମକ ଏକ ରାକ୍ଷସ ବୁଲୁ ବୁଲୁ ସେଠାରେ ଯାଇ ପହଞ୍ଚିଲା ।

ହରିହରଙ୍କୁ ଦେଖି ରାକ୍ଷସ ମହା ଖୁସି ହୋଇ କହିଲା, "ତମେ କାଏ ରେ ଦୁଇଜଣ ଏଠି ବସିଛ ? ଯାହା ହେଉ ମୋର ବଡ଼ ଭାଗ୍ୟ । ମୁଁ ବହୁତ ଭୋକିଲା ହୋଇଛି । ତମ ଦୁହିଁଙ୍କୁ ଖାଇ ଦେଲେ ମୋ ପେଟ ପୂରିଯିବ" । ଏହା କହୁ କହୁ ଏକାଥରକେ ଦୁହିଁଙ୍କୁ ମାରି ଦେବା ପାଇଁ ଗଦା ପ୍ରହାର କଲା । ହରିହର ଉଭୟେ ଚଟ୍ କରି ଘୁଞ୍ଚି ଯିବାରୁ ସେ ଗଦା ପ୍ରହାରରେ ସାତ ତାଳ ପର୍ଯ୍ୟନ୍ତ ପର୍ବତ ଧସିଗଲା ।

ସଙ୍ଗେ ସଙ୍ଗେ ହରିହର ନିଜ ନିଜ ବାହନରେ ବସି ଧନୁଶର ଧରି ଅସୁର ସହିତ ଯୁଦ୍ଧ ଆରମ୍ଭ କରିଦେଲେ । ମାତ୍ର ଆଶ୍ଚର୍ଯ୍ୟ କଥା ଯିଏ ତ୍ରିଲୋକ ପାଳକ, ଆଉ ଯିଏ ତ୍ରିଲୋକ ସଂହାରକ, ସେ ଦୁହେଁ ପ୍ରାଣ ପଣେ ଯୁଦ୍ଧ କରି ମଧ୍ୟ ଅସୁରକୁ ହଟାଇ ପାରିଲେ ନାହିଁ । ବିଷ୍ଣୁଙ୍କର ସୁଦର୍ଶନ ଚକ୍ର, ଶିବଙ୍କର ତ୍ରିଶୂଳ ଅସୁରର ଶରୀରକୁ ଭେଦ କରି ପାରିଲା ନାହିଁ ।

ଦୈବାତ୍ ବ୍ରହ୍ମା ଅନ୍ତରୀକ୍ଷରେ ଥାଇ ଏ ଯୁଦ୍ଧ ଦେଖି ପାରିଲେ । ସେ ସଙ୍ଗେ ସଙ୍ଗେ ତେତିଶ କୋଟି ଦେବତାଙ୍କୁ ପଠାଇ ଦେଲେ । ଦେବତା-ମାନେ ନିଜ ନିଜର ଆୟୁଧ ଧରି ଅସୁର ସହିତ ଘୋର ଯୁଦ୍ଧ କଲେ । ମାତ୍ର କେହି ହେଲେ ଅସୁରକୁ ପାରିଲେ ନାହିଁ । ଦେବ ଅସ୍ତ୍ରମାନ ଅସୁର ଶରୀରରେ ବାଜି ଉପୁଡ଼ି ପଡ଼ିଲା ବେଳେ ଅସୁର ହିହି ହିହି ହୋଇ ହସି ଉଠୁଥାଏ । ଏହା ଦେଖି ସବୁ ଦେବତାମାନେ ଭୟ ପାଇଗଲେ । ଏହିକବେଳେ ଆକାଶ ମାର୍ଗରେ ନାରଦ ଯାଉଥିଲେ । ସେ ଯାଇ ଏ ଏ ଘଟଣା ଶିବପୁରରେ ପ୍ରଚାର କରିଦେଲେ । ସଙ୍ଗେ ସଙ୍ଗେ କାର୍ତ୍ତିକ, ଗଣେଶ, ନନ୍ଦୀ, ଭୃଙ୍ଗୀ, ମହାକାଳ ଆଦି ବୀରମାନେ ଅସଂଖ୍ୟ ଶିବଗଣଙ୍କୁ ସଙ୍ଗରେ ନେଇ ଆସି ଅସୁର ସହିତ ପ୍ରାଣ ମୂର୍ଚ୍ଛା ଲଢ଼େଇ କଲେ । ତଥାପି ଅସୁର କ୍ଷୟ ଗଲା ନାହିଁ ।

ହରିହର ଅତ୍ୟନ୍ତ ଆଶ୍ଚର୍ଯ୍ୟ ହୋଇ ବ୍ରହ୍ମାଙ୍କୁ ଅସୁର ନ ମରିବାର କାରଣ ପଚାରିଲେ । ବ୍ରହ୍ମା କହିଲେ ଯେ ଅସୁର ସହସ୍ରେ ବର୍ଷ ସୂର୍ଯ୍ୟଙ୍କୁ ତପସ୍ୟା କରି ଅକ୍ଷୟ ବର ଲାଭ କରିଛି । ତେଣୁ ସେ ଅବଧ୍ୟ । ଏଥିକୁ

ବୃଷ୍ଟି ଯାହା ବର୍ଷଣ କରନ୍ତୁ । ଏହା ଶୁଣି ହରିହରଙ୍କ ଆଦେଶରେ ଦେବତା ଓ ଶିବଗଣମାନେ କ୍ରମେ ଅପସରି ଗଲେ । କୃଷ୍ଣ କରି ଅସୁରକୁ ମନ୍ଦାଇବା ବୋଲି ବଗ୍ଗର କରି ହରିହର ଦୁହେଁ ଦଉଡ଼ି ପଳାଇବାକୁ ଲାଗିଲେ । ଅସୁର ତାଙ୍କ ପଛରେ ଗୋଡ଼ାଇଲା । ହରିହର ଦୁହେଁ ଦୌଡ଼ି ଦୌଡ଼ି ଯାଇ ସୂର୍ଯ୍ୟଙ୍କ ପୁତ୍ର ମହାବୀର କର୍ଣ୍ଣ, ମୃଗୟା କରୁଥିବା ବଣରେ ଯାଇ ପହଞ୍ଚିଲେ । ହରି ହର ସଙ୍ଗେ ସଙ୍ଗେ ବ୍ରାହ୍ମଣବେଶ ଧରି ଅନ୍ତର୍ଦ୍ଧାନ ହୋଇଗଲେ । ଅସୁର ତାଙ୍କୁ ଯେତେ ଖୋଜିଲା ଆଉ ପାଇଲା ନାହିଁ । ମହା ରାଗରେ ମନକୁ ମନ କହିଲା, 'ରହ, ଯିବ କୁଆଡ଼େ ? ଚଉଦ ଭୁବନ ଯାକ ବୁଲି ବୁଲି ଖୋଜିବି । ତମ ଦୁହିଁଙ୍କୁ ମାରି ନ ଖାଇଲେ ମୋ ମନ ଶାନ୍ତ ହେବ ନାହିଁ' ।

ଅସୁର ସେହି ବଣରେ କଦାଚବେଶୀ କର୍ଣ୍ଣଙ୍କୁ ଦେଖି ପଚାରିଲା, "ହେ କଦାଚ, ଦୁଇଜଣ ଋଷି ପଳାଇ ଯାଉଥିବା ଦେଖିଲୁ କି ?" କର୍ଣ୍ଣ କହିଲେ, କାହିଁ ଦେଖିଲିତ ନାହିଁ । ତେବେ ପଳାଇ ଯାଉଥିବା ଶତ୍ରୁକୁ ତୁ ଗୋଡାଉଛୁ କାହିଁକି ? ଏହାତ ବୀରର ଧର୍ମ ନୁହେଁ । ତେବେ ତୁ'ଟା ଅସୁର । ତୋ ଠାରୁ ଆଉ କଣ ଆଶା କରି ଯାଇପାରେ ?

ଅସୁର ଏହା ଶୁଣି ଖୁବ୍ ରାଗି ଗଲା ଓ କହିଲା, "କରେ କଦାଚ, ତୁ ତ ଭାରି ବଢ଼ି ବଢ଼ି କଥା କହୁଛୁ । ଆଗୁ, ଆଗ ତତେ ମାରି ଖାଇସାରି ତା ପରେ ସେ ଦୁଇ ଜଣଙ୍କୁ ଖୋଜିବାକୁ ଯିବି ।" ଏହା କହି କର୍ଣ୍ଣଙ୍କ ଉପରକୁ ବାଘ ପରି ଝାମ୍ପି ଲା ବେଳକୁ କର୍ଣ୍ଣ ସଙ୍ଗେ ସଙ୍ଗେ ଗୋଟିଏ ଶର ମାରିଲେ । ସେହି ଶରରୁ ସହସ୍ର ଶର ବାହାରି ଅସୁରର ପଥ ରୁଦ୍ଧ କରି ଦେଲା । ଅସୁର ବଡ଼ ଆଶ୍ଚର୍ଯ୍ୟ ହେଲା ଓ କର୍ଣ୍ଣଙ୍କୁ ମନେ ମନେ ବହୁତ ପ୍ରଶଂସା କଲା । ତା ପରେ ଏକ କୋଦାଳ ବୁଲାଇ କର୍ଣ୍ଣଙ୍କ ଉପରେ ପିଟିଲା । କର୍ଣ୍ଣ ତାଙ୍କୁ ଶର ମାରି ଛେଦି ପକାଇଲେ । ଏହାପରେ ଅସୁର ମାୟାରେ କୋଦାଳ, ଶୂଳ, ଖଡ୍ଗ, ଗଦା ମୁଦ୍ଗର ଆଦି ନାନା ଅସ୍ତ୍ର ଧରି କର୍ଣ୍ଣଙ୍କ ଉପରେ ପିଟିଲା ବେଳକୁ କର୍ଣ୍ଣ ଶର ମାରି ସବୁ କାଟି ପକାଉ ଥାନ୍ତି । କର୍ଣ୍ଣ ମଧ୍ୟ ଦ୍ରୋଣ, ପର୍ଶୁରାମଙ୍କଠାରୁ ପାଇଥିବା ସମସ୍ତ ଅସ୍ତ୍ର ଅସୁର ଉପରକୁ ପ୍ରୟୋଗ କରିଗଲେ । ମାତ୍ର ସବୁ ନିଷ୍ଫଳ ହେଲା । ଶେଷରେ

କର୍ଣ୍ଣ କ୍ଳାନ୍ତ ହୋଇ ପଡ଼ିଲେ । ଅସୁର ଠିଆ ଠିଆ ହୋଇ ହସି କର୍ଣ୍ଣଙ୍କ ଉପରକୁ ଏକ ଶୂଳ ମାରିଲା । ଶୂଳକୁ ପ୍ରତିଶର କରି ନ ପାରି କର୍ଣ୍ଣ ତାହାରି ଆଘାତରେ ଚେତା ହରାଇ ପଡ଼ିଗଲେ । ଅସୁର ମହା ଆନନ୍ଦରେ ଧାଇଁ ଯାଇ କର୍ଣ୍ଣଙ୍କଠାରୁ ଧନୁଶର ଛଡ଼ାଇ ନେଲା ଓ ମନକୁ ମନ ତାଙ୍କୁ ବହୁତ ପ୍ରଶଂସା କରି କହିଲା, "ଧନ୍ୟରେ କସ୍ରତ । ଧନ୍ୟ ତୋର ପିତା ମାତା । ମୋ ପରି ଯୋଦ୍ଧା ସାଙ୍ଗରେ ତୁ ଏତେ ସମୟ ଧରି ଯୁଦ୍ଧ କରି ପାରିଲୁ ।"

ଅସୁର ଗାଧୋଇସାରି ଆସି କର୍ଣ୍ଣଙ୍କୁ ଖାଇବ ବୋଲି ବଗୁରି ନିକଟସ୍ଥ ନଦୀକୁ ଗାଧୋଇବାକୁ ଗଲା । ଆକାଶରୁ ଥାଇ ସୂର୍ଯ୍ୟଦେବ ଏହା ଦେଖିଲେ । ତାଙ୍କର ବରରେ ଅସୁର ବଳୀୟାନ୍ ହୋଇ ଶେଷରେ ତାଙ୍କର ପୁଅକୁ ମାରି ଖାଇବାକୁ ଯାଉଥିବାର ଦେଖି ସେ ଖୁବ୍ ରାଗି ଗଲେ । ସଙ୍ଗେ ସଙ୍ଗେ ସେ ଦେବୀ ସରସ୍ୱତୀଙ୍କୁ ସ୍ମରଣ କଲେ । ସରସ୍ୱତୀ ଆସି ପହଞ୍ଚିବାରୁ ସୂର୍ଯ୍ୟଦେବ ତାଙ୍କୁ କହିଲେ, 'ଦେବୀ, ପାଷାଣ୍ଡ, କଳ୍ମାସୁର ମୋଠାରୁ ବରଲାଭ କରି ଅଜେୟ ହୋଇଛି । ଏବେ ମୋର ପୁତ୍ର କର୍ଣ୍ଣଙ୍କୁ ହତ୍ୟାକରି ତାକୁ ଖାଇବାକୁ ଯାଉଛି । ତୁମେ ଶୀଘ୍ର ଯାଇ ଅସୁର କଣ୍ଠରେ ବସିକରି କର୍ଣ୍ଣଯେପରି ରକ୍ଷାପାଇବ ତାର ଉପାୟ କର । ରାତି ପାହି ସକାଳ ହୋଇଗଲେ ମୋର କରଣ କର୍ଣ୍ଣ ପିନ୍ଧିଥିବା ଅମୃତ-କୁଣ୍ଡଳରେ ପଡ଼ି ତହିଁରୁ ଅମୃତ ଝରିଲେ ସେ ଚେତାପାଇ ଉଠିବ । ସେ ପର୍ଯ୍ୟନ୍ତ ଯେପରି ତାର ଶରୀର ଅକ୍ଷତ ଅବସ୍ଥାରେ ରହେ । କର୍ଣ୍ଣ ଚେତାପାଇ ଉଠିଲେ ତାର କଣ୍ଠରେ ବସିକରି ତାକୁ କହିବ ଯେ ମୁଁ ଅସୁରକୁ ବର ଦେଲାବେଳେ ଅକ୍ଷୟ ବିଭୂତି ତାର ଶରୀରେ ଲେପନ କରିଛି । ତାର ଗୁହ୍ୟରେ ମଝି ଓ ନାଭି ଗର୍ଭ ମଧ୍ୟରେ ବିଭୂତି କେବେ ଲାଗି ନ ଥିବ । ତେଣୁ କର୍ଣ୍ଣ ତା ସହିତ ପୁନର୍ବାର ଯୁଦ୍ଧକରି ଯଦି ତାର ଗୁହ୍ୟ ମଝିକୁ ଶୁକ୍ଳବାଣ ଓ ନାଭିଗର୍ଭକୁ କୃଷ୍ଣବାଣ ମାରିବ ତେବେ ଅସୁର ନିଶ୍ଚୟ ମରିବ ।"

ସରସ୍ୱତୀ, ସୂର୍ଯ୍ୟଙ୍କଠାରୁ ଅସୁରର ମୃତ୍ୟୁଭେଦ ପାଇ ଶୀଘ୍ରଯାଇ ଅସୁର କଣ୍ଠରେ ବସିକଲେ । ତାଙ୍କର ପ୍ରଭାବରେ ଅସୁର କର୍ଣ୍ଣଙ୍କୁ

ଖାଇବା କଥା ଭୁଲିଗଲା ଓ ଘରେ ଥିବା ତାର ନବଜାତ ପୁତ୍ରର କଥା ମନେ ପଡ଼ିଲା । ତେଣୁ ଅସୁର ଗାଧୋଇସାରି ଘରକୁ ଧାଇଁଲା ଏଣେ ରାତିପାହି ସୂର୍ଯ୍ୟୋଦୟ ହେବାରୁ କର୍ଣ୍ଣଙ୍କର କୁଣ୍ଡଳରୁ ଅମୃତ ଝରିଲା ଓ ସେହି ଅମୃତ ପାଟିରେ ବାଜିବାରୁ କର୍ଣ୍ଣ ଚେତାପାଇ ଉଠିଲେ । ସରସ୍ୱତୀ ତାଙ୍କ କଣ୍ଠରେ ରହିଥିବା ଅସୁରର ମୃତ୍ୟୁଭେଦ ତାଙ୍କୁ କହିଦେଇ ଅନ୍ତର୍ଦ୍ଧାନ ହୋଇଗଲେ । କ୍ରମେ କର୍ଣ୍ଣଙ୍କର ପୂର୍ବ ଘଟଣା ସବୁ ମନେ ପଡ଼ିଲା ।

ଏତିକିବେଳେ ହରିହର ବ୍ରାହ୍ମଣ ବେଶରେ ପହଞ୍ଚି ଅସୁରକୁ ମାରିବାପାଇଁ କର୍ଣ୍ଣଙ୍କ ମନକୁ ଉଚ୍ଚାଟ କଲେ । ମାତ୍ର ଅସୁର ତାଙ୍କୁ ଅସ୍ତ୍ରହୀନ କରିଯାଇଛି ବୋଲି କହିବାରୁ ଶ୍ରୀକୃଷ୍ଣ ଶାରଙ୍ଗ ଧନୁକୁ ସ୍ମରଣକରି ଆଣି କର୍ଣ୍ଣଙ୍କ ହାତରେ ସମର୍ପଣ କଲେ । ତା ପରେ ହରିହର ନିଜ-ନିଜର ଆଙ୍ଗୁଠିରୁ କିଛି ଅଂଶ କାଟି ତହିଁରେ ଗୋଟିଏ କୃଷ୍ଣବାଣ ଓ ଗୋଟିଏ ଶୁକ୍ଳବାଣ କରି କର୍ଣ୍ଣଙ୍କୁ ପ୍ରଦାନକଲେ ।

ସରସ୍ୱତୀ, ଅସୁର କଣ୍ଠରୁ ଅନ୍ତର୍ଦ୍ଧାନ ହୋଇଯିବାର କିଛି ସମୟପରେ କର୍ଣ୍ଣଙ୍କ ଶବକୁ ଖାଇବାକଥା ତାର ମନେ ପଡ଼ିଲା । ସେ ସଙ୍ଗେ ସଙ୍ଗେ କର୍ଣ୍ଣ ମରି ପଡ଼ିଥିବା ସ୍ଥାନକୁ ଛୁଟି ଆସିଲା ଓ ଦେଖିଲା କର୍ଣ୍ଣ ବଞ୍ଚିଉଠି ପୁଣି ଧନୁଶର ଧରି ଯୁଦ୍ଧକୁ ତିଆରିହୋଇ ରହିଛନ୍ତି । ଅସୁର ବଡ଼ ଆଶ୍ଚର୍ଯ୍ୟ ହୋଇ ପୁଣି ଯୁଦ୍ଧ ଆରମ୍ଭ କଲା । କର୍ଣ୍ଣ ଆଉ କାଳ ବିଳମ୍ବ ନ କରି ଅସୁରର ତୁଣ୍ଡ ମଝିକୁ ଶୁକ୍ଳବାଣ ଓ ନାଭିଗର୍ତ୍ତକୁ କୃଷ୍ଣବାଣ ପ୍ରୟୋଗ କଲେ । ଅସୁର ମହାଘୋର ରଡ଼ିକରି ମରିଗଲା । ଦେବତାମାନେ କର୍ଣ୍ଣଙ୍କ ଉପରେ ପୁଷ୍ପବୃଷ୍ଟି କଲେ । ହରିହର ନିଜ ରୂପ ଧରି କର୍ଣ୍ଣଙ୍କ ଆଗରେ ଉଭାହୋଇ ତାଙ୍କୁ ବହୁତ ପ୍ରଶଂସା କଲେ ଓ ବରମାଗିବାକୁ କହିଲେ । କର୍ଣ୍ଣ ସ୍ୱୟଂ ହରିହରଙ୍କୁ ସମ୍ମୁଖରେ ଦେଖି ବଡ଼ ଆଶ୍ଚର୍ଯ୍ୟ ହେବା ସଙ୍ଗେ ସଙ୍ଗେ ବହୁତ ଆନନ୍ଦିତ ହେଲେ ଓ ବର ପ୍ରାର୍ଥନା କରି କହିଲେ, "ହେ ପ୍ରଭୁ, ଯଦି ମୋ ପ୍ରତି ଆପଣଙ୍କର ଅନୁଗ୍ରହ ହେଲା ତେବେ ଏହି ବାଣ ଦୁଇଟି ମତେ ପ୍ରଦାନ କରନ୍ତୁ ।" ହରିହର କହିଲେ, "ହେ ବୀର କର୍ଣ୍ଣ, ତୁମର ଭକ୍ତି ଓ ବୀରତ୍ୱରେ ସନ୍ତୁଷ୍ଟ ହୋଇ ଆମେ ତୁମକୁ ଏ

ଦୁଇବାଣ ପ୍ରଦାନ କରୁଛୁ । ଏହାର ନାମ ହେଲା, ମାନବାଣ ଓ ଭୂଜବାଣ । କେବଳ ଯେତେବେଳେ ତୁମର ପ୍ରାଣକୁ ବିପତ୍ତି ପଡ଼ିବ, ସେତେବେଳେ ଏ ବାଣ ପ୍ରୟୋଗ କରିବ । ହରିହର ବ୍ରହ୍ମାହେଲେ ମଧ୍ୟ ଏ ବାଣରେ ତାଙ୍କର ମୃତ୍ୟୁ ସୁନିଶ୍ଚିତ । ଏହା କଦାପି ଅନ୍ୟଥା ହେବନାହିଁ । ତେବେ ତୁମେ ତ ମହାଦାନୀ । ଭବିଷ୍ୟତରେ ଯେପରି କେହି ତୁମଠାରୁ ଏହା ଦାନ ରୂପେ ମାଗି ନ ନିଏ । ତେଣୁ ଏହାକୁ ଅତ୍ୟନ୍ତ ଗୋପନରେ ରଖ । କର୍ଣ୍ଣ ସଙ୍ଗେ ସଙ୍ଗେ ନିଜର ଜଙ୍ଘ ଚିରି ତା ଭିତରେ ସେହି ବାଣ ଦୁଇଟିକୁ ଯତ୍ନ ସହିତ ରଖିଲେ । ଏ କଥା ଜାଣିଲେ, ମାତ୍ର ପାଞ୍ଚଜଣ । ସେମାନେ ହେଉଛନ୍ତି, ହରି, ହର, କର୍ଣ୍ଣ, ମହାତ୍ମା ବେଦବ୍ୟାସ ଓ ସର୍ବଜ୍ଞ ସହଦେବ । ଏହାପରେ ହରି ହର ନିଜ ନିଜ ବାହନ ଚଢ଼ି ସ୍ୱସ୍ଥାନକୁ ଗଲେ । କର୍ଣ୍ଣ ମଧ୍ୟ ନିଜ ପୁରକୁ ଫେରି ଆସିଲେ ।





ମ

ହା

ଭା

ର

ତ

ଶାନ୍ତିପର୍ବ

୧୭୫ ଅଧ୍ୟାୟ

# ଧର୍ମଯଜ୍ଞ ଓ ନକୁଳଙ୍କର କୁନ୍ତମୂଳରେ ପୃଥିବୀ ଧାରଣ ।

ଥରେ ମହର୍ଷି ନାରଦ ଯୁଧିଷ୍ଠିରଙ୍କୁ ଭେଟି ମନେ ପକାଇ କହିଲେ ଯେ ତାଙ୍କର ପିତା ପଣ୍ଡୁ ମହାରାଜା ଅଦ୍ୟାବଧି ସ୍ୱର୍ଗଲାଭ କରି ପାରି-ନାହାନ୍ତି । ଅର୍ଜୁନ ମଧ୍ୟ ଖାଣ୍ଡବ ବନ ଦହନ କାଳରେ ଅଗ୍ନିଦେବତାଙ୍କୁ ଘୃତ ଭୋଜନ ଦାନପାଇଁ କଥା ଦେଇଥିଲେ । ତେଣୁ ଯୁଧିଷ୍ଠିର ଯଦି ଗୋଟିଏ ଧର୍ମଯଜ୍ଞ କରିବେ ତେବେ ପଣ୍ଡୁ ମହାରାଜା ନରକ ଭୋଗରୁ ମୁକ୍ତ ହୋଇ ସ୍ୱର୍ଗପ୍ରାପ୍ତ ହେବେ । ଆଉମଧ୍ୟ ଅର୍ଜୁନଙ୍କର ପ୍ରତିଶ୍ରୁତ ମୁତା-ବକ ଅଗ୍ନିଦେବତାଙ୍କୁ ବିପୁଳ ଘୃତଭୋଜନ ମିଳିଯିବ ।

ଯୁଧିଷ୍ଠିର କହିଲେ ଯେ ରାଜା ଦୁର୍ଯ୍ୟୋଧନ ତ ସେମାନଙ୍କୁ ଅନ୍ନବସ୍ତ୍ର ଦେଇ ପୋଷୁଛନ୍ତି । ଧର୍ମଯଜ୍ଞ କରିବାକୁ ତାଙ୍କର ସମ୍ବଳକାହିଁ ? ମାତ୍ର ନାରଦ କହିଲେ ଯେ ଭଗବାନ ଶ୍ରୀକୃଷ୍ଣ ଯାହାଙ୍କର ସହାୟ ତାଙ୍କୁ ସଂସାରରେ କିଛି ଅଲଭ୍ୟ ନାହିଁ । ତେଣୁ ମନରେ କୌଣସି ଦ୍ୱିଧା ନ କରି ସେ ଯଜ୍ଞପାଇଁ ଆୟୋଜନ କରନ୍ତୁ । ଏହା କହି ନାରଦ ଚାଲି ଗଲେ ।

ଯୁଧିଷ୍ଠିର ସଙ୍ଗେ ସଙ୍ଗେ ଅର୍ଜୁନଙ୍କୁ ଦ୍ୱାରକାକୁ ପଠାଇଲେ । ଅର୍ଜୁନ ଯାଇ ଶ୍ରୀକୃଷ୍ଣଙ୍କୁ ଯୁଧିଷ୍ଠିରଙ୍କର ମନକଥା କହିଲେ । ଶ୍ରୀକୃଷ୍ଣ ସବୁଶୁଣି ଆନନ୍ଦିତ ହେଲେ ଓ ଯଜ୍ଞର ସମସ୍ତ ଆୟୋଜନ କରିବାକୁ ଅର୍ଜୁନଙ୍କ ସହିତ ଗରୁଡ଼ ପୃଷ୍ଠରେ ଆରୋହଣ କରି ବାରୁଣାବନ୍ତରେ ଚହିଅଁଲେ । ଏ ଯଜ୍ଞାନୁଷ୍ଠାନରେ କିଛି ବିଘ୍ନ ଘଟିବ କି ବୋଲି ସହଦେବଙ୍କୁ ପଚାରିବାରୁ ସହଦେବ କରତଳକୁ ଚାହିଁ କହିଲେ ଯେ ଏ ଯଜ୍ଞ ନିର୍ବିଘ୍ନରେ ସମାପନ ହେବ । ଏହା ଶୁଣି ଶ୍ରୀକୃଷ୍ଣ ଯଜ୍ଞର ଯୋଗାଡରେ ଲାଗିଗଲେ । ବିଶ୍ୱକର୍ମାଙ୍କୁ ସ୍ମରଣ କରିବାରୁ ସେ ଆସି ପହଞ୍ଚିଲେ । ଶ୍ରୀକୃଷ୍ଣ ତାଙ୍କୁ ଆଜ୍ଞା ଦେଲେ ଯେ ବାରୁଣାବନ୍ତର ପୂର୍ବପାଖେ ସୁରଗଙ୍ଗା ନଦୀ ତୀରରେ ସାତ ଦିନ ମଧ୍ୟରେ ସେ ଯଜ୍ଞଶାଳା ନିର୍ମାଣ କରନ୍ତୁ । ବିଶ୍ୱକର୍ମା ଅତି ବିନମ୍ରସ୍ୱର ସହିତ କହିଲେ, "ପ୍ରଭୁଙ୍କର ଆଦେଶ ହେଲେ ମୁଁ ଏକା ରାତିକେ ଯଜ୍ଞଶାଳା ନିର୍ମାଣ କରିଦେବି । ସାତଦିନ ସମୟ ଆବଶ୍ୟକ ନାହିଁ ।" ଏହା ଶୁଣି ଶ୍ରୀକୃଷ୍ଣ ବିଶ୍ୱକର୍ମାଙ୍କୁ ବହୁତ ପ୍ରଶଂସା କରି କୁବେରପୁରୀକୁ ଚାଲିଲେ । ଶ୍ରୀକୃଷ୍ଣଙ୍କ ଅନୁରୋଧରେ ଧନପତି କୁବେର ଯଜ୍ଞର ସମସ୍ତ ବ୍ୟୟ ବହନ କରିବାକୁ ଆନନ୍ଦରେ ରାଜି ହେଲେ ।

ତା ପରେ ଶ୍ରୀକୃଷ୍ଣ ଗଲେ ବରୁଣ ପୁରକୁ । ସପ୍ତାହ ବ୍ୟାପୀ ଯଜ୍ଞରେ ପ୍ରତ୍ୟହ ଯେତେ ସୁବର୍ଣ୍ଣ ପଲମ ଆବଶ୍ୟକ ହେବ ସବୁ ବରୁଣ ରାଜା ଯୋଗାଇ ଦେବାକୁ ସ୍ୱୀକୃତ ହେଲେ । ସେଠାରୁ ଶ୍ରୀକୃଷ୍ଣ କଇଲାସେଶ୍ୱର ନୃପତିର ନଗରରେ ପହଞ୍ଚି ନିମନ୍ତ୍ରିତ ମୁନିଋଷି ମାନଙ୍କ ପାଇଁ ସମସ୍ତ ଫଳ ମୂଳ ନୌକା ଯୋଗେ ପହଞ୍ଚାଇ ଦେବାକୁ କହିଲେ । କଇଲାସେଶ୍ୱର ଆନନ୍ଦରେ ରାଜି ହେଲେ ।

ଶ୍ରୀକୃଷ୍ଣ ବାରୁଣାବନ୍ତ ଫେରି ଦେଖିଲେ ଯେ ଷୋଳ କୋଶ ବ୍ୟାପୀ ଭୂମି ଉପରେ ଅତି ରମଣୀୟ ଯଜ୍ଞଶାଳା ନିର୍ମିତ ହୋଇ ସାରିଛି । ଦେବତା, ମୁନି, ଋଷି, ରାଜା ମହାରାଜାମାନଙ୍କ ପାଇଁ ଯଥା ଯୋଗ୍ୟ ବାସ ଭବନ ମଧ୍ୟ ନିର୍ମାଣ ସରିଛି । ଏହା ଦେଖି ଶ୍ରୀକୃଷ୍ଣ ବହୁତ ସନ୍ତୋଷ ପ୍ରକାଶ କଲେ । ଏବେ ଲକ୍ଷେ ରାଜାଙ୍କୁ ନିମନ୍ତ୍ରଣ କରି

ଯିବାର କଥା । ମାତ୍ର ସେଥିପାଇଁ ତ ସମୟ ନାହିଁ । ତେଣୁ ନାରଦଙ୍କ ସହିତ ପରାମର୍ଶ କରି ପୃଥିବୀର ଦିଗରୁ ପୃଥିବୀର ଶ୍ରେଷ୍ଠ ରାଜା ନିମନ୍ତ୍ରଣ କରିବାର ନିଷ୍ପତ୍ତି ହେଲା ।

ସ୍ୱର୍ଗରେ ଇନ୍ଦ୍ରାଦି ଦେବତା, ଦ୍ୱାରବତୀ ପୁରର ଉଗ୍ରସେନ ଓ ବଳରାମ, କୌରବ ଓ ଦ୍ରୁପଦ ରାଜାଙ୍କୁ ନିମନ୍ତ୍ରଣ କରିବା ଦାୟିତ୍ୱ ଅର୍ଜୁନଙ୍କ ଉପରେ ଅର୍ପଣ କରାଗଲା । ଜରାସନ୍ଧ ଓ ମୃଗସେନ ରାଜାଙ୍କୁ ନିମନ୍ତ୍ରଣ କରିବାକୁ ଭୀମ ଗଲେ । ସହଦେବ ଗଲେ, ନୈମିଷାରଣ୍ୟର ସମସ୍ତ ମୁନି ଋଷିମାନଙ୍କୁ ନିମନ୍ତ୍ରଣ କରି ଆଣିବେ । ପାତାଳ ରାଜା ବାସୁକିଙ୍କୁ ନିମନ୍ତ୍ରଣ କରି ଆଣିବା ନିମିତ୍ତ ନକୁଳ ଗଲେ । ବାସୁକୀ ଆନନ୍ଦରେ ନିମନ୍ତ୍ରଣ ରକ୍ଷା କରି ଯିବା ପାଇଁ ରାଜି ହେଲେ । ମାତ୍ର ତାଙ୍କର ସାତ ଦିନ ଅନୁପସ୍ଥିତିରେ ପୃଥିବୀକୁ କିଏ ବହନ କରିବ ବୋଲି ପଚାରିଲେ । କାରଣ ବାସୁକୀଙ୍କର ମସ୍ତକରୁ ପୃଥିବୀ ସ୍ଥାନଚ୍ୟୁତ ହେଲେ ସଙ୍ଗେ ସଙ୍ଗେ ରସାତଳ ଗାମୀ ହେବ । ନକୁଳ ଏହା ଶୁଣି ବଡ଼ ଚିନ୍ତାରେ ପଡ଼ିଲେ । ସେ କିନ୍ତୁ ପ୍ରଭୁ ଶ୍ରୀକୃଷ୍ଣଙ୍କ ନିର୍ଦ୍ଦେଶରେ ବାସୁକୀଙ୍କୁ ନିମନ୍ତ୍ରଣ କରିବାକୁ ଆସିଥିଲେ, ମାତ୍ର ଏପରି ଏକ ସମସ୍ୟାର ସମ୍ମୁଖୀନ ହେବେ ବୋଲି ତ ସେ କଳ୍ପନା କରି ନ ଥିଲେ । ତାଙ୍କୁ କିଛି ବୁଦ୍ଧି ଦିଶିଲା ନାହିଁ । ସେ ପଞ୍ଚଭୂତ ଆତ୍ମାରେ ନାରାୟଣଙ୍କୁ ଚିନ୍ତା କଲେ । "ହେ ପ୍ରଭୁ କମଳା ରମଣ ! ଏବେ ଏ ଦାସର କର୍ତ୍ତବ୍ୟ କଅଣ ? ଏ ଗୁରୁ ଦାୟିତ୍ୱ କିଏ କିପରି ତୁଲାଇବ ?"

ନାରାୟଣଙ୍କୁ ସ୍ମରଣ କରିବାରୁ ନକୁଳଙ୍କର ଜ୍ଞାନୋଦୟ ହେଲା । ତାଙ୍କର ମନ ଓ ଶରୀରରେ ଅସୀମ ଶକ୍ତି ସଞ୍ଚରିତ ହେଲା । ସେ ବାସୁକୀଙ୍କୁ କହିଲେ, "ହେ ନାଗରାଜ, ମୁଁ ମୋର କୁନ୍ତ ପ୍ରସାରଣ କରୁଛି । ଆପଣ ମୋର କୁନ୍ତ ମୁନ ଉପରେ ଧୀରେ ପୃଥିବୀକୁ ସ୍ଥାପନ କରନ୍ତୁ । ଆପଣ ସାତ ଦିନ ପରେ ଫେରି ଆସିବା ପର୍ଯ୍ୟନ୍ତ ମୁଁ ଏ କୁନ୍ତ ମୁନରେ ପୃଥିବୀକୁ ଧାରଣ କରିଥିବି ।" ତାହାହିଁ କରାଗଲା । ନକୁଳ କୁନ୍ତ ମୁନରେ ଧୀର ସ୍ଥିର ଭାବରେ ପୃଥିବୀକୁ ଧାରଣ କରିବାର ଦେଖି ବାସୁକୀ ଚମତ୍କୃତ ହେଲେ ଓ ନିଶ୍ଚିନ୍ତ ମନରେ ଯୁଧିଷ୍ଠିରଙ୍କର ଧର୍ମଯଜ୍ଞରେ ଯୋଗଦେବା ପାଇଁ ବାହାରିଲେ ।

ଧର୍ମଯଜ୍ଞ, ବୈଶାଖମାସ ଶୁକ୍ଳପକ୍ଷ ପଞ୍ଚମୀ ସୋମବାର ଦିନ ଆରମ୍ଭ ହୋଇ ଯଥାଶ୍ରୁତ ସାତଦିନ ପର୍ଯ୍ୟନ୍ତ ନିର୍ବିଘ୍ନରେ ଚାଲି ସପ୍ତମ ଦିନ ଉଦ୍‌ଯାପିତ ହେଲା । ନିମନ୍ତ୍ରିତ ଅତିଥିମାନେ ଯୁଧିଷ୍ଠିରଙ୍କୁ ବହୁତ ଆଶୀର୍ବାଦ କରି ଯେ ଯାହାଙ୍କର ଆସ୍ଥାନକୁ ଫେରିଗଲେ । ପଣ୍ଡୁରାଜା ନରକ ଭୋଗରୁ ମୁକ୍ତିପାଇ ସ୍ୱର୍ଗଲାଭ କଲେ । ଅର୍ଜ୍ଜୁନଙ୍କର ସତ୍ୟ ଅନୁସାରେ ଅଗ୍ନିଦେବତା ବିପୁଳ ପରିମାଣ ଘୃତଭୋଜନ ପ୍ରାପ୍ତ ହେଲେ । କେବଳ ପ୍ରଭୁ ଶ୍ରୀକୃଷ୍ଣଙ୍କର ଅନୁଗ୍ରହ ହେତୁ ଏତେ ବଡ଼ ବିରାଟ ଧର୍ମଯଜ୍ଞ ନିର୍ବିଘ୍ନରେ ସମାପିତ ହୋଇଥିବାରୁ ତାଙ୍କ ନିକଟରେ କୃତଜ୍ଞତା ପ୍ରକାଶ କରିବାକୁ ଯୁଧିଷ୍ଠିର ଭାଷା ପାଇଲେ ନାହିଁ । କେବଳ ଏତିକି କହିଲେ, "ହେ ପାଣ୍ଡବ ରକ୍ଷାକାରୀ, ତୁମକୁ ମୁଁ କେଉଁ ଭାଷାରେ କୃତଜ୍ଞତା ଜଣାଇବି ?" ଶ୍ରୀକୃଷ୍ଣ ଏହା ଶୁଣିଲେ । ତାଙ୍କର ରଙ୍ଗ ଅଧରରେ ସେହି ମୁନିମନଭୁଲା ମଧୁର ହସ ଟିକିଏ ମାତ୍ର ପ୍ରକାଶ ପାଇଲା । ସେ ଯୁଧିଷ୍ଠିରଙ୍କୁ ପ୍ରଣାମ କରି ସମସ୍ତଙ୍କଠାରୁ ବିଦାୟ ନେଇ ସପରିବାରେ ଦ୍ୱାରକାକୁ ଫେରିଗଲେ ।

## ଶୋଭାବତୀ ହରଣ

ଅନେକ ଦିନ ହେଲା ସ୍ୱର୍ଗ, ମର୍ତ୍ତ୍ୟ କିମ୍ବା ପାତାଳ କେଉଁଠି ହେଲେ ଗୋଟାଏ ବଡ଼ ଧରଣର କଳି ଲାଗିନାହିଁ ବୋଲି ଦେବର୍ଷି ନାରଦଙ୍କ ମନଟା ଭଲ ନ ଥାଏ । ସେଥିପାଇଁ ସେ ବରାବର ସୁଯୋଗ ଖୋଜୁଥାନ୍ତି । ଦିନେ ସେ ଦ୍ୱାରକାକୁ ଆସି ଶାମ୍ବ ଓ ଚନ୍ଦ୍ରାବତୀ ପୁରରେ ପହଞ୍ଚିଲେ ଓ ଚନ୍ଦ୍ରାବତୀକୁ ଗୋଟିଏ ସ୍ୱର୍ଣ୍ଣଚମ୍ପା ଫୁଲ ଦେଲେ । ବିଭାହେଲା ଦିନୁ ଚନ୍ଦ୍ରାବତୀପରି ସୁନ୍ଦରୀ ସ୍ତ୍ରୀକୁ ଶାମ୍ବ ମୁହୂର୍ତ୍ତେ ପାଶରୁ ଅନ୍ତର କରୁନଥାନ୍ତି । ନାରଦ ପହଞ୍ଚିବାରୁ ସ୍ୱାମୀ ସ୍ତ୍ରୀ ଉଭୟେ ତାଙ୍କର ପଦବନ୍ଦନା କଲେ ଏବଂ ତାଙ୍କୁ ଉତ୍ତମ ଆସନରେ ବସାଇ ଆସିବା କାରଣ ପଚାରିଲେ ।

ଚନ୍ଦ୍ରାବତୀ ନିଜ ଅନ୍ତରରେ ଯେ ପୁତ୍ର କାମନା କଲେଣି ଏହା ମୁନି ଜାଣିପାରିଥିଲେ । ତେଣୁ ସେ କହିଲେ ଯେ ଆସିବାର ସେପରି କିଛି କାରଣ ନାହିଁ । ଏମିତି ବୁଲୁ ବୁଲୁ ଆସି ପହଞ୍ଚିଗଲି । ସ୍ୱର୍ଣ୍ଣଚମ୍ପାଟି

କେଉଁଠୁ ଆଣିଲେ ବୋଲି ପଚାରିବାରୁ ମୁନି କହିଲେ ଯେ ସେ ଆସିବା ବାଟରେ ସ୍ୱର୍ଗର ନନ୍ଦନକାନନରୁ ତାହାକୁ ତୋଳି ଆଣିଥିଲେ । ଏହାପରି ସହସ୍ର ସ୍ୱର୍ଣ୍ଣଚମ୍ପାରେ ହରଗଉରୀଙ୍କୁ ପୂଜାକଲେ ନାରୀ ନିଶ୍ଚିତ ଭାବେ ପୁତ୍ରବତୀ ହୁଏ । ଏହାଶୁଣି ଚନ୍ଦ୍ରାବତୀଙ୍କର ମନ ଉଚାଟ ହେଲା । ସେ ସହସ୍ର ସ୍ୱର୍ଣ୍ଣଚମ୍ପା ଆଣିଦେବାକୁ ସ୍ୱାମୀଙ୍କ ନିକଟରେ ଅଳିକଲେ । ସ୍ୱର୍ଗର ରାଜା ଇନ୍ଦ୍ରଙ୍କର ନନ୍ଦନକାନନରୁ ସ୍ୱର୍ଣ୍ଣଚମ୍ପା ଆଣିବା ଅତି କଠିନ କାର୍ଯ୍ୟ । ଏଥିରେ ଜୀବନ ପ୍ରତି ବିପଦ ସୁନିଶ୍ଚିତ । ତଥାପି ଶାମ୍ବ ପ୍ରିୟତମା ପତ୍ନୀର ଅଳି ଭାଙ୍ଗି ନପାରି ସମସ୍ତ ଅସ୍ତ୍ରଶସ୍ତ୍ରରେ ସଜ୍ଜିତ ହୋଇ ଗୋଟିଏ ଦିବ୍ୟରଥ ଚଢ଼ି ନନ୍ଦନବନ ଅଭିମୁଖେ ବାହାରିଗଲେ ।

ଦୈବ ଯୋଗକୁ ସେହିଦିନ ସୁରସେନ ଗନ୍ଧର୍ବର କନ୍ୟା ଶୋଭାବତୀ, ସଖୀଗଣ ସହିତ ନନ୍ଦନକାନନରେ ବୁଲିବାକୁ ଆସିଛି । ଶୋଭାବତୀ ଅନନ୍ୟ ସୁନ୍ଦରୀ, ପୂର୍ଣ୍ଣ ଯୌବନା । ନନ୍ଦନକାନନର ନିତ୍ୟ ବସନ୍ତ, ମୃଦୁ ମୃଦୁ ମଳୟ ପବନ, ପକ୍ଷୀମାନଙ୍କର ମଧୁର ସ୍ୱରଲହରୀ, ନାନା ବର୍ଣ୍ଣର ପୁଷ୍ପମାନଙ୍କର ମଧୁର ସୁଗନ୍ଧ—ଏସବୁ ମିଶି ଶୋଭାବତୀର ଯୌବନଭରା ଶରୀରରେ ଅପୂର୍ବ ପୁଲକ ସଞ୍ଚାର କରୁଛି । ବିଶେଷତଃ କାନନବାସୀ ପଶୁ ପକ୍ଷୀମାନଙ୍କର ଶୃଙ୍ଗାର ଦେଖି ଶୋଭାବତୀ ମନରେ ମଧ୍ୟ ତୀବ୍ର ସମ୍ଭୋଗ କାମନା ଜାଗ୍ରତ ହେଉଛି । ଠିକ୍ ଏହି ସମୟରେ ଗୋପନରେ ସ୍ୱର୍ଣ୍ଣଚମ୍ପା ସଂଗ୍ରହ କରୁଥିବା ଶାମ୍ବ ଉପରେ ତାର ଦୃଷ୍ଟି ପଡ଼ିଗଲା । ଦୃଷ୍ଟି ପଡ଼ିବା-ମାତ୍ରେ ଶାମ୍ବର ସୌନ୍ଦର୍ଯ୍ୟରେ ଶୋଭାବତୀ ମୁଗ୍ଧ ହୋଇଗଲା । ଶାମ୍ବ ମଧ୍ୟ ସହସ୍ର ସ୍ୱର୍ଣ୍ଣଚମ୍ପା ଅତିଯତ୍ନର ସହିତ ରଥ ଭିତରେ ରଖି ଫେରିବାକୁ ବାହାରିଲାବେଳକୁ ଶୋଭାବତୀ ଉପରେ ତାର ଦୃଷ୍ଟି ପଡ଼ିଲା । ସେ ମଧ୍ୟ ମୁଗ୍ଧ ନୟନରେ ଶୋଭାବତୀକୁ ଚାହିଁ ରହିଲା । ସଖୀମାନେ ଆସି ଶାମ୍ବକୁ ତାର କୁଳଗୋତ୍ର ବିଷୟ ପଚାରିଲେ । ସେ ଉଚ୍ଚକୁଳରେ ଜନ୍ମବୋଲି ଜାଣିଲା ପରେ ଶୋଭାବତୀ ଶାମ୍ବର ଗଳାରେ ବରମାଳା ଦେଇ ତାଙ୍କୁ ପତିରୂପେ ବରଣକଲା ଏବଂ ତାଙ୍କ ସହିତ ଯିବାର ଇଚ୍ଛା ପ୍ରକାଶ କରିବାରୁ ଶାମ୍ବ ଶୋଭାବତୀକୁ ରଥରେ ବସାଇ ନେଇଗଲା ।

ଘରକୁ ଫେରି ସଖୀମାନେ ଏକଥା ପ୍ରକାଶ କରିବାରୁ ଇନ୍ଦ୍ର ରାଗି-ଯାଇ ଶାମ୍ବଙ୍କୁ ଧରି ଆଣିବା ପାଇଁ ବହୁତ ସୈନ୍ୟ ପଠାଇଲେ । ମାତ୍ର ଶାମ୍ବ ଏକାକୀ ଯୁଦ୍ଧକରି ସବୁ ସୈନ୍ୟଙ୍କୁ ନିପାତ କରିଦେଲେ । ତା ପରେ ଇନ୍ଦ୍ର ନିଜର ପୁତ୍ର ଜୟସେନଙ୍କୁ ବିପୁଳ ସୈନ୍ୟସହିତ ପଠାଇଲେ । ଶାମ୍ବ ଏକାକୀ ଯୁଦ୍ଧ କରି କରି କ୍ଳାନ୍ତ ହୋଇ ଯିବାରୁ ଜୟସେନ ତାଙ୍କୁ ବନ୍ଦୀକରି ଇନ୍ଦ୍ରଙ୍କ ନିକଟକୁ ନେଇ ଆସିଲେ । ଇନ୍ଦ୍ର ସଙ୍ଗେ ସଙ୍ଗେ ତାଙ୍କୁ ବନ୍ଦୀଶାଳାରେ ଓ ଶୋଭାବତୀଙ୍କୁ ପିତୃପୁରରେ କଡ଼ା ତଦାରଖରେ ରଖିବାକୁ ଆଦେଶ ଦେଲେ ।

କଳିଆ ମୁନି ନାରଦ ସଙ୍ଗେ ସଙ୍ଗେ ଯାଇ ଏ ଖବର ଦ୍ୱାରକାରେ ପହଞ୍ଚାଇଦେଲେ । ରାମ କୃଷ୍ଣ ଦୁହେଁ ଅସଂଖ୍ୟ ଯାଦବ ସୈନ୍ୟ ଓ ପାଣ୍ଡବ-ମାନଙ୍କ ସହିତରେ ଧରି ଇନ୍ଦ୍ରାଦି ଦେବତାମାନଙ୍କ ସହିତ ଘୋର ଯୁଦ୍ଧ ଆରମ୍ଭ କଲେ । ନାରଦଙ୍କ ଆନନ୍ଦ ଦେଖେ କିଏ ? ଲାଗୁ ଲାଗୁ କହି କଳି ମୁଣିକୁ ଝାଡ଼ିଦେଲେ । ନ ହିଁ ନଥିବା ଯୁଦ୍ଧ ଲାଗିଗଲା । ଯୁଦ୍ଧରେ ଆଜି ଏ ପକ୍ଷ ହାରିଲେ, କାଲି ସେ ପକ୍ଷ ହାରୁଛନ୍ତି । ପାଣ୍ଡବ ଭାଇମାନେ ବଡ଼ ଅସୁବିଧାରେ ପଡ଼ି ଥାଆନ୍ତି । ଗୋଟିଏ ପକ୍ଷରେ ନିଜର ପିତାମାନେ, ଅନ୍ୟ ପକ୍ଷରେ ପ୍ରାଣର ସଖା ଶ୍ରୀକୃଷ୍ଣ । ବହୁ ଯୁଦ୍ଧପରେ ଉଭୟ ପକ୍ଷ କ୍ଳାନ୍ତ-ହେଲାବେଳକୁ ବ୍ରହ୍ମା ମରାଳ ବାହନରେ ଯୁଦ୍ଧ କ୍ଷେତ୍ରରେ ଆସି ପହଞ୍ଚିଲେ । ତାଙ୍କୁ ଦେଖି ଉଭୟ ପକ୍ଷ ଯୁଦ୍ଧ ବନ୍ଦ କଲେ । ବ୍ରହ୍ମା ଉଭୟ ପକ୍ଷକୁ ସମ୍ବୋଧନ କରି କହିଲେ, "ଏ ଯୁଦ୍ଧ ହେଉଛି କାହିଁକି ? ଶୋଭାବତୀ ଯୁବତୀ କନ୍ୟା । ଏ ପର୍ଯ୍ୟନ୍ତ ବିଭା ନଦେଇ ପିତା ତାକୁ ନିଜ ଘରେ ରଖିଥିଲେ । ସେ ନିଜ ଇଚ୍ଛାରେ ଶାମ୍ବଙ୍କୁ ପତିରୂପରେ ବରଣ କଲା । ତେଣୁ ନ୍ୟାୟତଃ ସେ ଶାମ୍ବର ପତ୍ନୀହେଲା । ଶାମ୍ବ କଣ ପତ୍ନୀକୁ ପରିତ୍ୟାଗ କରି ଯାଇ ଥାନ୍ତା ? ତା ହୋଇଥିଲେ ତ ତାଙ୍କୁ ଜଣେ ଦୁର୍ବଳ ଲମ୍ପଟ ପୁରୁଷ ବୋଲି ସମସ୍ତେ କହିଥାନ୍ତେ । ପୁଣି ବିବାହିତା ଝିଅ ପିତାଘରେ ଆଉ ରହିଥାନ୍ତା କାହିଁକି ? ତେଣୁ ଶାମ୍ବ ତାକୁ ସଙ୍ଗରେ ନେଇଯିବାଦ୍ୱାରା ତାର ପିତାଙ୍କୁ କନ୍ୟା ଦାୟରୁ ମୁକ୍ତ କରିଛି ଓ ସ୍ୱାମୀର ସ୍ତ୍ରୀ ପ୍ରତି କର୍ତ୍ତବ୍ୟ ସମ୍ପାଦନ କରିଛି । ଶାମ୍ବର କୁଳଶୀଳ ଦୃଷ୍ଟିରୁ ସେ ଯେ ଶୋଭାବତୀର

ଉପଯୁକ୍ତ ବର ଏଥିରେ ସନ୍ଦେହ ନାହିଁ । ତେଣୁ ଏ ଯୁଦ୍ଧ କାହିଁକି ହେଉଛି ? ଏହାଦ୍ୱାରା କି ଉଦ୍ଦେଶ୍ୟ ସାଧିତ ହେବ ?”

ବ୍ରହ୍ମାଙ୍କ ମୁଖରୁ ଏହାଶୁଣି ସମସ୍ତେ ନୀରବ । କାହା ମୁହଁରୁ କଥା ବାହାରୁ ନାହିଁ । ଉଭୟ ପକ୍ଷ ନେଯ ପରସ୍ପରର ଅତି ଆପଣାର କ୍ରମେ ଏହି ମନୋଭାବ ସବୁରି ହୃଦୟରେ ସଞ୍ଚାର ହେଉଛି । ଏହାପରେ ସ୍ୱାଭାବିକ ଭାବେ ଶାମ୍ବ ଓ ଶୋଭାବତୀର ବିବାହ ମହାସମାରୋହରେ ଅନୁଷ୍ଠିତ ହେଲା ଏବଂ ଶ୍ରୀକୃଷ୍ଣ ବଳରାମ ପୁଅବୋହୂଙ୍କୁ ସଙ୍ଗରେ ନେଇ ଦ୍ୱାରକା ଫେରିଗଲେ । ସ୍ୱର୍ଣ୍ଣଚମ୍ପାନେଇ ହରଗଉରୀ ପୂଜିବାପରେ ଯଥା ସମୟରେ ଚନ୍ଦ୍ରାବତୀ ମଧ୍ୟ ପୁତ୍ର ସନ୍ତାନ ଲାଭ କଲେ । ଶାମ୍ବ, ଚନ୍ଦ୍ରାବତୀ ଓ ଶୋଭାବତୀ ଦୁଇ ପତ୍ନୀଙ୍କୁ ନେଇ ଆନନ୍ଦରେ କାଳାତିପାତ କଲେ ।

—×—

ମ
ହା
ଭା
ର
ତ

ସାରଳା

୯୮ଶ ଅଧ୍ୟାୟ

## ରାଜସୂୟ ଯଜ୍ଞ

ଦିନେ ମହର୍ଷି ନାରଦ ଯୁଧିଷ୍ଠିରଙ୍କୁ ଭେଟି କହିଲେ ଯେ ତାଙ୍କର ପିତା ମହାରାଜ ପାଣ୍ଡୁ ସମ୍ପୂର୍ଣ୍ଣଭାବେ ବ୍ରହ୍ମହତ୍ୟା ଦୋଷରୁ ମୁକ୍ତ ହୋଇ-ନାହାନ୍ତି । ଏଥିନିମିତ୍ତ ଯୁଧିଷ୍ଠିରଙ୍କୁ ଲକ୍ଷେ ରାଜା ନିମନ୍ତ୍ରଣ କରି ଏକ ବଡ଼ ରାଜସୂୟ ଯଜ୍ଞ କରିବାକୁ ହେବ ।

ଯୁଧିଷ୍ଠିର, ଯଜ୍ଞର ବିଧାନ ବିଷୟରେ ପଚାରିବାରୁ ନାରଦ କହିଲେ ଯେ ପୂର୍ବ ଲକ୍ଷେ ରାଜାଙ୍କୁ ସୈନ୍ୟସାମନ୍ତ ସହିତ ନିମନ୍ତ୍ରଣ କରି ଆଣିବାକୁ ହେବ । ଦେବତା ଓ ମୁନି ଋଷିମାନେ ମଧ୍ୟ ନିମନ୍ତ୍ରିତ ହୋଇ ଆସିବେ । ଷୋଳଦିନ ପର୍ଯ୍ୟନ୍ତ ଅହୋରାତ୍ର ଯଜ୍ଞକୁଣ୍ଡରେ ଘୃତାହୁତି ଦିଆଯିବ । ରାତିସାରା ହୋଇ ସମସ୍ତଙ୍କୁ ପୂର୍ଣ୍ଣଭୋଜନ ଦିଆଯାଉଥିବ । ଯେ ଯାହା ମାଗିବେ, ସମସ୍ତଙ୍କୁ ଅବଚ୍ଛିନ୍ନଭାବେ ଦାନ ଦିଆଯିବ । ଶତ୍ରୁ ମିତ୍ର ସମସ୍ତେ ସମାନ ଆଦର ଅଭ୍ୟର୍ଥନା ଲାଭ କରୁଥିବେ । କାହାର କୌଣସି କଥାରେ ଅସନ୍ତୋଷ ହେବନାହିଁ । ଏହିପରି ଭାବରେ ରାଜସୂୟ ଯଜ୍ଞ କରିବାକୁ ହେବ । ତାହା ହେଲେ ପାଣ୍ଡୁ ମହାରାଜା ବ୍ରହ୍ମହତ୍ୟାଦୋଷରୁ ସମ୍ପୂର୍ଣ୍ଣଭାବେ ମୁକ୍ତହୋଇ ପରମଗତି ଲାଭ କରିବେ ଏବଂ ପାଣ୍ଡବମାନେ ମହାପୁଣ୍ୟ ଅର୍ଜନ କରିବେ ।

ଏହାଶୁଣି ଯୁଧିଷ୍ଠିର ବଡ଼ ନିରାଶ ହୋଇ କହିଲେ, "ହେ ଦେବର୍ଷି, ଆପଣତ ଜାଣନ୍ତି, ମୁଁ ଧନବନ୍ତ ଲୋକ ନୁହେଁ । ଏପରି ରାଜସୂୟ ଯଜ୍ଞ କରିବାକୁ ସମ୍ପଦ ମୋର କାହିଁ ? ଅବଚ୍ଛିନ୍ନ ଦାନ ଦେବା ନିମିତ୍ତ ମୁଁ ବିପୁଳ ଅର୍ଥ କାହୁଁ ବା ପାଇବି ? ବରଂ ମୁଁ ସାରା ଜୀବନ ତୀର୍ଥଭ୍ରମଣ କରି କରି ବିତାଇ ଦେବି । ଏହା ଦ୍ୱାରା ମୋର ପରମାରାଧ୍ୟ ପିତାଙ୍କର ମୁକ୍ତିଲାଭ ସମ୍ଭବ ହୋଇପାରିବ କି ?"

ନାରଦ ଯୁଧିଷ୍ଠିରଙ୍କୁ ସାନ୍ତ୍ୱନା ଦେଇ କହିଲେ ଯେ ସେ ଆଦୌ ବ୍ୟସ୍ତ ନହୋଇ ଶ୍ରୀକୃଷ୍ଣଙ୍କୁ ଡ଼ାକି ପରାମର୍ଶ କରନ୍ତୁ । ତାଙ୍କର ଦୟାହେଲେ ଅସମ୍ଭବ ସମ୍ଭବ ହେବ । ସ୍ୱୟଂ ଲକ୍ଷ୍ମୀଠାକୁରାଣୀ ଯାହାଙ୍କର ଗୃହିଣୀ ତାଙ୍କ ପକ୍ଷରେ କେଉଁ ଅର୍ଥ ଅପୂର୍ବ ? ଶ୍ରୀକୃଷ୍ଣଙ୍କର ନାମ ଶୁଣି ଯୁଧିଷ୍ଠିରଙ୍କ ମନରେ ଆଶାର ସଞ୍ଚାର ହେଲା । ସେ ଶ୍ରୀକୃଷ୍ଣଙ୍କୁ ଡାକି ଆଣିବାପାଇଁ ସଙ୍ଗେ ସଙ୍ଗେ ଅର୍ଜ୍ଜୁନଙ୍କୁ ଦ୍ୱାରକା ପଠାଇଲେ ।

ଅବିଳମ୍ବେ ଶ୍ରୀକୃଷ୍ଣ ଆସି ପହଞ୍ଚିଲେ । ରାଜସୂୟ ଯଜ୍ଞର ପ୍ରସ୍ତାବ ଶୁଣି ଶ୍ରୀକୃଷ୍ଣ ଅତ୍ୟନ୍ତ ଆନନ୍ଦିତ ହେଲେ ଏବଂ ଖୁବ୍ ଯାକ୍ଷ୍ୟମକରେ ସମସ୍ତ ବିଧି ବିଧାନ ସହିତ ଏଥର ରାଜସୂୟ ଯଜ୍ଞ କରିବା ନିମିତ୍ତ ସେମାନଙ୍କ ମଧ୍ୟରେ ପରାମର୍ଶ ଚାଲିଲା । ଯୋଗକୁ ନାରଦ ମୁନି ମଧ୍ୟ ଆସି ପହଞ୍ଚିଗଲେ । ଶ୍ରୀକୃଷ୍ଣ ଓ ନାରଦ, ଏ ଦୁଇ ପରମ ହିତାକାଂକ୍ଷୀଙ୍କୁ ପାଇ ଯୁଧିଷ୍ଠିରଙ୍କର ଉତ୍ସାହ ବହୁତ ବଢିଗଲା ।

ପ୍ରଥମ କଥା ହେଲା ପୃଥିବୀରେ ଲକ୍ଷେ ରାଜା ଅଛନ୍ତି କି ? ଯଦି ବା ଥାଆନ୍ତି ତେବେ ସେମାନଙ୍କୁ ନିର୍ଦ୍ଦିଷ୍ଟ ସମୟ ମଧ୍ୟରେ କିପରି ନିମନ୍ତ୍ରଣ କରି ଆଣିବା ସମ୍ଭବ ? ସେମାନଙ୍କ ମଧ୍ୟରେ ଅନେକ ଦୁଷ୍ଟ ରାଜା ଅବଶ୍ୟ ଥିବେ, ଯେଉଁମାନେ ବିନା ଯୁଦ୍ଧରେ ଆନୁଗତ୍ୟ ସ୍ୱୀକାର କରିବେ ନାହିଁ । ନାରଦ କହିଲେ, "ଗୋଟିଏ ଉପାୟ କଲେ ଲକ୍ଷେ ରାଜା ଅକ୍ଳେଶରେ ନିମନ୍ତ୍ରଣ କରି ହେବ । ରାଜସୂୟ ଯଜ୍ଞର ନିୟମ ଅନୁସାରେ ଲକ୍ଷେ ରାଜାରୁ ଗୋଟିଏ କମ ହେଲେ, ଯଜ୍ଞର ଫଳ ପ୍ରାପ୍ତି ହେବ ନାହିଁ । ତେଣୁ ଆବଶ୍ୟକ ପଡ଼ିଲେ କେତୋଟି ସୁବର୍ଣ୍ଣର ରାଜା ଗଢାଇ ଲକ୍ଷେ ଭରଣା କରିବାକୁ ହେବ । ତେବେ ଏପରି ପରିସ୍ଥିତି ବୋଧହୁଏ ଉପୁଯିବ ନାହିଁ ।

ମଗଧର ମହାପରାକ୍ରମଶାଳୀ ରାଜା ଜରାସନ୍ଧ ଛୟାନବେ ସହସ୍ର ରାଜାଙ୍କୁ ବନ୍ଦୀ କରି ରଖିଛି । ସେ ବର୍ତ୍ତମାନ ଏକ ଯଜ୍ଞ କରୁଛି । ପଅରି ଦିନ ସେ ଯଜ୍ଞରେ ପୂର୍ଣ୍ଣାହୁତି ଦିଆ ଯିବ । ସେହି ସମୟରେ ଜରାସନ୍ଧ ସବୁ ରାଜାମାନଙ୍କୁ ମାରି ଯଜ୍ଞ କୁଣ୍ଡରେ ପକାଇବ ।" ଏହା ଶୁଣି ଯୁଧିଷ୍ଠିର ଅତ୍ୟନ୍ତ ଆଶ୍ଚର୍ଯ୍ୟ ହୋଇ ଶ୍ରୀକୃଷ୍ଣଙ୍କ ମୁଖକୁ ଚାହିଁଲେ । ଶ୍ରୀକୃଷ୍ଣ ଅଳ୍ପ ହସି କହିଲେ, "ଜରାସନ୍ଧ ଆମର ଏହି କାର୍ଯ୍ୟରେ ଲାଗିବ ବୋଲି ମୁଁ ପ୍ରାଣରେ ନ ମାରି ଛାଡ଼ି ଦେଇଥିଲି । ଯାହାହେଉ, ବର୍ତ୍ତମାନ ସମୟ ଆସିଲା । ଏବେ ଶୀଘ୍ର ଜରାସନ୍ଧ ନଗରକୁ ଯାଇ ତାକୁ ମାରିବା ଓ ମାରିବାଠାରୁ ଛୟାନବେ ସହସ୍ର ରାଜାଙ୍କୁ ମୁକ୍ତ ଦେଇ ସେମାନଙ୍କୁ ନିମନ୍ତ୍ରଣ କରିବା ।"

କାଳ ବିଳମ୍ବ ନ କରି ଶ୍ରୀକୃଷ୍ଣ, ଭୀମ ଅର୍ଜ୍ଜୁନଙ୍କୁ ସଙ୍ଗରେ ନେଇ ଜରାସନ୍ଧ ପୁରକୁ ବାହାରିଲେ । ତିନିହେଁ ଯୁଧିଷ୍ଠିରଙ୍କର ପାଦ ତଳେ ପ୍ରଣମିତ ହେଲେ । ଯୁଧିଷ୍ଠିର ବାଷ୍ପ ଗଦ୍‌ଗଦ୍ କଣ୍ଠରେ କଲ୍ୟାଣ ବାଞ୍ଛା କରି କହିଲେ, "ହେ ଦେବ, ଭକ୍ତବତ୍ସଳ ପୀତବାସ, ହେ ଦୁଃଖୀଜନ ଉଦ୍ଧାରକର୍ତ୍ତା, ଅଭୟ ବରଦାତା, ହେ ପାଣ୍ଡବ ରକ୍ଷାକାରୀ, ତୋତେ ମୁଁ କି କଲ୍ୟାଣ କରିବି ? ଧର୍ମ ଦେବତା ସହାୟ ହୁଅନ୍ତୁ । ତୁମେମାନେ କାର୍ଯ୍ୟ ସଫଳ କରି ସବୁ ଶୁଭରେ ଫେରି ଆସ ।

ଶ୍ରୀକୃଷ୍ଣ, ଭୀମ ଅର୍ଜ୍ଜୁନ ଯିବା ମଧ୍ୟରେ ସୋମେଶ୍ୱର ମହାଦେବଙ୍କୁ ଦର୍ଶନ କଲେ । ମହାଦେବ ସନ୍ତୁଷ୍ଟ ହୋଇ କହିଲେ, "ହେ ଶ୍ରୀକୃଷ୍ଣ, ତୁମେ କିମ୍ବା ଅର୍ଜ୍ଜୁନ ଜରାସନ୍ଧର ସମ୍ମୁଖୀନ ହେବ ନାହିଁ । ଭୀମ ହାତରେ ତାର ମରଣ ଅଛି । ମାତ୍ର ଅସ୍ତ୍ର ଶସ୍ତ୍ର, ଜଳ ଅନଳରେ ତାର କ୍ଷୟ ନାହିଁ । ତାର ମୃତ୍ୟୁ ଭେଦ ଜାଣି ରଖ । ଜନ୍ମ ସମୟରେ ସେ ଦୁଇଫାଳ ହୋଇ ଜନ୍ମ ହୋଇଥିଲା । ତେଣୁ ତାକୁ କାବୁ କରି ଦୁଇଫାଳ କରି ଚିରି ଦେଲେ ସେ ପ୍ରାଣ ଛାଡ଼ିବ ।" ଏହା କହି ଭୀମ ଦେହରେ ମହାବଳୀ ବିଭୂତି ଲେପନ କଲେ । ଏହା ଫଳରେ ଭୀମର ଶରୀର ଅକ୍ଷୟ ହୋଇଗଲା ।

ମହାଦେବଙ୍କ ପାଦତଳେ ପ୍ରଣାମ କରି ତିନିହେଁ ଗନ୍ତବ୍ୟ ପଥରେ ଚାଲିଲେ । ମାତ୍ର ବାଟ ସରିଲା ନାହିଁ । ଯଥା ସମୟରେ ପହଞ୍ଚିବାର ଆଶା

ନ ଦେଖି ଶ୍ରୀକୃଷ୍ଣ ଗରୁଡଙ୍କୁ ସ୍ମରଣ କଲେ । ରମ୍ୟକ ଦ୍ୱୀପରୁ ଗରୁଡ ତତ୍‌କ୍ଷଣାତ୍ ପହଞ୍ଚି ତିନିଜଣଙ୍କୁ କାନ୍ଧରେ ନେଇ ଉଡ଼ି ଗଲେ ଓ ଜରାସନ୍ଧ ପୁର ନିକଟରେ ଛାଡ଼ି ଦେଲେ ।

ସେଠାରେ ପହଞ୍ଚି ସେମାନେ କ୍ଷତ୍ରିୟ ବେଶ ଛାଡ଼ି ବ୍ରାହ୍ମଣ ବେଶ ଧରିଲେ । ଶରୀରରେ ଦ୍ୱାଦଶ ଚିତା, ଉତ୍ତରୀୟ, କାନ୍ଧରେ ପଇତା, କଣ୍ଠରେ ରୁଦ୍ରାକ୍ଷମାଳା, କଟିରେ ତ୍ରିକଚ୍ଛ ବସନ, କାଖରେ ବେଦମନ୍ତ୍ର ପୋଥି, ହାତରେ କୁଶବଟୁ, ତମ୍ବାପାଣି, ଗଡ଼ୁ, ଶ୍ରୁବ ଆଦିଧରି ମୁଖରେ ଶୁଦ୍ଧ ବେଦମନ୍ତ୍ର ଉଚ୍ଚାରଣ କରି କରି ଚାଲିଲେ । ଶରୀର ନିର୍ଧୂମ ଅଗ୍ନି ପରି ତେଜୀୟାନ ଦେଖାଯାଉଥାଏ । ପ୍ରଥମ ଦ୍ୱାର ନିକଟରେ ପହଞ୍ଚି ଶ୍ରୀକୃଷ୍ଣ ଉଚ୍ଚସ୍ୱରରେ ବେଦମନ୍ତ୍ର ପାଠକଲେ । ସେହି ପ୍ରଥମ ଦ୍ୱାରକୁ ଜରାସନ୍ଧ ପୁତ୍ର ସହଦେବ ଅସଂଖ୍ୟ ସୈନ୍ୟଘେନି ରକ୍ଷା କରୁଥାଏ । ମାଛିଟିଏ ଗଳିଯିବାକୁ ବାଟନାହିଁ । ଯେଉଁ ବାସୁଦେବଙ୍କୁ ବେଦମନ୍ତ୍ର ପାଠରେ ସ୍ୱୟଂ ବ୍ରହ୍ମା ସରି ହେବେ ନାହିଁ ତାଙ୍କ ମୁଖରୁ ଅନର୍ଗଳ ବେଦପାଠ ଶୁଣି ସହଦେବ ସମ୍ମୋହିତ ହୋଇଗଲେ । ସେ ମନେ ମନେ ବିପ୍ରଙ୍କୁ ବହୁତ ପ୍ରଶଂସା କରି ଭାବିଲେ ଯେ ଆଜି ଯଜ୍ଞର ପଞ୍ଚଦଶ ଦିବସରେ ତାଙ୍କ ପିତାଙ୍କର ଭାଗ୍ୟ ଖୋଲିଲା । ଏପରି ବେଦଜ୍ଞ ବିପ୍ର ଭାଗ୍ୟରେ ଥିଲେ ଅତିଥି ରୂପେ ମିଳନ୍ତି । ଏହାଭାବି ରତ୍ନଝାରୀରେ ପାଣିନେଇ ବ୍ରାହ୍ମଣମାନଙ୍କ ପାଦ ପଖାଳି ବିଧିପୂଜାକଲି । ଛଦ୍ମବେଶୀ ବ୍ରାହ୍ମଣମାନେ ଆଶୀର୍ବାଦ କଲେ, "ହେ ବତ୍ସ ସହଦେବ, ତୁମେ ଅବିଳମ୍ବେ ସିଂହାସନ ଆରୋହଣ କରି ରାଜଚକ୍ରବର୍ତ୍ତୀ ହୁଅ ।" ସହଦେବ ବହୁ ବିନୟରେ ସହିତ କହିଲେ, "ଆଜି ଦାନର ବେଳ ଗଡ଼ି ଗଲାଣି । ଆପଣମାନେ ଆଜି ଅତିଥିଶାଳାରେ ନିଶ୍ଚିନ୍ତରେ ବିଶ୍ରାମ କରନ୍ତୁ । ଆସନ୍ତା କାଲି ରାଜା, ଆପଣମାନଙ୍କୁ ଇଚ୍ଛା ମୁତାବକ ଦାନଦେଇ ସନ୍ତୁଷ୍ଟ କରିବେ ।"

ମାତ୍ର ଶ୍ରୀକୃଷ୍ଣ କହିଲେ, "ଆମେମାନେ ବହୁଦୂରରୁ ରାଜଦର୍ଶନ ନିମିତ୍ତ ଆସିଛୁ । ବାଟ ଚାଲି ଚାଲି ଅତ୍ୟନ୍ତ କ୍ଷୁଧାତୁର ହେଲୁଣି । ମାତ୍ର ରାଜଦର୍ଶନ ନହେଲେ ଆମେମାନେ ଭୋଜନ କରିବୁ ନାହିଁ । ଏହାହିଁ ଆମର

ସ୍ୱକଲ୍ପ । ତେଣୁ ରାଜଦର୍ଶନ ନିମିତ୍ତ ଆମକୁ ଛାଡ଼ିଦିଅ । ନଚେତ୍ ଧର୍ମନାଶ ଯିବ ।"

କୁମାର ସହଦେବ ବଡ଼ ଅଡୁଆରେ ପଡ଼ିଲେ । ପିତାଙ୍କର ବିନା ଆଦେଶରେ ଏମାନଙ୍କୁ ଭିତରକୁ ଛାଡ଼ିବେ କିପରି ? ଏବେ ପିତା ଯଜ୍ଞ-କୁଣ୍ଡରେ ଆହୂତ ପ୍ରଦାନ କରୁଛନ୍ତି । ଏତେବେଳେ ତାଙ୍କ ନିକଟକୁ ଯାଇ ଅନ୍ୟ ବିଷୟ ଉତ୍ଥାପନ କରିବା ସମ୍ଭବ ନୁହେଁ ! ଏଣେ ବ୍ରାହ୍ମଣମାନେ କ୍ଷୁଧାର୍ତ୍ତ । ରାଜଦର୍ଶନ ନକଲେ ଜଳ ସ୍ପର୍ଶ କରିବେ ନାହିଁ ବୋଲି କହୁଛନ୍ତି । ସେ ବହୁତ ଭାବି ଚିନ୍ତି ଶେଷରେ କହିଲେ, "ଆପଣମାନେ ନିରସ୍ତ୍ର କି ?" ସଙ୍ଗେ ସଙ୍ଗେ ତିନି ଦ୍ୱିଜ ନିଜ ନିଜର ଉତ୍ତରୀୟ କାଢ଼ି ଦେଖାଇ ଦେଲେ ଯେ ସେମାନଙ୍କ ନିକଟରେ କୌଣସି ଅସ୍ତ୍ର ଶସ୍ତ୍ର ନାହିଁ । ସହଦେବ ଦଧିବାହନ ସ୍ମରଣକରି ଦ୍ୱିଜମାନଙ୍କୁ ଭିତରକୁ ଛାଡ଼ିଦେଲେ ।

ଦକ୍ଷିଣ ଦ୍ୱାର ଯାଇ ଏକ ଯୋଜନ ଦୂରରେ । ଶ୍ରୀକୃଷ୍ଣ କହିଲେ ଯେ ପ୍ରଥମରେ ଭେରୀ, ଦକ୍ଷିଣରେ ଶିମୂଳୀ ବୃକ୍ଷ ଓ ତୃତୀୟରେ ଗର୍ଦ୍ଦଭ ଦ୍ୱାର ଜଗି ରହିଛନ୍ତି । ଶତ୍ରୁ ଭାବରେ କେହି ପଶିଲେ ଭେରୀ ବାଜି ଉଠିବ । ଥୁଣ୍ଟା ଶିମୂଳୀ ବୃକ୍ଷଟାରେ ଫୁଲ ଫୁଟିଯିବ । ଗର୍ଦ୍ଦଭ ଉଚ୍ଚ ସ୍ୱରରେ ବୋବାଇ ଉଠିବ । ତେଣୁ କିଏ କେଉଁଟାକୁ ସାଧି କରିବ ବର୍ତ୍ତମାନ୍ ଠିକ୍ କରିବା ।

ଏହା ଶୁଣି ଭୀମ କହିଲେ ଯେ ସେ ଭେରୀକୁ ଯେ କୌଣସି ପ୍ରକାରେ ଭାଙ୍ଗି ଗୁଣ୍ଡା କରିବେ । ଅର୍ଜ୍ଜୁନ କହିଲେ ଶିମୂଳୀ ବୃକ୍ଷ ତାଙ୍କପାଇଁ ରହିଲା । ସେ ସେକଥା ବୁଝିବେ । ଶେଷରେ ଶ୍ରୀକୃଷ୍ଣ କହିଲେ ଯେ ଗର୍ଦ୍ଦଭ ତାଙ୍କୁ ଭାଗରେ ପଡ଼ିଲା । ଏହିପରି ବିଚାର କରି ତିନିଜଣଯାକ ଖୁବ୍ ସତର୍କତାର ସହିତ ଆଗେଇଲେ । ବାଟରେ ଭୀମ ପଚାରିଲେ, "ହେ ବାସୁଦେବ, ତୁମେତ ସୃଷ୍ଟିକର୍ତ୍ତା । ଏ ଭେରୀ, ଶିମୂଳୀ ଗଛ ଓ ଗର୍ଦ୍ଦଭ ଏମାନଙ୍କ ପୂର୍ବ ବୃତ୍ତାନ୍ତ ଆମକୁ କହ । ସେମାନେ ଏପରି ଅବସ୍ଥା କିପରି ପାଇଲେ ?"

## ଭେରୀର ପୂର୍ବ ଚରିତ ।

ଶ୍ରୀ କୃଷ୍ଣ କହିଲେ, "ସ୍ୱର୍ଗରେ ମଦନକା ନାମରେ ଅତି ସୁନ୍ଦରୀ ଅପ୍‌ସରା ଥିଲା । ସେ ଦେବରାଜ ଇନ୍ଦ୍ରଙ୍କର ଅତି ପ୍ରିୟବତୀ । ତେଣୁ ଅନ୍ୟ ବିଦ୍ୟାଧରମାନେ ଭୟରେ ତା ପାଖକୁ ଯାଇ ପାରନ୍ତି ନାହିଁ । ଥରେ ମଦନକା ସ୍ୱର୍ଗ ଗଙ୍ଗାରେ ସ୍ନାନ କରିବାକୁ ଯାଇଥିଲା । କୁବେର ପୁତ୍ର ନଳକୁବେର ତାକୁ ଏକାକୀ ଦେଖି ତା ସଙ୍ଗେ ଶୃଙ୍ଗାର କରିବାକୁ ଧରିଲେ । ମଦନକା ଏପରି ବଳତ୍କାର ଶୃଙ୍ଗାରକୁ ନାପସନ୍ଦ କରି ଭେରୀ ଭଳି ଖୁବ୍ ଜୋରରେ ପାଟିକଲା । ନଳକୁବେର ଭୟରେ ତାକୁ ଛାଡି ଦେଲେ । ମାତ୍ର ଅଭିଶାପ ଦେଲେ, "ତୁ ବାରନାରୀ, ବେଶ୍ୟା । ରୂପ ଗର୍ବରେ ମୋ ଆଶା ଭାଙ୍ଗିଲୁ । ଆଜି ଭେରୀପରି ଏତେ ରଡ଼ିଧାପ କଲୁ । ମୁଁ ତୋତେ ଅଭିଶାପ ଦେଉଛି, ତୁ ମର୍ତ୍ତ୍ୟରେ ଭେରୀ-ରୂପରେ ଜାତ ହେବୁ । ମଗଧ ରାଜା ଜରାସନ୍ଧର ଦ୍ୱାର ଜଗିବୁ । ମତେ ଅକାରଣ ଶତ୍ରୁଭାବ ରଡିକଲୁ । ସେହିପରି ଶତ୍ରୁ ଦେଖିଲେ ରଡ଼ି କରୁଥିବୁ ।

ଏହାଶୁଣି ମଦନକା ମନରେ ଭାରି ଦୁଃଖ ହେଲା । ସେ ଅତି ବିନମ୍ର ହୋଇ କହିଲା, "ହେ କୁବେର ପୁତ୍ର, ମୁଁ ସ୍ନାନାର୍ଥିନୀ ନାରୀ । ତୁମେ ମୋତେ ବାଟରେ ଧରିଲ, ମୁଁ ମନାକଲାରୁ ଏତେ ବଡ଼ ଅଭିଶାପ ଦେଲ । ହଉ ଏବେ କହ, ମୁଁ କପରି ଏ ଅଭିଶାପରୁ ମୁକ୍ତ ହେବ ?" ନଳକୁବେରଙ୍କ ମନଟା କିଛି ଶାନ୍ତ ହୋଇଯାଇଥିଲା । ସେ କହିଲେ "ଜରାସନ୍ଧକୁ ବଧ କରିବାକୁ ଯିବାବେଳେ ଭୀମଙ୍କ ମୁଥ ପ୍ରହାରରେ ତୁ ଗୁଣ୍ଡ ହୋଇଯିବୁ । ସେଠାରେ ଶ୍ରୀକୃଷ୍ଣ ଥିବେ । ତାଙ୍କୁ ଦର୍ଶନକରି ତୋର ମୁକ୍ତି ହୋଇଯିବ ।"

ଭୀମସେନ ଏହାଶୁଣି ଅତ୍ୟନ୍ତ ଉତ୍ସାହିତ ହୋଇ ଆଗେଇଗଲେ ଏବଂ ଭେରୀ ବାଜି ଆସିଲା ବେଳକୁ ଏକ ବଜ୍ର ମୁଥମାରି ତାକୁ ଗୁଣ୍ଡା କରିଦେଲେ । ସଙ୍ଗେସଙ୍ଗେ ତହିଁରୁ ଏକ ଅପୂର୍ବ ସୁନ୍ଦରୀ ନାରୀ ବାହାରି ଶ୍ରୀକୃଷ୍ଣଙ୍କୁ ନମସ୍କାର କରି ଆକାଶରେ ମିଶିଗଲା ।

## ଶିମ୍ଳୀ ବୃକ୍ଷ ବୃତ୍ତାନ୍ତ ।

ଶ୍ରୀକୃଷ୍ଣ, ଭୀମ, ଅର୍ଜ୍ଜୁନ ଶିମୂଳୀ ବୃକ୍ଷ ଥିବା ଦ୍ୱାର ଆଡ଼କୁ ଅଗ୍ରସର ହେଲାବେଳକୁ ଶିମୂଳୀ ବୃକ୍ଷରେ ଅସଂଖ୍ୟ ଫୁଲ ଫୁଟି ଉଠିଲା । ଶ୍ରୀକୃଷ୍ଣ ଗରୁଡ଼ଙ୍କୁ ସ୍ମରଣ କରିବାରୁ ଗରୁଡ଼ ଶୂନ୍ୟରେ ଥାଇ ଅର୍ଜ୍ଜୁନଙ୍କ ହାତକୁ ଗାଣ୍ଡିବ ଧନୁ ଓ ଶର ବଢ଼ାଇ ଦେଲେ । ଅର୍ଜ୍ଜୁନ ସଙ୍ଗେ ସଙ୍ଗେ ବାବଲ ଶର ପେଶି ଶିମୂଳୀ ବୃକ୍ଷକୁ ଉପୁଡ଼ାଇ ଦେଲେ ଓ ପରେ ପରେ ପବନା ପବନା ଶରମାରି ତାକୁ ଉଡ଼ାଇନେଇ ସମୁଦ୍ରରେ ପକାଇଦେଲେ ।

ଶ୍ରୀକୃଷ୍ଣ କହିଲେ ଯେ ଏହି ଶିମୂଳୀ ସ୍ୱର୍ଗର ବୃକ୍ଷ । ସଦାଶିବ ନାମକ ଏକ ଗନ୍ଧର୍ବ ଜଣେ ଅନ୍ଧ ଋଷିଙ୍କର କାମଧେନୁ ଚୋରି କରିବାରୁ ଋଷିଙ୍କ ଶାପରେ ଯମ ଦୂତମାନେ ସଦାଶିବକୁ ଧରିନେଇ ଏକ ଶିମୂଳୀ ଗଛରେ ବାନ୍ଧି ଗୁଣ୍ଠରେ ପିଟିପିଟି ଲହୁ ଲୁହାଣ କରି ପକାଇଲେ । ଯମ ଦୂତମାନେ ଚାଲି ଯିବାପରେ ଗନ୍ଧର୍ବ ଅତି କ୍ଳାନ୍ତହୋଇ ବନ୍ଧା ହୋଇଥିବା ଅବସ୍ଥାରେ ଶିମୂଳୀ ବୃକ୍ଷକୁ ଟିକଏ ଆଉଜି ପଡ଼ିବାରୁ ବୃକ୍ଷର କଣ୍ଟା ତା ଦେହରେ ଫୋଡ଼ ହୋଇଯାଇ ରକ୍ତ ଝରଝର ହୋଇ ବହିଲା । ଗନ୍ଧର୍ବ ଅତି ଆକୁଳହୋଇ ଶାପ ଦେଲା, ତୁ ସ୍ୱର୍ଗର ବୃକ୍ଷ ହୋଇ ତୋଠାରେ ଦୟାମାୟା ଟିକଏ ନାହିଁ । ତୁ ଅସୁର ପୁରରେ ଜାତ ହୋଇ ମୃତ ଅବସ୍ଥାରେ ଥିବୁ । ଶତ୍ରୁକୁ ଦେଖିଲେ ହିଁ ତୋ ଦେହରେ ଜୀବନ ସଂଚାର ହୋଇ ଫୁଲ ଫୁଟି ଉଠିବ ।" କପରି ମୁକ୍ତ ପାଇବ ବୋଲି ପଚାରିବାରୁ ଗନ୍ଧର୍ବ କହିଲା, "ଦ୍ୱାପର ଯୁଗରେ ଶ୍ରୀକୃଷ୍ଣଙ୍କ ସଖା ଅର୍ଜ୍ଜୁନ ତୋତେ ବିନାଶ କରି ମୁକ୍ତ ଦେବେ ।" ଏହାଶୁଣି ଭୀମ ଅର୍ଜ୍ଜୁନ ବଡ଼ ଆନନ୍ଦିତ ହେଲେ ।

## ଗର୍ଦ୍ଦଭ ଚରିତ ।

ଶ୍ରୀକୃଷ୍ଣ, ଭୀମ ଅର୍ଜ୍ଜୁନ ଗଧ ଥିବା ଦ୍ୱାର ଆଡ଼କୁ ଆଗେଇବା ସଙ୍ଗେ ସଙ୍ଗେ ଗଧ ଉଚ୍ଚ ସ୍ୱରରେ ରବ କରିଉଠିଲା । ଶ୍ରୀକୃଷ୍ଣ ସଙ୍ଗେ ସଙ୍ଗେ ନିଜର ଦକ୍ଷିଣ ଭୁଜକୁ ଯୋଜନେ ପର୍ଯ୍ୟନ୍ତ ବଢ଼ାଇ ଦେବଦତ୍ତ ଶଙ୍ଖକୁ

ଗଧ ମୁହଁରେ ଭରିଦେଲେ । ତେଣୁ ଗଧର ରାବ ଶଙ୍ଖ ଧ୍ୱନିପରି ଶୁଭିଲା । ଶ୍ରୀକୃଷ୍ଣଙ୍କର ସ୍ୱରୂପ ଦର୍ଶନକରି ଗଧ ମନେମନେ ଆନନ୍ଦିତ ହୋଇ ଜାଣିଲା ଯେ ତା'ର ମୁକ୍ତି ସମୟ ଆସିଗଲା । ସେ ବହୁତ ବିନୟ ହୋଇ କହିଲା "ହେ ପ୍ରଭୁ ଜଗନ୍ନାଥ, ତୁମର ଶ୍ରୀକରରେ ମୋର ପାଦକୁ ଟିକିଏ ଛୁଇଁ ଦେଇ ମୋତେ ମୁକ୍ତି ପ୍ରଦାନ କର । ଭାବଗ୍ରାହୀ ବାସୁଦେବ ବିନା ସଂକୋଚରେ ଶ୍ରୀକର କଢାଇ ଗଧ ପାଦଛୁଇଁ ଦେଲେ । ସଙ୍ଗେ ସଙ୍ଗେ ମୂର୍ଚ୍ଛନା ଫାଟିଯାଇ ଗଧ ମରିଗଲା ଓ ତା ଭିତରୁ ଜଣେ ଗନ୍ଧର୍ବଙ୍କର ଆବିର୍ଭାବ ହେଲା । ସେ ଶ୍ରୀକୃଷ୍ଣଙ୍କ ଚରଣରେ ପ୍ରଣାମକରି ଶୂନ୍ୟରେ ମିଶିଗଲା ।

## ବୃଦ୍ଧଶ୍ରବା ଚରିତ

ଶ୍ରୀ କୃଷ୍ଣ କହିଲେ, "ଏହି ଗନ୍ଧର୍ବର ନାମ ବୃଦ୍ଧଶ୍ରବା । ସେ ଦିନେ କାମସେନା ନାମକ ଅପ୍ସରା ସହିତ ଇନ୍ଦ୍ର ସଭାରେ ନୃତ୍ୟ କରୁଥିଲା । କାମସେନାର ରୂପରେ ମୋହିତ ହୋଇ ବସୁଶ୍ରେଷ୍ଠ ବିଶ୍ୱାବସୁ, ନୃତ୍ୟ-ଶେଷରେ ବୃଦ୍ଧଶ୍ରବାକୁ ଏକାନ୍ତରେ ଡାକି କହିଲେ ଯେ ସେ ସନ୍ଧ୍ୟାପରେ କାମସେନାକୁ ସଙ୍ଗରେ ନେଇ ତାଙ୍କ ପୁରରେ ଛାଡ଼ି ଆସିବ । କାମସେନା ସୁବେଶ ହୋଇ ବୃଦ୍ଧଶ୍ରବା ସହିତ ବାଟରେ ଗଲାବେଳେ ନିଜେ ବୃଦ୍ଧଶ୍ରବା କାମସେନାର ରୂପରେ ମୋହିତ ହୋଇ ତାକୁ ଶୃଙ୍ଗାର ମାଗିଲା । ବିଶ୍ୱାବସୁ ଏହାକୁ ଯିବା ଭୁଲି ବିଦ୍ୟାଧରି ବିଦ୍ୟାଧରୀ ଭଉତ୍ସୁ ବାଟରେ ଶୃଙ୍ଗାରରେ ମାତିଲେ । ଶୃଙ୍ଗାର ଶେଷରେ ଦୁହେଁ ବିଶ୍ୱାବସୁ ପୁରକୁ ଗଲେ । ମାତ୍ର ବିଶ୍ୱାବସୁ, ଶୃଙ୍ଗାର ସମୟରେ କାମସେନାର ଉଦାସୀନତା ଓ ଚିତ୍ତ ନ ଚଳିବାର ଦେଖି ସନ୍ଦେହ କରି ତାର କାରଣ ପଚାରିଲେ । କାମସେନା ଅଭିଶାପ ଭୟରେ ସବୁ ସତକଥା କହିଦେଲା । ବିଶ୍ୱାବସୁ ରାଗିଯାଇ ବୃଦ୍ଧଶ୍ରବାକୁ ଅଭିଶାପ ଦେଲେ, "ତୁ ମର୍ତ୍ତ୍ୟରେ ଗଧ ଜନ୍ମପାଇ ଅସୁରର ଦ୍ୱାରପାଳ ହୋଇଥିବୁ, ଶ୍ରୀକୃଷ୍ଣ କାର୍ଯ୍ୟୋଦ୍ଧାର ପାଇଁ ତୋର ପାଦସ୍ପର୍ଶ କଲେ ତୁ ମୁକ୍ତି ପାଇଯିବୁ । ଏହି ସେହି ଗନ୍ଧର୍ବ ବୃଦ୍ଧଶ୍ରବା ।" ଏହା ଶୁଣି ଭୀମ ଅର୍ଜ୍ଜୁନ ବଡ଼ ଆନନ୍ଦିତ ହେଲେ ଏବଂ ଆଉ ବିଳମ୍ବ ନକରି ଜରାସନ୍ଧର ଯଜ୍ଞଶାଳା ଦ୍ୱାରଦେଶରେ ଉପସ୍ଥିତ ହେଲେ ।

## ଜରାସନ୍ଧ ବଧ ।

ଶ୍ରୀକୃଷ୍ଣ ଏକ ମୁଖରେ ଚତୁର୍ବେଦ ଗାୟନ କରି ଯଜ୍ଞଶାଳାରେ ଉପସ୍ଥିତ ଥିବା ବହୁ ସଂଖ୍ୟକ ମୁନି ଋଷିମାନଙ୍କୁ ଚମତ୍କୃତ କରିଦେଲେ । ତିନିଜଣଙ୍କ ଶରୀରର ଦିବ୍ୟତେଜ ଓ ବେଦ ଗାୟନଶୁଣି ସ୍ୱୟଂ ରାଜା ଜରାସନ୍ଧ ଆସ୍ଥାନରୁ ଉଠି ରତ୍ନଝାରିରେ ଜଳନେଇ ସେମାନଙ୍କର ପଦ ପ୍ରକ୍ଷାଳନ କଲେ ଓ ପାଦୋଦକ ଶିରରେ ଧେନିଲେ । ଲକ୍ଷେ ସୁବର୍ଣ୍ଣ ଆଣି ଭେଟି ଦେଲେ । ତା ପରେ କରଯୋଡ଼ି କହିଲେ, "ହେ ଦ୍ୱିଜଶ୍ରେଷ୍ଠ, ଆପଣମାନେ ମୋ ପୁରରେ ଆଜିକ ବିଶ୍ରାମ ନିଅନ୍ତୁ । ଆସନ୍ତା କାଲି ଆପଣମାନଙ୍କର ମନୋବାଞ୍ଛା ପୂର୍ଣ୍ଣକରି କାଳ କାଳକୁ ଆପଣମାନଙ୍କର ଦାରିଦ୍ର୍ୟ ଦୂର କରିଦେବି । ଧନ, ଜନ, ସୁବର୍ଣ୍ଣ ଭୂମି ଗୋଧନ ଯାହା ଯେତେ ପ୍ରାର୍ଥନା କରିବେ ସମସ୍ତ ପୂରଣ କରିବି ।"

ଏହା ଶୁଣି ଶ୍ରୀକୃଷ୍ଣ କହିଲେ, "ହେ ମହାରାଜ, ତୁମର ବଚନ ଧନ୍ୟ । ଏ ମର୍ତ୍ତ୍ୟମଣ୍ଡଳରେ ତୁମେ ମହାତ୍ମା ଓ ମହାଦାନୀ । ଆମେ ବହୁ ଦୂରରୁ ଆସିଛୁ । କଞ୍ଚିତ ଦାନରେ ଆମେ ସନ୍ତୁଷ୍ଟ ହୋଇ ନ ପାରୁ ।" ଏହା କହି ପୁନର୍ବାର ଗମ୍ଭୀର ସ୍ୱରରେ ବେଦଧ୍ୱନି କଲେ । ଏହା ଶୁଣି ଜରାସନ୍ଧ କହିଲେ, "ହେ ଦ୍ୱିଜ, ତୁମର ବେଦଧ୍ୱନି ଶୁଣି ମୋର ଶରୀର କମ୍ପି ଉଠୁଛି । ତେଣୁ ତାହା ବନ୍ଦ କର । ତୁମର ଅଭିଳାଷ ପୂର୍ଣ୍ଣ ହେଲାପରି ଧନ କଣ ମୋର ଭଣ୍ଡାରରେ ନାହିଁ । ମୁଁ ସତ୍ୟ କରୁଛି, କେବଳ ମୋର ଯଜ୍ଞ ବନ୍ଦ କରିବା ଛାଡ଼ି ତୁମେ ଯାହା ମାଗିବ ମୁଁ ନିଶ୍ଚୟ ତାହା ପ୍ରଦାନ କରିବି । ଏହା ଶୁଣି ଶ୍ରୀକୃଷ୍ଣ ଉପସ୍ଥିତ ସମସ୍ତ ମୁନିଋଷି, ଦଶଦିଗପାଳଙ୍କୁ ସାକ୍ଷୀକରି ଜରାସନ୍ଧ ହସ୍ତରେ ଥିବା ଶଙ୍ଖରୁ ତଳହସ୍ତରେ ଜଳଗ୍ରହଣ କଲେ । ତାଙ୍କ ହସ୍ତରେ ଜଳ ପଡ଼ିବା ସଙ୍ଗେ ସଙ୍ଗେ ସେ କହିଲେ, "ହେ ରାଜା ଆମେ କେବଳ ସଂଗ୍ରାମ ପ୍ରାର୍ଥନା କରୁଛୁ । ଆମର ଅନ୍ୟ କୌଣସି ପ୍ରୟୋଜନ ନାହିଁ ।"

ଏହା ଶୁଣି ଜରାସନ୍ଧ ଚମକି ପଡ଼ିଲା । ସେ ଏତେ ଆଶ୍ଚର୍ଯ୍ୟ ହେଲା ଯେ ତାର ଆଖି ଦୁଇଟା ଉପରକୁ ଉଠିଗଲା । ସେ ଭଲ ଭାବରେ ଲକ୍ଷ୍ୟ କଲା

ଯେ ବ୍ରାହ୍ମଣ ତିନିଜଣଙ୍କ ହାତରେ ଅସ୍ତ୍ର ଶସ୍ତ୍ର ଧାରଣ ସ୍ପଷ୍ଟ ଚିହ୍ନ ରହିଛି । ସେ ପ୍ରକାଶ୍ୟରେ କହିଲି, "ତୁମେମାନେ ବ୍ରାହ୍ମଣ ହୋଇ ନଥିବ ବୋଲି ଏବେ ମୋର ସନ୍ଦେହ ହେଉଛି । ତେବେ ତୁମେମାନେ ଯାହାହୁଅ, ଏହା ନିଶ୍ଚିତ ଯେ ତୁମେ ସବୁ ଅତି ନିର୍ବୋଧ । ତୁମେ ଦେବହୁଅ, ଦାନବହୁଅ ଜରାସନ୍ଧ ହାତରେ ତୁମର ମରଣ ନିଶ୍ଚିତ । ଆଜି ଛିୟାନବେ ସହସ୍ର ରାଜାଙ୍କ ସହିତ ତୁମେ ତିନିଜଣ ମଧ୍ୟ ଏହି ଯଜ୍ଞକୁଣ୍ଡରେ ଆହୂତି ହେବ । ଏବେ ମଧ୍ୟ ସମୟ ଅଛି । ତୁମର ମତ ପରିବର୍ତ୍ତନ କରି ଯଥେଷ୍ଟ ଦାନ ନେଇ ଏଠାରୁ ଚାଲିଯାଅ । ଅକାରଣ କାହିଁକି ମୃତ୍ୟୁ ବରଣ କରିବ ?" ତା'ପରେ ସେ ଉପସ୍ଥିତ ମୁନିଋଷିମାନଙ୍କୁ ଲକ୍ଷ୍ୟ କରି କହିଲି, "ହେ ମୁନି ଋଷିବୃନ୍ଦ, ଆପଣମାନେ ଶୁଣିଥାନ୍ତୁ । ମୋର କୌଣସି ଦୋଷ ନାହିଁ । ଏମାନେ ମରଣ ଭିକ୍ଷା କରୁଛନ୍ତି । ଯଦି ଏମାନେ ପ୍ରକୃତ ବ୍ରାହ୍ମଣ ହୋଇ-ଥାନ୍ତି ତେବେ ମୋତେ କଦାପି ବ୍ରହ୍ମହତ୍ୟା ଦୋଷ ଲାଗିବ ନାହିଁ ।" ଭୀମ କହିଲେ, "ହେ ରାଜା, ଯୁଦ୍ଧରେ ଗୋ, ବ୍ରାହ୍ମଣ ଶିରଚ୍ଛେଦ ହେଲେ ଦୋଷ ଲାଗେନାହିଁ । ଏହା କଣ ତୁମେ ଜାଣି ନାହଁ ? ତେଣୁ ଅଯଥା ଗୁଡ଼ାଏ ପ୍ରତିଜ୍ଞା ନକରି ଯୁଦ୍ଧପାଇଁ ସଜ ହୁଅ ।" ଶ୍ରୀକୃଷ୍ଣ ମଧ୍ୟ କହିଲେ, "ନିଜର ବଡ଼ିମା ପ୍ରକାଶ କରିବା ଆତ୍ମହତ୍ୟା ଦୋଷ ସଙ୍ଗେ ସମାନ । ତେଣୁ ହେ ରାଜା, ତୁମେ ଅଯଥା ବାକ୍ୟବ୍ୟୟ ନକରି ନିଜର ସତ୍ୟ ଅନୁସରଣରେ ଆମ ସହିତ ଯୁଦ୍ଧପାଇଁ ପ୍ରସ୍ତୁତ ହୁଅ ।" ମୁନିଋଷିମାନଙ୍କୁ ଲକ୍ଷ୍ୟକରି କହିଲେ, "ଆପଣମାନେ ଯଜ୍ଞକୁଣ୍ଡରେ ଆହୂତିଦେବା ବନ୍ଦ କରନ୍ତୁ ।" ମୁନିମାନେ ମହାଭୟପାଇ ଆହୂତି ଦେବା ବନ୍ଦ କରିଦେଲେ । ଜରାସନ୍ଧ ଗର୍ଜିଉଠି କହିଲି, "ହେ ମୁନିଗଣ, ମୋର ବିନାନୁମତିରେ ଆହୂତି ବନ୍ଦକଲ କାହିଁକି ? ଏହି ବ୍ରାହ୍ମଣଙ୍କର ମୃତ୍ୟୁ ଆସନ୍ନ । ମୁଁ ସଙ୍ଗେ ସଙ୍ଗେ ଏମାନଙ୍କୁ ଯୁଦ୍ଧରେ ବିନାଶ କରିବି ।" ମାତ୍ର ପୁରୋହିତମାନେ କହିଲେ ଯେ ଅତିଥି ଅତୃପ୍ତ ହୋଇ ବସି ରହିଥିଲେ ଯଜ୍ଞରେ ଧର୍ମପ୍ରାପ୍ତି ହୁଏନାହିଁ ।

ଏହା ଶୁଣି ଜରାସନ୍ଧ ମହାକ୍ରୋଧରେ ଶିରଘୂର୍ଣ୍ଣି ଉଠିଲା । ବିକଚ୍ଛ ବସନ ପିନ୍ଧି, ମୁଣ୍ଡବାଳକୁ ବାନ୍ଧି ଦେଇ ପଇତାକୁ ଅଣ୍ଟାରେ ଖୋସି ଆଗକୁ ଡେଇଁ ପଡ଼ିଲା ଏବଂ ଘଡଘଡ଼ି ଗର୍ଜ୍ଜନ ପରି ଏକ ସିଂହରଡ଼ି ଛାଡ଼ିଲା ।

ଉଦ୍ଦେଶ୍ୟ ହେଲ, ବ୍ରାହ୍ମଣମାନେ ଗୁନିଆହୋଇ ପଳାଇଯିବେ । ମାତ୍ର ତଥା କଥିତ ବ୍ରାହ୍ମଣମାନେ କି ଗୁନିଆ ହେବାର ଲୋକ ?

ଏହି ସମୟରେ ଶ୍ରୀକୃଷ୍ଣ ଦେବୀ ସରସ୍ୱତୀଙ୍କୁ ସ୍ମରଣ କଲେ । ଦେବୀ ସରସ୍ୱତୀ ଶୂନ୍ୟରେ ଉତ୍ପନ୍ନହୋଇ ସ୍ୱାମୀଙ୍କ ଡାକିବାର କାରଣ ପଚାରିବାରୁ ଶ୍ରୀକୃଷ୍ଣ କହିଲେ "ଦେବୀ, ତୁମେ ଜରାସନ୍ଧର କଣ୍ଠରେ ବସି ସେ ଯେପରି ଭୀମ ସହିତ ଲଢ଼ିବାକୁ କହେ ତାହା ତାକୁ କୁହାଇବ ।" ଏଣେ ଜରାସନ୍ଧ ତିନିଜଣଙ୍କୁ ତା ସହିତ ଲଢ଼ିବାକୁ ଡାକିଲାଣି । ଶ୍ରୀକୃଷ୍ଣ ସଙ୍ଗେ ସଙ୍ଗେ କହିଲେ, "ହେ ରାଜା, ଜଣଙ୍କ ସହିତ ତିନିଜଣ ଲଢ଼ିବା ଅନ୍ୟାୟ । ତେଣୁ ତୁମେ ଆମ ମଧ୍ୟରୁ ଯାହାକୁ ଇଚ୍ଛା ଜଣକୁ ବାଛିପାର ।" ଜରାସନ୍ଧ କଣ୍ଠରେ ତ ସରସ୍ୱତୀ ବିଜେ କରି ସାରିଲେଣି । ତେଣୁ ସେ ଶ୍ରୀକୃଷ୍ଣଙ୍କୁ ଲକ୍ଷ୍ୟକରି କହିଲା, "ତୁ ଅତି ବାଙ୍ଗରା, ତୁ କଅଣ ଲଢ଼ିବୁ ?" ଅର୍ଜୁନଙ୍କୁ ଚାହିଁ କହିଲା, " ଏ ବ୍ରାହ୍ମଣ ଅତି ଦୁର୍ବଳ, କ୍ଷୀଣକାୟ । ଏବା କଅଣ ଲଢ଼ିବ ? ଭୀମଙ୍କୁ ଅନାଇ କହିଲା, "ଏଇବେଶ୍ ମୋଟା ଧୂର୍ମଷା ଦେଖା ଯାଉଛି, ଜାବୁଡ଼-ଧରିଲେ କଛିଟା ଦେହକୁ ଲାଗିବ । ଶ୍ରୀକୃଷ୍ଣଙ୍କ ଆଦେଶରେ ଭୀମ ମାଲକଚ୍ଛ ମାରି, ଖାରଧୂଳି ମୁଣ୍ଡରେ ଲଗାଇ ବାହାସ୍ଫୋଟ ମାରି ଆଗକୁ ଡେଇଁ ପଡ଼ିଲେ ।

ଜରାସନ୍ଧ, ଆଖି ପିଛୁଳାକେ ଭୀମକୁ ତଳେପକାଇ ମାଡ଼ି ବସିଲା । ମାତ୍ର ଭୀମଙ୍କର ଲୁହାଭଳି ଶକ୍ତ ଶରୀରକୁ ନିଜଦେହରେ ଅନୁଭବ କରି ନିଶ୍ଚିତ ଭାବେ ଜାଣିଲା ଯେ ଏ କଦାପି ବ୍ରାହ୍ମଣ ନୁହେଁ । ଏ, ଏକ ସମକକ୍ଷ ଯୋଦ୍ଧା । ତେଣୁ ଏ ଯୁଦ୍ଧରେ ହେଳା କରିବାର ନୁହେଁ । ଜରାସନ୍ଧ ଏପରି ଭାବୁ ଭାବୁ ଭୀମ ତାକୁ ଲେଉଟାଇ ମାଡ଼ିବସିଲେ । ତା ପରେ ଚାଲିଲା, ମରାମରି, ଧରାଧରି, ଗଡ଼ାଗଡ଼ି । ଦୁହିଁଙ୍କ ଯୁଦ୍ଧରେ ଯଜ୍ଞଶାଳା ଭାଙ୍ଗି ଚୂର୍ଣ୍ଣ ହୋଇଗଲା । ମୁନିମାନେ ଯଜ୍ଞକୁଣ୍ଡକୁ ପାଉଁଶରେ ପୋତିପକାଇ ଦୂରକୁ ପଳାଇଗଲେ । ଦୁଇଟା ବିରାଟ ଷଣ୍ଢ ଲଢ଼ିଲା ପରି ଭୀମ ଜରାସନ୍ଧ ଲଢ଼ି ଲାଗିଛନ୍ତି । କେତେବେଳେ ଭୀମସେନ ଜରାସନ୍ଧକୁ ମାଡ଼ି ବସୁଛନ୍ତି ତ କେତେବେଳେ ଜରାସନ୍ଧ ଭୀମକୁ ମାଡ଼ିବସୁଛି । ଯୁଦ୍ଧ ଘଣ୍ଟା ଘଣ୍ଟା ଧରି ଚାଲିଲା । ମାତ୍ର କେହି କାହାକୁ ହଟାଇ ପାରୁନାହାନ୍ତି । ଶେଷରେ ଜରାସନ୍ଧ

ଭୀମକୁ ମାଡ଼ିବସି ତାଙ୍କ ମୁହଁରେ କେତୋଟା ବଜ୍ରମୁଠ ମାରିଲା । ଭୀମଙ୍କ ପାଟିରୁ ଦୁଇପଟୁ ରକ୍ତ ଝର ଝର ହୋଇ ବହିଗଲା । ଭୀମ ବଡ ହାଲିଆ ହେଲପରି ବୋଧହେଲା ।

ଶ୍ରୀକୃଷ୍ଣ ଏହା ଲକ୍ଷ୍ୟକରି ସଙ୍ଗେ ସଙ୍ଗେ ପାଞ୍ଚଜନ୍ୟ ଶଙ୍ଖରେ "ଶତଶୃଙ୍ଗ" "ଶତଶୃଙ୍ଗ" ବୋଲି ନାଦକଲେ । ଭୀମ ଏହା ଶୁଣିପାରି 'ଶତଶୃଙ୍ଗ' ପର୍ବତକୁ ସ୍ମରଣ କଲେ । ଭୀମତ ଜନ୍ମବେଳେ ଗୋଡ଼ଗୁଣ୍ଡି ଶତଶୃଙ୍ଗ ପର୍ବତର କିଛି ଅଂଶ ଭାଙ୍ଗି ଦେଇଥିବାରୁ ତାହାଠାରୁ ଶାପ ପାଇଥିଲେ ଯେ ପ୍ରଥମ ଯୁଦ୍ଧରେ ସେ ହାରିବେ । ମାତ୍ର 'ଶତଶୃଙ୍ଗ' ନାମ ଧରିଲେ ତାଙ୍କୁ ଆଉ ଜଣନ୍ତା ହୋଇ କେହି ରହିବେ ନାହିଁ । ଶ୍ରୀକୃଷ୍ଣଙ୍କର ଶଙ୍ଖଧ୍ୱନି ଶୁଣି ଭୀମଙ୍କର ତାହା ମନେ ପଡ଼ିଗଲା ଓ ସେ ସଙ୍ଗେ ସଙ୍ଗେ ଶତଶୃଙ୍ଗ ନାମ ସ୍ମରଣକଲେ ।

ଏହାପରେ ଯୁଦ୍ଧରଗତି ସମ୍ପୂର୍ଣ୍ଣ ବଦଳି ଗଲା । ଭୀମ ଜରାସନ୍ଧକୁ ଲେଉଟାଇ ମାଡ଼ିବସିଲେ ଓ ମୁଥପରେ ମୁଥ ପ୍ରହାରକରି ଗୁଞ୍ଜିଲେ । ତେବେଣେ ବନ୍ଦୀ ହୋଇଥିବା ରାଜାମାନେ ଏ ଖବରପାଇ ସମସ୍ତେ ଏକ ମନ ଏକ ଧ୍ୟାନରେ ମା' ମହାମାୟୀଙ୍କୁ ସ୍ତୁତି କଲେ । "ହେ ମା ଜଗଜ୍ଜନନୀ, ଦୁଷ୍ଟ ସଂହାରିଣୀ ଦେବୀ ଭଗବତୀ, ଭୀମଙ୍କ ହସ୍ତରେ ଜରାସନ୍ଧର ନିଧନ କରାଇ ଆମ୍ଭମାନଙ୍କୁ ପ୍ରାଣଦାନ କର ମାତା ।" ଦେବୀ ଦୁର୍ଗା ରାଜାମାନଙ୍କର ଆକୁଳ ସ୍ତୁତିରେ ସନ୍ତୁଷ୍ଟହୋଇ ଭୀମଙ୍କ ଶରୀରରେ ଆବିର୍ଭୂତା ହେଲେ ।

"ରାଜାଙ୍କୁ ବରଦେଇ ଭୀମକୁ କଲେ ଦୟା,
ମାରୁତି ଅଙ୍ଗେ ବିଜେ କଲେ ମହାମାୟା ।"

ଜରାସନ୍ଧ ଆଉ ତଳୁ ଉଠି ପାରିଲା ନାହିଁ । ମାତ୍ର ଭୀମ ମୁଥ ମାରି ମାରି ହାଲିଆ ହେଲେଣି । ଅଥଚ ଜରାସନ୍ଧ କ୍ଷୟ ଯାଉନାହିଁ । ଯେଉଁ ମୁଥରେ ପର୍ବତ ଗୁଣ୍ଡା ହୋଇଯାଏ ସେହି ବଜ୍ର ମୁଥ ସବୁ ବ୍ୟର୍ଥ ହେବାରେ ଭୀମସେନ ହତାଶ ହୋଇ ଗୃହଆଡ଼କୁ ଗୃହିଁଲେ । ଏତିକି-ବେଳେ ଶ୍ରୀକୃଷ୍ଣ ତାଙ୍କୁ ଦେଖାଇ ଗୋଟିଏ ଲୁଗା ଦୁଇଫାଳ କରି ଫିଙ୍ଗି-ଦେଲେ । ଏହାଦେଖି ଜରାସନ୍ଧର ମୃତ୍ୟୁଭେଦ ଭୀମଙ୍କର ହଠାତ୍ ସ୍ମରଣ

ହୋଇଗଲା । ସେ ସଙ୍ଗେ ସଙ୍ଗେ ଜରାସନ୍ଧର ଗୋଟିଏ ଜାନୁକୁ ନିଜ ଜାନୁରେ ମାଡ଼ିବସି ଆଉ ଜାନୁକୁ ହାତରେ ଟେକି ତାକୁ ଦୁଇଫାଳ କରି ଚିରିଦେଲେ । ଏତେବେଳକୁ ଯାଇ ଜରାସନ୍ଧ ପ୍ରାଣ ଗଲା । ଭୀମ ବିଶ୍ୱରୂପ ଧାରଣକରି ସେ ଦୁଇଫାଳକୁ ଦୁଇ ଦିଗକୁ ଫିଙ୍ଗିଦେଲେ । ତାହାଯାଇ ମହା ସମୁଦ୍ରରେ ପଡ଼ି କିଛି ସମୟପାଇଁ ସମୁଦ୍ର ଜଳ ଉଚ୍ଛୁଳି ଉଠିଲା ।

ଜରାସନ୍ଧ ମଲାପରେ ଶ୍ରୀକୃଷ୍ଣ ତାର ପୁଅ ସହଦେବକୁ ମଗଧର ରାଜାକଲେ । ଛୟାନବେ ସହସ୍ର ରାଜାଙ୍କୁ ବନ୍ଦୀଶାଳାରୁ ମୁକ୍ତ କଲେ । ନିଶ୍ଚିତ ମରଣ ମୁଖରୁ ରକ୍ଷାପାଇ ସେମାନଙ୍କୁ ଲାଗିଲା, ସତେ ଯେପରି ସେମାନେ ପୁନର୍ଜନ୍ମ ଲାଭକଲେ । ଶ୍ରୀକୃଷ୍ଣ ଭୀମ ଓ ଅର୍ଜ୍ଜୁନଙ୍କ ପ୍ରତି ଗଭୀର କୃତଜ୍ଞତା ଜଣାଇ, ଯୁଧିଷ୍ଠିରଙ୍କ ଯଜ୍ଞରେ ଯଥା ସମୟରେ ଉପସ୍ଥିତ ହେବାକୁ ପ୍ରତିଶ୍ରୁତି ଦେଇ ସେମାନେ ମହା ଆନନ୍ଦରେ ନିଜ ନିଜ ରାଜ୍ୟକୁ ଫେରିଗଲେ ।

## ଦୁର୍ଯ୍ୟୋଧନର କପଟ ।

ଶ୍ରୀକୃଷ୍ଣ, ଭୀମ ଅର୍ଜ୍ଜୁନ ମଗଧକୁ ଯିବା ପରେ ପରେ ଦୁର୍ଯ୍ୟୋଧନ, ଦୁଇଦଳ ଗୁପ୍ତଚରଙ୍କୁ ମଗଧକୁ ପଠାଇଥିଲା । ମଗଧରେ କଅଣ ଘଟିବ, ସେ ସମସ୍ତ ଆଖିରେ ଦେଖି ସେମାନେ ଦୁର୍ଯ୍ୟୋଧନ ଆଗରେ ଆସି କହିବାର କଥା । ସେଥି ମଧ୍ୟରୁ ଗୋଟିଏ ଦଳ ଫେରିଲେ ।

ଭୀମ ଓ ଜରାସନ୍ଧ ମଧ୍ୟରେ ଯୁଦ୍ଧର ଶେଷଆଡ଼କୁ ଜରାସନ୍ଧ ତ ଭୀମଙ୍କୁ ମାଡ଼ିବସି ମୁଥ ମାରି ମାରି ତାଙ୍କୁ ଲହୁଲୁହାଣ କରି ପକାଇଲା । ସେତିକ-ବେଳେ କୁଆଡ଼େ ପ୍ରଥମର ହୋଇଯେ ଜରାସନ୍ଧ ଭୀମକୁ ମାରିଦେଲା । ଗୁପ୍ତଚରମାନେ ଏହା ଶୁଣିଆସି ଦୁର୍ଯ୍ୟୋଧନକୁ କହିଲେ । ଦୁର୍ଯ୍ୟୋଧନର ଆନନ୍ଦ କହିଲେ ନସରେ । ସଙ୍ଗେ ସଙ୍ଗେ କର୍ଣ୍ଣ, ଶକୁନି ଆଦିଙ୍କୁ ଡକାଇ ଏ ଶୁଭ ଖବରଟା ଦେଇଦେଲା ।

ଶକୁନି ମନ୍ତ୍ରଣା ଦେଲେଯେ ଗୁପ୍ତଚରଙ୍କୁ କୁହାଯାଉ ସେ ଆସନ୍ତାକାଲି ରାଜସଭାରେ ସମସ୍ତେ ବସିଥିବା ବେଳେ ଯାଇ ସମ୍ବାଦ ଦେବ ଯେ ପ୍ରଥମ ଦିନ ଯୁଦ୍ଧରେ ଜରାସନ୍ଧ ଭୀମକୁ ମାରିଲା । ତା ପରଦିନ ଅର୍ଜ୍ଜୁନକୁ ଓ ତା ପରଦିନ ଶ୍ରୀକୃଷ୍ଣଙ୍କୁ ମାରିଲା । ତା'ର ତ ମାନସିକ ଥିଲାଯେ ଲକ୍ଷେ ରାଜାଙ୍କୁ ମାରି ଯଜ୍ଞରେ ଆହୁତି ଦେଲେ ସେ ସ୍ୱର୍ଗରେ ଇନ୍ଦ୍ର ହୋଇ ବସିବ । ସତାନବେ ସହସ୍ର ରାଜାଙ୍କୁ ମାରି ଆହୁତି ଦେଇ ସାରିଲାଣି । ଯଜ୍ଞ ଚାଲିଛି, ଜରାସନ୍ଧର ସେନାପତିମାନେ ଅବଶିଷ୍ଟ ରାଜାମାନଙ୍କୁ ଧରି-ଆଣିବାପାଇଁ ଚାରିଦିଗକୁ ଯାଇଛନ୍ତି । ଚର ମୁଖରୁ ଶ୍ରୀକୃଷ୍ଣ, ଭୀମ ଅର୍ଜ୍ଜୁନ ମରିବାର ଶୁଣିବାପରେ ଯୁଧିଷ୍ଠିର ଆଉ କଦାପି ବଞ୍ଚିବେ ନାହିଁ । ଭୀମତ ଆଗରୁ ମରିସାରିଛନ୍ତି । ଗାଣ୍ଡିବ ଅର୍ଜ୍ଜୁନର ବଳ ଭାଙ୍ଗି ଯିବ । ନାହିଁ ଯଦି ତେବେ ସେ ଜରାସନ୍ଧର ହାତରେ ମଲା, ତେବେ ତ ଖୁବ୍ ଭଲ ।

ଶକୁନିଙ୍କର ପରାମର୍ଶ ମତେ ତହିଁ ପରଦିନ ଗୁପ୍ତଚରମାନେ ରାଜ ସଭାରେ ପହଞ୍ଚି ଠିକ୍ ସେହିପରି କହିଲା । ଏହାଶୁଣି ଯୁଧିଷ୍ଠିର ସଙ୍ଗେ ସଙ୍ଗେ ମୂର୍ଚ୍ଛା ଗଲେ । ନକୁଳ ଅତ୍ୟନ୍ତ ବିକଳହୋଇ କାନ୍ଦିଲେ । ମାତ୍ର ସହଦେବ ତ ସର୍ବଜ୍ଞ । ସେ ଚୁପ୍ ହୋଇ ବସିଥାନ୍ତି । କେହି ନପଚାରିଲେ ସେ କିଛି କହିବେ ନାହିଁ ।

ତେଣେ ଦୁର୍ଯ୍ୟୋଧନ ମଧ୍ୟ ଛଳନାକରି ନିଜ ଆସ୍ଥାନରୁ ଟଳିପଡ଼ି ମୂର୍ଚ୍ଛାଗଲେ । କର୍ଣ୍ଣ ଦୁଃଶାସନ ମଧ୍ୟ ସେହିପରି ଧରାଧରି ହୋଇ ଭୀମର ମୃତ୍ୟୁ ସୁମରି କାନ୍ଦିବାକୁ ଲାଗିଲେ । "ଆହାରେ ଭାଇ ଭୀମସେନ, ପାଣ୍ଡବାମାନଙ୍କୁ ମାରି ଆମକୁ ରଖିଲୁ । ଏବେ ଆଉ ବିପତ୍ତି ପଡ଼ିଲେ କିଏ ରଖିବ ? ଆମେ ଆଉ କାହା ମୁଖ ଚାହିଁ ବଞ୍ଚିବୁ ।" ଦୁର୍ଯ୍ୟୋଧନ ଚେତାପାଇ କାନ୍ଦିଲା । "ଆହା ମୋ ଭାଇରେ ଅର୍ଜ୍ଜୁନ, ଏକା ଜଣେ ହୋଇ ସପତଙ୍ଘପା ମେଦିନୀ ସାଧିଲୁ । ତ୍ରୈଲୋକ ସୁନ୍ଦରୀ ନାଁ ଟି ତୋର । ତୋହପରି ଭାଇକୁ ହରାଇ ଏ ନିର୍ଲଜ୍ଜ ଜୀବନ କାହିଁକି ରହିଛିରେ ? ଗଭୀର ସମୁଦ୍ରରେ ତ ମୋ ଭେଳା ବୁଡ଼ାଇଲୁ । ଏକା କାହ୍ନୁଆ ଗଉଡ଼ ତ ଆମକୁ ଏତେସବୁ କଲା । ଯୁଧିଷ୍ଠିର ସରଳିଆ ଲୋକ । ତା କପଟ ବୁଝି ପାରିଲେ ନାହିଁ । ଯେଉଁ ଦିନୁ ଅର୍ଜ୍ଜୁନ ତା ଭଉଣୀକୁ ବଳାତ୍କାରରେ

ହରଣ କଲ୍, ସେହିବଦନ୍ତୁ ତା ଉପରେ ତା'ର ରାଗ ଥିଲ୍ । ଆପେ ନମାର ଏବେ ପରହାତରେ ମରାଇଲ୍ । ଭୀମା ହୁଣ୍ଡାଡା ଉପରେ ମଧ୍ଯ ତାର ଅକଣ ଥିଲ୍ । ତାକୁ ମରାଇଲ୍ । କୋ଼ି ସିଂହର ପରାକ୍ରମୀ ବଳରାମ ଯେଉଁ ଜରାସନ୍ଧଙ୍କୁ ବଳରେ ପାରୁନଥିଲେ, ପୁଣି ନଜେ କାହ୍ନୁ ଆ ମଧ୍ଯ ଯେଉଁ ଜରାସନ୍ଧଙ୍କୁ ଡର ପଳାଇ ଯାଇ ସମୁଦ୍ର ଭିତରେ ଲୁଚିଲ୍, ତାକୁ ଭୀମ କପରି ପାରନ୍ତା ?"

ଶକୁନି ବଳ ଚଡ଼ି କହିଲ୍, "ତୁମେମାନେ କଛି ଜାଣନାହିଁ । ଯେଉଁ-ଧନ୍ତୁ ଶତଧନୁ ପାଇଁ ଯୁଦ୍ଧକରି ଅର୍ଜୁନ କୃଷ୍ଣଙ୍କୁ ହରାଇଦେଲ ସେହିବଦନ୍ତୁ କୃଷ୍ଣର ତା ଉପରେ ରାଗ ଥିଲ୍ । ଏବେ କୂଟକରି ତାକୁ ଜରାସନ୍ଧ ହାତରେ ମରାଇଲ । ଆଉ କୃଷ୍ଣଙ୍କୁ ଦେଖି ଜରାସନ୍ଧ କ ଛାଡ଼ନ୍ତା ? ପୁରୁଣା ଶତ୍ରୁ ସେ ତାର । ଶେଷରେ ତାକୁ ମଧ୍ଯ ଖତମ କରିଦେଲ୍ ।

ସଭାରେ ଭୀଷ୍ମ, ଦ୍ରୋଣ, ଭୂରିଶ୍ରବା, କୃପାଚାର୍ଯ୍ୟ ପ୍ରଭୃତି ବୟସ୍କ ବ୍ୟକ୍ତିମାନେ ମଧ୍ଯ ଥିଲେ । ଏ ଖବର ଶୁଣି ସେମାନେ ଅତ୍ୟନ୍ତ ଆଶ୍ଚର୍ଯ୍ୟ ହୋଇ ମୂକ ପ ଲଟି ଯାଇଥିଲେ । ସେମାନଙ୍କ ପାଟିରୁ କଥା ବାହାରୁ ନଥିଲ୍ । ଯେତେବେଳେ ଦୁର୍ଯୋଧନ କହିଲ୍ ଯେ ଭୀମ ଓ ଅର୍ଜୁନର ଶୁଦ୍ଧି-କ୍ରିୟା ଯୋଗାଡ଼ କରିବାକୁ ହେବ, ସେତେବେଳେ ଭୀଷ୍ମ ବାଧ୍ଯହୋଇ ମୁଖ ଖୋଲଲେ ଓ କହିଲେ, "ପରବର୍ତ୍ତୀ ସମ୍ବାଦକୁ ଆମକୁ ଅପେକ୍ଷା କରିବାକୁ ହେବ । ବିଶ୍ବସ୍ତଦଳ ଗୁପ୍ତରେ ଫେରିଆସନ୍ତୁ । ତାଙ୍କଠାରୁ ଶୁଣିଲ୍ପରେ ଯାହା କର୍ତ୍ତବ୍ୟ ତାହା କରାଯିବ ।"

ନକୁଳ, ସହଦେବ, ଯୁଧିଷ୍ଠିରଙ୍କୁ ବହୁ କଷ୍ଟରେ ସାନ୍ତ୍ୱନା କରାଇ ଘରକୁ ନେଇଗଲେ । ସେଠାରେ ଯୁଧିଷ୍ଠିର ଚେତାପାଇ ପୁଣି ବଡ଼ ବ୍ୟାକୁଳ ହୋଇ କାନ୍ଦିଲେ । ମାତ୍ର ସହଦେବ ଆଉ ସମ୍ଭାଳି ନପାରି ତାଙ୍କ ମୁଖକୁ ଗୃହିଁ ଠୋ ଠୋ ହୋଇ ହସିଉଠିଲେ । ଏହାଦେଖି ଯୁଧିଷ୍ଠିର ଅନ୍ୟମାନେ ଅତ୍ୟନ୍ତ ଆଶ୍ଚର୍ଯ୍ୟ ହୋଇ ଏତେ ଦୁଃଖରେ ଏପରି ହସିବାର କାରଣ ପଚାରିଲେ । ସହଦେବଙ୍କୁ ସୁଯୋଗ ମିଳିଗଲ୍ । ଶ୍ରୀକୃଷ୍ଣ, ଭୀମ, ଅର୍ଜୁନ, ବ୍ରାହ୍ମଣ ବେଶ ଧରିବାଠାରୁ ଜରାସନ୍ଧଙ୍କୁ ମାରି, ରାଜାମାନଙ୍କୁ ମୁକ୍ତଦେଇ,

ଜରାସନ୍ଧ ପୁଅକୁ ରାଜା କରିବା ପର୍ଯ୍ୟନ୍ତ ସମସ୍ତ ଘଟଣା ପରିଷ୍କାର ଭାବରେ ବର୍ଣ୍ଣନା କରିଗଲେ ଏବଂ କହିଲେ ଯେ ବୃନ୍ଦାବନ ମଧ୍ୟରେ ଶ୍ରୀକୃଷ୍ଣ, ଭୀମ, ଅର୍ଜ୍ଜୁନ ନିଶ୍ଚୟ ଏଠାରେ ଆସି ପହଞ୍ଚିବେ । ଏହା ଶୁଣି ଯୁଧିଷ୍ଠିରଙ୍କ ମୁଖରେ ହସ ଫୁଟି ଉଠିଲା । ସେ ସହଦେବଙ୍କୁ ଶ୍ରେଷ୍ଠ ପିଲାଟିଏ ପରି ଆନନ୍ଦରେ କୋଳ କରିପକାଇଲେ । ଆଉ କହିଲେ, "ବାବୁରେ ଏଇ କଥା ଯଦି ମୁଁ ତୋତେ ଆଗରୁ ପଚାରି ଦେଇଥାନ୍ତି ତେବେ ଆଉ ଏତେ କାନ୍ଦି ନଥାନ୍ତି । ସେ କଥା ଶୁଣୁ ଶୁଣୁ ମୋର ଜ୍ଞାନ, ବୁଦ୍ଧି ବୃତ୍ତିତ ସବୁ ଲୋପ ହୋଇଗଲା ।"

ଜରାସନ୍ଧର ପୁତ୍ର ସହଦେବ ଅମାପ ଧନରତ୍ନ ସହିତ ଶ୍ରୀକୃଷ୍ଣ ଭୀମ ଅର୍ଜ୍ଜୁନଙ୍କୁ ରଥରେ ବସାଇ ଆଣି ବାରୁଣାବନ୍ତରେ ଛାଡ଼ିଦେଇଗଲା । ସେମାନେ ପହଞ୍ଚି ଆଗ ଯୁଧିଷ୍ଠିରଙ୍କର ପଦ ବନ୍ଦନା କଲେ । ସେମାନଙ୍କୁ ଦେଖି ଯଧିଷ୍ଠିରଙ୍କର ଆଖିରୁ ଆନନ୍ଦାଶ୍ରୁ ଝରିପଡ଼ିଲା । ଦୁର୍ଯ୍ୟୋଧନ ଆଦି କୌରବମାନେ ଲଜ୍ଜାରେ କେତେଦିନ ଘରୁ ବାହାରିଲେ ନାହିଁ । ଦୁର୍ଯ୍ୟୋଧନର ଗୁପ୍ତରେ ଦେଇଥିବା ମିଥ୍ୟା ସମ୍ବାଦ କଥା ଆଦୌ ପ୍ରକାଶ ନକରିବାକୁ ଯୁଧିଷ୍ଠିର, ନକୁଳ ଓ ସହଦେବଙ୍କୁ ତାଗିଦ୍ କରିଦେଇଥିଲେ । ତାହା ଶୁଣିଲେ ଶ୍ରୀକୃଷ୍ଣ ଅର୍ଜ୍ଜୁନ ହୁଏତ ସେଥିପ୍ରତି ଗୁରୁତ୍ୱ ଦେଇନଥାନ୍ତେ । ମାତ୍ର ଭୀମ ଯଦି ଜାଣନ୍ତା ଯେ ତା ଶୁଦ୍ଧି କ୍ରିୟା କରିବାକୁ ଦୁର୍ଯ୍ୟୋଧନାଦି ବ୍ୟବସ୍ଥା କରୁଥିଲେ, ତେବେ ସେ ସଙ୍ଗେ ସଙ୍ଗେ ଯାଇ ସେମାନଙ୍କର ବେକ ମୋଡ଼ିଦେବା ଆରମ୍ଭ କରି ଦେଇଥାନ୍ତା ।

## ଜରାସନ୍ଧର ଜନ୍ମ ବୃତ୍ତାନ୍ତ

ବ୍ୟାସଦେବ, କୌରବ ଓ ପାଣ୍ଡବମାନଙ୍କୁ ସନ୍ତୋଳିବାକୁ ଆସିଥିଲେ । ଧୃତରାଷ୍ଟ୍ର ତାଙ୍କୁ ପଚାରିଲେ ଯେ ଜରାସନ୍ଧ, ଶ୍ରୀକୃଷ୍ଣ ଅର୍ଜ୍ଜୁନଙ୍କ ହାତରେ ନମରି ଭୀମ ହାତରେ ଦୁଇଫାଳ ହୋଇ ମରିବାରୁ କାହିଁକି ମଲା ? ବ୍ୟାସଦେବ, ଜରାସନ୍ଧର ଜନ୍ମବୃତ୍ତାନ୍ତ କହିଲେ ।

ମଗଧର ରାଜା ନନ୍ଦଗୋପାଳ ନିଃସନ୍ତାନ ଥିବାରୁ ପୁତ୍ରକାମନା କରି ତପସ୍ୟା ଦ୍ୱାରା ଦୁର୍ବାସା ଋଷିଙ୍କୁ ସନ୍ତୁଷ୍ଟ କଲେ । ଦୁର୍ବାସା ତାଙ୍କୁ ହର ଉଦ୍ୟାନର ଏକ ପାଚିଲା ଆମ୍ବ ଦେଇ କହିଲେ ଯେ ଏହା ତାଙ୍କର ପ୍ରିୟବତୀ ରାଣୀଙ୍କୁ ଖାଇବାକୁ ଦେଲେ ମହା ବଳବାନ୍ ପୁତ୍ର ଲାଭ ହେବ । ନନ୍ଦଗୋପାଳ ସେହି ଆମ୍ବଟି ଆଣି ତାଙ୍କର ପାଟରାଣୀ ସୁମତୀଙ୍କୁ ଖାଇବାକୁ ଦେଲେ । ସୁମତୀ ଓ ରାଜାଙ୍କର ଅନ୍ୟ ରାଣୀ ଗୁରୁମତୀ ଦୁହେଁ ଦୁଇ ଭଉଣୀ ପରି ଚଳୁଥାନ୍ତି । ତେଣୁ ସୁମତୀ ସେହି ଆମ୍ବଟିକୁ ଦୁଇଫାଳ କରି ଫାଳେ ନିଜେ ଖାଇଲେ ଓ ଅନ୍ୟ ଫାଳଟି ଗୁରୁମତୀକୁ ଦେଲେ । ଦୁହେଁ ଗର୍ଭବତୀ ହୋଇ ଗୋଟିଏ ପୁଅକୁ ଦୁଇଫାଳ କରି ଜନ୍ମଦେଲେ । ରାଜା ଏହା ଦେଖି ବହୁତ ଦୁଃଖିତ ହୋଇ କର୍ମକୁ ଧିକ୍କାର କଲେ ଓ ସେହି ଦୁଇଫାଳ ପିଲାକୁ ନେଇ ଶ୍ମଶାନ ଭୂଇଁରେ ପକାଇ ଆସିବାକୁ ଆଦେଶ ଦେଲେ । ଭୃତ୍ୟମାନେ ସଙ୍ଗେ ସଙ୍ଗେ ରାଜାଙ୍କ ଆଦେଶ ପାଳନ କଲେ ।

ରାତି ଅଧରେ ଜାରଙ୍ଗା ନାମକ ଏକ ରାକ୍ଷସୀ ଆସି ସେ ଦୁଇଫାଳ ପିଲାକୁ ଗିଳିଦେଲା । ସେ ପିଲାଟି ଦୁର୍ବାସା ଋଷିଙ୍କ ବରରେ ଜାତ ହୋଇଥିଲା । ତେଣୁ ସେ ନମରି ରାକ୍ଷସୀର ପେଟ ଭିତରେ ଯୋଡ଼ି ହୋଇଗଲା ଓ ସଙ୍ଗେ ସଙ୍ଗେ ଜୀବଦାନ ପାଇଲା । ଜୀବଦାନ ପାଇବାପରେ ଆଉ କି ସେ ରାକ୍ଷସୀ ପେଟଭିତରେ ସମ୍ଭାଳି ହୋଇ ରହେ ? ଗୋଡ ବାଡ଼େଇ କାନ୍ଦିବାରୁ ରାକ୍ଷସୀର ପେଟ ଫାଟିଗଲା ଓ ସେ ମଲା । ପିଲା, ଶ୍ମଶାନ ଭୂଇଁରେ ଗଡ଼ିକରି କାନ୍ଦିବାରୁ ଚରମାନେ ଯାଇ ରାଜାଙ୍କୁ କହିଲେ । ରାଜା, ମହାଆନନ୍ଦରେ ଆସି ପୁଅକୁ ନେଇଯାଇ ଅନ୍ତଃପୁରରେ ଲାଳନ ପାଳନ କଲେ । କେବଳ ଶ୍ମଶାନବାସୀ ଠାକୁର ମହାଦେବ ଜରାସନ୍ଧର ଜନ୍ମକାଳର କଥା ଜାଣିଥିଲେ । ତେଣୁ ସେ ଭୀମକୁ ତାର ମୃତ୍ୟୁଭେଦ କହିଥିଲେ । ତାର ଏହି ମୃତ୍ୟୁଭେଦ ଜଣାନଥିବା ହେତୁ ଜରାସନ୍ଧକୁ ଯୁଦ୍ଧରେ କେହି ଜୟ କରିପାରୁନଥିଲେ । ଶ୍ରୀକୃଷ୍ଣ ଅର୍ଜୁନଙ୍କ ଅପେକ୍ଷା ଶସ୍ତ୍ରହୀନ ଯୁଦ୍ଧ ଭୀମ ପକ୍ଷରେ ଅଧିକ ସୁବିଧାଜନକ ବୋଲି ଶ୍ରୀକୃଷ୍ଣ, ଜରାସନ୍ଧ ସଙ୍ଗେ ଲଢିବାକୁ ଭୀମକୁହିଁ ବାଛିଥିଲେ ।

## ଯଜ୍ଞ ପାଇଁ ଶ୍ରୀକୃଷ୍ଣଙ୍କର ପ୍ରସ୍ତୁତି ।

ଶ୍ରୀକୃଷ୍ଣ, ଗରୁଡ଼ ପୃଷ୍ଠରେ ବସି କରି ଯଜ୍ଞର ଆୟୋଜନ ପାଇଁ ବାହାରିଲେ । ପ୍ରଥମେ .ସେ ଗଲେ କଳିଙ୍ଗ ରାଜା ଅଜପତିର ନିକଟକୁ । ଯଜ୍ଞ ପାଇଁ ଖାଦ୍ୟ ଦ୍ରବ୍ୟ, ଫଳମୂଳ ଗୁଡ଼ା ହେବାପାଇଁ ଆଠଲକ୍ଷ ନାବ ଦେବା ପାଇଁ ତାଙ୍କୁ ବରାଦ କଲେ । ଏହା ଛଡ଼ା ସେ ଯଜ୍ଞଶାଳା ନିର୍ମାଣ ପାଇଁ ଦଶଲକ୍ଷ୍ୟ ବରଚନିଆ ଦେବ ଓ ଗଣ୍ଡା, ହରିଣ, ମୃଗ ମାଂସ ଯାହା ଆବଶ୍ୟକ ହେବ ତାହା ଯୋଗାଇବ । ମଲ୍ହାର ଦେଶକୁ ଯାଇ ସେଠାର ରାଜାଙ୍କୁ ଯଜ୍ଞ ପାଇଁ ଆବଶ୍ୟକ ଚନ୍ଦନ କାଠ ଯୋଗାଇ ଦେବାକୁ ଆଦେଶ ଦେଲେ । ମନୋହର ଦେଶର ରାଜା ହିଯୁବଳେଶ୍ୱରଙ୍କୁ ଆଜ୍ଞା ହେଲା, ସେ ସମସ୍ତ ଖାଦ୍ୟ ଶସ୍ୟ ଯୋଗାଇବେ । ନିଷାଦ ରାଜା କୈବ୍ରତଙ୍କୁ ଆଜ୍ଞା ହେଲା, ସେ ତାର ମଧୁବନ ତୋଟାରୁ ସମସ୍ତ ପ୍ରକାର ସୁମିଷ୍ଟ ଫଳ ଯଜ୍ଞକୁ ଆସୁଥିବା ମୁନି ଋଷିମାନଙ୍କ ପାଇଁ ଯୋଗାଇବେ । କୁବେରପୁରକୁ ଯାଇ ଯଜ୍ଞ ନିମିତ୍ତ ସମସ୍ତ ଧନ ରତ୍ନ, ଅଳଙ୍କାର, କାଠ, ବସ୍ତ୍ର ଭୂଷଣ ଆଦି ଯୋଗାଇ ଦେବାକୁ କୁବେରଙ୍କୁ କହି ଆସିଲେ । ତା ପରେ ବିଶ୍ୱକର୍ମାଙ୍କୁ ଡ଼ାକି ଦ୍ୱାଦଶ ଯୋଜନ ବ୍ୟାପି ଏକ ଚମତ୍କାର ଯଜ୍ଞଶାଳା ନିର୍ମାଣ କରିବା ପାଇଁ ଆଦେଶ ଦେଲେ । ନିଜେ ଶ୍ରୀକୃଷ୍ଣ ଯଜ୍ଞଶାଳାର ନକ୍ସା କାଟି ବିଶ୍ୱକର୍ମାଙ୍କୁ ବୁଝାଇ ଦେଲେ । ଲକ୍ଷେ ସୁବର୍ଣ୍ଣ ସ୍ତମ୍ଭ ଉପରେ ହୀରା, ନୀଳା, ମୋତି ମାଣିକ୍ୟ ଖଚିତ ଛାତ ପ୍ରସ୍ତୁତ ହେବ । ପ୍ରତ୍ୟେକ ରାଜା ପାଇଁ ସ୍ୱତନ୍ତ୍ର ଖଞ୍ଜା ପ୍ରସ୍ତୁତ ହେବ । ସେ ଖଞ୍ଜାର ଖମ୍ବରେ ସେ ରାଜାଙ୍କର ଚିହ୍ନ ଅଙ୍କା ହେବ । ଦେଖଣାହାରି ଯେପରି କ୍ଷୁଧା ପିପାସା ପାଶୋରି ତାଙ୍କୁ ଦେଖିବେ ।

ତାପରେ ଶ୍ରୀକୃଷ୍ଣ ଗଲେ ବରୁଣପୁରକୁ । ସେ ତ ରତ୍ନାକର । ଶ୍ରୀକୃଷ୍ଣଙ୍କର ଅନୁରୋଧରେ ସେ ରାଜାମାନଙ୍କ ପାଇଁ ସମସ୍ତ ରତ୍ନ ଆଭରଣ ଓ ଯେତେ ସୁବର୍ଣ୍ଣ ପଲମ ଆବଶ୍ୟକ ହେବ ତାହା ଯୋଗାଇ ଦେବାପାଇଁ ଆନନ୍ଦରେ ରାଜିହେଲେ । ତାପରେ ଶ୍ରୀକୃଷ୍ଣ ଘୃତ ସମୁଦ୍ରରେ ପହଞ୍ଚି ସେଠାର ରାଜା ଅମୃତାକ୍ଷଙ୍କୁ ଯଜ୍ଞ ପାଇଁ ଆବଶ୍ୟକ ଯେତେ ଘୃତ ତାହା ଯୋଗାଇ ଦେବାକୁ ନିର୍ଦ୍ଦେଶ ଦେଲେ । ଏହାପରେ ଶ୍ରୀକୃଷ୍ଣ ଅସୁର-

ମାନଙ୍କର କାରିଗର ମୟଦାନବଙ୍କୁ ଡକାଇ ନିର୍ଦ୍ଦେଶ ଦେଲେ ଯେ ସେ ବିଶ୍ୱକର୍ମାଙ୍କ ସହିତ ମିଶି ଯଜ୍ଞଶାଳା ନିର୍ମାଣ କରିବେ ; ସେ ଯାହା କରିବେ ସେଗୁଡ଼ିକ ମାୟାରେ ନିର୍ମିତ ହେବ । ଅର୍ଥାତ୍ ମଣିମାଣିକ୍ୟ ଖଚିତ ସୁବର୍ଣ୍ଣ ସ୍ତମ୍ଭ, ବିଭିନ୍ନ ଚିତ୍ରପଟ, ଅଷ୍ଟରତ୍ନର ସ୍ତୂପ, ତହିଁରେ ନାନା ରତ୍ନଖଚିତ ଚନ୍ଦ୍ରାତପ ଆଦି ଅକ୍ଷିକୁ ଦୃଶ୍ୟହୋଇ ଝଲସାଇ ଦେଉଥିବ । ମାତ୍ର ଶରୀରକୁ ସ୍ପର୍ଶ ହେଉନଥିବ । ମୟଦାନବ ଶ୍ରୀକୃଷ୍ଣଙ୍କ ଆଦେଶ ଅକ୍ଷରେ ଅକ୍ଷରେ ପାଳନ କରିବାକୁ ପ୍ରତିଶ୍ରୁତି ଦେଲେ ।

ଯଜ୍ଞର ଏ ସମସ୍ତ ଯୋଗାଡ଼ ସାରି ଶ୍ରୀକୃଷ୍ଣ ଦ୍ୱାରକାରେ ପହଞ୍ଚି ବଳରାମଙ୍କର ପାଦପୂଜା କରି ତାଙ୍କୁ ସମସ୍ତ ବିଷୟ ଜଣାଇଲେ । ଜରାସନ୍ଧ ମରିବାର ଶୁଣି ବଳରାମ ଅତ୍ୟନ୍ତ ଆନନ୍ଦିତ ହେଲେ । ଭୀମଙ୍କୁ ତ ସେ ବିଶେଷ ଭଲ ପାଉଥାନ୍ତି ନାହିଁ । ମାତ୍ର ଭୀମ ଜରାସନ୍ଧକୁ ମାରିବାର ଶୁଣି ସେ ଖୁସି ହୋଇ କହିଲେ, "କାହ୍ନୁରେ, ଭୀମକୁ ଥରେ ସାଙ୍ଗରେ ଆଣିଲୁନି, କେତେଦିନରୁ ମନରେ କୁଳୁବୁଳୁ କରି ଯାଉଥାନ୍ତା ।" ଶ୍ରୀକୃଷ୍ଣ କହିଲେ, "ଆମେ ସମସ୍ତେ ତ ନିକଟରେ ଯଜ୍ଞ ପାଇଁ ସେଠାକୁ ଯିବା । ତେଣୁ ତାକୁ ଆଉ ସଙ୍ଗରେ ଆଣିଲିନାହିଁ ।" ତାପରେ ଶ୍ରୀକୃଷ୍ଣ, ଦ୍ୱାରକାର ଭଣ୍ଡାର ରକ୍ଷକଙ୍କୁ ଡାକି ଆଦେଶ ଦେଲେ ଯେ ରାଜସୂୟ ଯଜ୍ଞ ନିମିତ୍ତ ଯଥେଷ୍ଟ ଧନ, ରତ୍ନ ଅଳଙ୍କାର ବସ୍ତ୍ର ଓ ଅନ୍ୟାନ୍ୟ ଆବଶ୍ୟକ ଦ୍ରବ୍ୟ ବାରଣାବନ୍ତକୁ ତିନିଦିନ ମଧ୍ୟରେ ପଠାଇବେ । ଏହାକହି ଶ୍ରୀକୃଷ୍ଣ ପୁନର୍ବାର ବାରଣାବନ୍ତ ଫେରିଗଲେ ।

## ରାଜାମାନଙ୍କୁ ନିମନ୍ତ୍ରଣ

ଶ୍ରୀକୃଷ୍ଣଙ୍କର ପରାମର୍ଶରେ ଉତ୍ତର ଦିଗକୁ ଅର୍ଜ୍ଜୁନ, ଦକ୍ଷିଣ ଦିଗକୁ ନକୁଳ, ପୂର୍ବକୁ ସହଦେବ ଓ ପଶ୍ଚିମକୁ ଭୀମ ସୈନ୍ୟ ସହିତ ଯାଇ ରାଜାମାନଙ୍କୁ ନିମନ୍ତ୍ରଣ କରିବାର କଥା ହେଲା । ମାତ୍ର ଯୁଧିଷ୍ଠିର କହିଲେ, "ନକୁଳ, ସହଦେବ ମୋର ପିଲାଭାଇ, ଏମାନଙ୍କୁ ମୁଁ ଦୁଷ୍ଟ ରାଜାଙ୍କ ସଙ୍ଗେ ଯୁଦ୍ଧ କରିବାକୁ କିପରି ପଠାଇବି ?" ଶ୍ରୀକୃଷ୍ଣ ବୁଝାଇଦେଲେ ଯେ ପୂର୍ବ ଦକ୍ଷିଣର ରାଜାମାନେ ଧର୍ମବନ୍ତ । ସେମାନେ ଯୁଦ୍ଧ ନକରି ନିମନ୍ତ୍ରଣ ଗ୍ରହଣ

କରିପିବେ । ଯେତକ ଦୁଷ୍ଟରାଜା ସବୁ ପଶ୍ଚିମରେ ଆଉ ଉତ୍ତରରେ । ସେମାନଙ୍କୁ ଭୀମ ଅର୍ଜୁନ ବେଶ୍ ସାଧି ପାରିବେ । ଗୃହଭାଇମାନେ ଗୃହ ଦ୍ୱାରକୁ ଶୁଭ ଅନୁକୂଳ କରି ବାହାରି ଗଲେ । ସମସ୍ତଙ୍କୁ ଶ୍ରୀକୃଷ୍ଣଙ୍କର କଡ଼ା ନିର୍ଦ୍ଦେଶ ଥିଲା ଯେ କୌଣସି ରାଜା ବଶ୍ୟତା ସ୍ୱୀକାର ନକଲେ ତାଙ୍କୁ ଯୁଦ୍ଧକରି ପରାସ୍ତ କରିବ ମାତ୍ର କଦାପି ହତ୍ୟା କରିବ ନାହିଁ । ଆଉ ନବେଦ୍ଧନ ମଧ୍ୟରେ କିଶ୍ଚୟ ଫେରିଆସିବ । ନଚେତ୍ ସୁଦର୍ଶନ ଚକ୍ର ଯାଇ ମସ୍ତକ ଛେଦନ କରିବ ।

ଭୀମ ତ ପଶ୍ଚିମ ଦ୍ୱାରକୁ ଗଲେ । ଅଧିକାଂଶ ଦୁଷ୍ଟରାଜା ଭୀମଙ୍କ ନାମ ଶୁଣି ଭୟରେ ବଶ୍ୟତା ସ୍ୱୀକାର କରିଗଲେ । ଯେଉଁମାନେ ତାହା ନକଲେ ଭୀମ ତାଙ୍କୁ ଯୁଦ୍ଧଦ୍ୱାରା ଆପ୍ୟତ କରି ନିମନ୍ତ୍ରଣ ପତ୍ର ଦେଇ ଚାଲିଲେ । କୁଣ୍ଡୀ ନଗରର ରାଜା ଭୀଷ୍ମକ । ସେ ଦେବୀ ରୁକ୍ମିଣୀଙ୍କ ପିତା, ଶ୍ରୀକୃଷ୍ଣଙ୍କର ଶ୍ୱଶୁର । ତାଙ୍କର ପୁଅ ରୁକ୍ମଣ ଭାରି ଦୁଷ୍ଟ । ସେ ରୁକ୍ମିଣୀଙ୍କୁ ଶିଶୁପାଳ ସଙ୍ଗେ ବିବାହ ଦେବାକୁ ଜିଦ୍ ଧରିଥିଲେ । ଶ୍ରୀକୃଷ୍ଣ ତାଙ୍କୁ ପ୍ରାଣରେ ନମାରି ଛାଡ଼ି ଦେଇଥିଲେ । ପରେ ସେ ରୁଦ୍ରଦେବତାଙ୍କୁ ପୂଜାରେ ସନ୍ତୁଷ୍ଟକରି ବର ପାଇ ଖୁବ୍ ବଳୀୟାର ହୋଇଥିଲା । ଭୀମସେନ ତାଙ୍କ ରାଜ୍ୟରେ ପଶିବାରୁ ରୁକ୍ମଣ ତାଙ୍କୁ ମହାଗର୍ବରେ ଓଗାଳିଲା । ଦୁହିଁଙ୍କ ମଧ୍ୟରେ ଭୀଷଣ ଯୁଦ୍ଧ ହେଲା । ଶେଷରେ ଭୀମ ବାମ ହାତରେ ରୁକ୍ମଣର ଚୁଟି ଓ ଡାହାଣ ହାତରେ ଖଣ୍ଡାଧରି ତାର ମସ୍ତକ ଛେଦିବାକୁ ଗଲା-ବେଳକୁ ଭୀମଙ୍କର ସାରଥି ତାଙ୍କ ହାତକୁ ଧରିପକାଇ ସ୍ମରଣ କରାଇ ଦେଲା ଯେ ରାଜାମାନଙ୍କୁ ମାରିବାକୁ ଶ୍ରୀକୃଷ୍ଣଙ୍କର ଆଦେଶ ନାହିଁ । ଭୀମ ଏହା ଶୁଣି ରୁକ୍ମଣର ଚୁଟି ଛାଡ଼ିଦେଲେ ଓ ତାର କୂଳ ଗୋତ୍ର ପଚାରି ବୁଝିଲେ ଯେ ସେ ଶ୍ରୀକୃଷ୍ଣଙ୍କର ଶାଳକ, ରୁକ୍ମିଣୀ ଦେବୀଙ୍କ ଭାଇ । ଭୀମ ଏହାଶୁଣି ସଙ୍ଗେ ସଙ୍ଗେ ଖଣ୍ଡାକୁ ଫିଙ୍ଗିଦେଇ ରୁକ୍ମଣକୁ କୁଣ୍ଢାଇ ପକାଇଲେ ଓ କହିଲେ "ହେ ବନ୍ଧୁ ରୁକ୍ମଣ, ତୁମେ ମୋର ପ୍ରାଣର ସଙ୍ଗାତ । ହରି, ବଳରାମ ଆମର ଶାଳକ । ତୁମେ ତାଙ୍କର ଶାଳକ । ତେଣୁ ଆମେ ଦୁହେଁ ହେଲେ ଅତି ଘନିଷ୍ଠ ବନ୍ଧୁ । ମୁଁ ନଜାଣି ବନ୍ଧୁଦ୍ରୋହ କଲି । ତୁମେ ମତେ କ୍ଷମାକର । ରୁକ୍ମଣ ଭୀମଙ୍କର ପାଦଛୁଇଁ ପ୍ରଣାମ ଜଣାଇଲେ ଓ ଭୀମଙ୍କୁ ସଦଳବଳେ ରାଜନଅରକୁ ନିମନ୍ତ୍ରଣ କରିନେଇ ଭୂରି ଭୋଜନରେ

ଆପ୍ୟାୟିତ କଲେ । ଭୀଷ୍ମକ ରାଜାମଧ ସବୁ ଘଟଣା ଶୁଣି ଭୀମଙ୍କୁ ଅତ୍ୟନ୍ତ ଶ୍ରଦ୍ଧାକଲେ ଓ ନିଜର ପୁତ୍ର ରୁକ୍ମଣଙ୍କୁ ସବୁଠାରେ ରକ୍ଷାକରିବେ ବୋଲି ଭୀମଙ୍କୁ ଶପଥ କରାଇନେଲେ ।

ତାପରେ ଭୀମଯାଇ ପହଞ୍ଚିଲେ ଚେଦି ଦେଶରେ । ସେଠାର ରାଜା ଦମଘୋଷ । ଶ୍ରୀକୃଷ୍ଣଙ୍କର ମାତା ଦେବକୀଙ୍କର ସାନଭଉଣୀ ଦଇବକୀଙ୍କୁ ସେ ବିବାହ କରିଥିଲେ । ତାଙ୍କର ପୁତ୍ର ଶିଶୁପାଳ ଅସୁର ଅଂଶରେ ଜନ୍ମ । ତେଣୁ ଭାରି ଦୁଷ୍ଟ । ବୟସରେ ଶ୍ରୀକୃଷ୍ଣଙ୍କଠାରୁ ସାନ । ଅତି ଶୈଶବ ବେଳେ ଥରେ ଶ୍ରୀକୃଷ୍ଣ ତାକୁ କୋଳରେ ଧରିଥିଲେ । ଶିଶୁପାଳର ସୁନ୍ଦର ରୂପ ଦେଖି ସେ ଆନନ୍ଦରେ ତାକୁ ଶତେ ସିଂହର ପରାକ୍ରମ ହେଉ ଓ ସଂଗ୍ରାମରେ ଅବଧ୍ୟ ହେଉ ବୋଲି ବରଦେଲେ । ସେତିକିବେଳେ ଶିଶୁପାଳ ଗୋଡ଼ ଛାଟି ଦେବାରୁ ତାହା ଶ୍ରୀକୃଷ୍ଣଙ୍କ ମୁହଁରେ ବାଜି ଦାନ୍ତିରୁ ରକ୍ତ ବୋହିଲା । ବର ଦେବାର ପରେ ପରେ ଏହା ଘଟିବାରୁ ଶ୍ରୀକୃଷ୍ଣ ବଡ଼ ଦୁଃଖିତ ହେଲେ । ଶିଶୁପାଳ କ୍ରମେ ବଡ଼ ହେବା ପରେ ତାର ଦୁଷ୍ଟାମି ମଧ ବଢ଼ିଲା । ତା ସଙ୍ଗେ ସଙ୍ଗେ ଶ୍ରୀକୃଷ୍ଣଙ୍କ ପ୍ରତି ତାର ଈର୍ଷା ଓ ବିଦ୍ୱେଷ ମଧ ବଢ଼ିଲା । ମାତ୍ର ତାର ମାତା ଦଇବକୀ ଶ୍ରୀକୃଷ୍ଣଙ୍କୁ ଶପଥ କରାଇଥିଲେ ଯେ ସେ ଶିଶୁପାଳର ଦୋଷ ଶହେ ଆଠଥର କ୍ଷମା କରିବେ । ତା ପରେ ଦୋଷକଲେ ଚକ୍ରରେ ତାର ମସ୍ତକ ଛେଦନ କରିବେ ।

ସେଦିନ ଶିଶୁପାଳ ସୈନ୍ୟ ସହିତ ଶିକାର କରି ଯାଇଥିଲା । ଭୀମଙ୍କର ଥାଟ ରାଜ୍ୟ ଭିତରେ ପଶିବାର ଦେଖି ତାଙ୍କୁ ଓଗାଳିଲା । ଉଭୟ ପକ୍ଷ ମଧରେ ପ୍ରବଳ ଯୁଦ୍ଧ ହେଲା । ଶେଷରେ ଭୀମ ଶିଶୁପାଳକୁ ଯୁଦ୍ଧରେ ପରାସ୍ତ କରି ଖଣ୍ଡାରେ ତାର ମସ୍ତକ ଛେଦନ କଲାବେଳକୁ ଖଣ୍ଡା ଦୁଇ ଖଣ୍ଡ ହୋଇ ଭାଙ୍ଗି ଗଲା । ଭୀମ ବଡ଼ ଆଶ୍ଚର୍ଯ୍ୟ ହୋଇ ତାର ପରିଚୟ ଇତ୍ୟାଦି ପଚାରି ଜାଣିଲେ ଯେ ସେ ଶ୍ରୀକୃଷ୍ଣଙ୍କର ମାଉସୀ ପୁଅ ଭାଇ ଓ ତାଙ୍କର ବରରେ ସେ ଅବଧ୍ୟ । ଏହା ଜାଣି ଭୀମ ତାଙ୍କୁ ଛାଡ଼ି ଦେଲେ ଓ ଘୃଣା କରି କହିଲେ, "ପ୍ରଭୁଙ୍କ ସୁଦର୍ଶନ ଚକ୍ର ପାଇଁ ତ ତୋ ବେକ ବାନ୍ଧି କରି ରହିଛି । ଆଉ ସେ ମୋ ଖଣ୍ଡାରେ ଛିଡ଼ିବ କିପରି ? ଚରଠାରୁ ଖବର ପାଇ ନିଜେ ଦମଘୋଷ ରାଜା ଆସିଲେ । ବହୁତ ଅନୁନୟ କରି ଭୀମଙ୍କୁ

ଶାନ୍ତ କରାଇଲେ ଓ ଯଥା ସମୟରେ ରାଜସୂୟ ଯଜ୍ଞରେ ଯୋଗ ଦେବା ପାଇଁ ଯିବାକୁ ପ୍ରତିଶ୍ରୁତି ଦେଲେ ।

ଭୀମ ସେଠାରୁ ଯାଇ ମତ୍ସ୍ୟଦେଶରେ ପହଞ୍ଚିଲେ । ସେଠାରେ ବିରାଟ ରାଜା ରାଜପଣ କରୁଥାନ୍ତି । ତାଙ୍କର ଶାଳକ କୀଚକ ମହାବୀର । ତାଙ୍କରି ବାହୁବଳରେ ବିରାଟ ରାଜା ହୋଇଥାନ୍ତି । ଭୀମ ପ୍ରଥମେ ଜଣେ ଦୂତ ହାତରେ ଏକ ଚିଠାଉ ଦେଇ ବିରାଟ ରାଜାଙ୍କ ନିକଟକୁ ପଠାଇଲେ । ଦୂତ ରାଜନଅରକୁ ଯାଇ ପ୍ରଥମେ କୀଚକକୁ ଭେଟିଲା । ସହସ୍ରେ ବଳାସୁଣୀ ଖଟୁଥିବା ଏବଂ ଅତି ଆଡ଼ମ୍ବର୍‌ରେ ରହିଥିବା କୀଚକକୁ ସେ ବିରାଟରାଜା-ବୋଲି ଭାବି ଚିଠାଉକୁ ତାଙ୍କରି ହାତରେ ଦେଲା । କୀଚକ ସେ ଚିଠାଉ ପଢି ଭୀଷଣ ରାଗିଗଲା ଓ କହିଲା କିଏସେ ସେ ପାଣ୍ଡବ ? କେଉଁଠି ତା ଘର ? ତାର ପୁଣି ଏଡ଼େ ସାହସ, ସେ ବିରାଟ ରାଜାଙ୍କପ୍ରତି ଆଦେଶ ଜାରି କରିବ ! ବୁଝିଲି, ତାର କାଳ ନିଶ୍ଚୟ ପୂରିଲା ।" ଏହାକହି ତାର ଅନୁଚରମାନଙ୍କୁ ଆଦେଶ ଦେଲା । ସେମାନେ ଭୀମଙ୍କ ଦୂତକୁ ବହୁତ ମାରି ଧରି କଲେ ଓ ମୁଣ୍ଡକାଟ କରିବାକୁ ବଧ ଭୂମିକୁ ଘୋସାରିନେଲେ ।

ଏକଥା ବିରାଟ ରାଜାଙ୍କ କାନକୁ ଗଲା । ସେ ଶ୍ରୀକୃଷ୍ଣ ଓ ପାଣ୍ଡବ-ମାନଙ୍କୁ ଉତ୍ତମଭାବେ ଜାଣନ୍ତି । ସେମାନେ ଇଚ୍ଛାକଲେ ମତ୍ସ୍ୟଦେଶ ମୁହୂର୍ତ୍ତକ ମଧ୍ୟରେ ଧ୍ୱଂସହେବ । ତେଣୁ ସେ ଲୋକ ପଠାଇ ଭୀମଙ୍କ ଦୂତକୁ ବଧ ଭୂମିରୁ ଫେରାଇ ଆଣିଲେ ଓ ତାକୁ ବହୁତ ଆଦର ଗୌରବକଲେ । ନିମନ୍ତ୍ରଣ ଗ୍ରହଣକରି ରାଜସୂୟ ଯଜ୍ଞକୁ ଯିବାପାଇଁ ସ୍ୱୀକୃତି ଦେଲେ । ଯାହାସବୁ ଘଟିଗଲା ସେଥିପାଇଁ ବହୁତ ଦୁଃଖପ୍ରକାଶ କଲେ ଓ ଭୀମସେନଙ୍କୁ ତାହା ନଜଣାଇବାପାଇଁ ବାରମ୍ବାର ଅନୁରୋଧ କଲେ । ଦୂତ କହିଲା ଯେ ତାଙ୍କର ଅନୁରୋଧ ରକ୍ଷାକରି ସେ ଅବଶ୍ୟ ଏକଥା ଭୀମସେନଙ୍କୁ କହିବ ନାହିଁ । ମାତ୍ର ତାଙ୍କର ଗୋଟିଏ ଭାଇ ସହଦେବ, ସର୍ବଜ୍ଞ, ସେ ଯଦି ଦୈବାତ୍ ଏକଥା ପ୍ରକାଶ କରିଦିଅନ୍ତି ତେବେ ଭୀମସେନଙ୍କ ହସ୍ତରେ କୀଚକର ମୃତ୍ୟୁ ସୁନିଶ୍ଚିତ । ଏହା କହି ବିରାଟରାଜା ଦେଇଥିବା ବହୁତ ଉପହାର ଦ୍ରବ୍ୟ ଧରି ଦୂତ, ଭୀମସେନଙ୍କ ନିକଟକୁ ଫେରିଗଲା ।

ଭୀମସେନ ସେଠାରୁ ଯାଇ ତାହାଳ ନାମକ ରାଜ୍ୟରେ ପହଞ୍ଚିଲେ । ସେ ରାଜ୍ୟର ରାଜା ସୁଜାତେଶ୍ୱର ମହାବୀର । ତାଙ୍କର ସୈନ୍ୟବାହିନୀରେ ରଥ, ଗଜ ନାହିଁ । କେବଳ ଲକ୍ଷ ଲକ୍ଷ ଅଶ୍ୱ, ସବୁ ସୈନ୍ୟ ଅଶ୍ୱାରୋହୀ । ଅଶ୍ୱମାନେ ଏତେ ସୁନ୍ଦର ଓ ଡଉଲ ଡାଉଲ ଯେ ଦେଖିଲେ ଆଖି ଲାଖି ରହିବ । ପାଖରେ ଜାନକୀ ନାମକ ଏକ ନଦୀ ବହିଯାଉଛି । ସେ ନଦୀର ଜଳ ଅତି ନିର୍ମଳ ଓ ଦୁଧପରି ଧଳା । ନଦୀ କୂଳେ କୂଳେ ରାଜାର ତିନି ଶତ ଯୋଜନ ବ୍ୟାପି ଏକ ଅତି ସୁନ୍ଦର ଉପବନ ।

ଭୀମସେନ ସସୈନ୍ୟେ ସେ ରାଜ୍ୟରେ ପ୍ରବେଶ କରିବାର ଦେଖି ଲକ୍ଷ ଲକ୍ଷ ଅଶ୍ୱାରୋହୀ ସୈନ୍ୟ ମାଡ଼ି ଆସିଲେ । ଏତେ ସୁନ୍ଦର ସୁନ୍ଦର ଅଶ୍ୱ ଓ ଏପରି ବିରାଟ ଅଶ୍ୱବାହିନୀ ଭୀମ ଆଉ କେଉଁଠି ଦେଖି ନଥିଲେ । ଏପରି ସୁନ୍ଦର ପ୍ରାଣୀମାନଙ୍କୁ ଓ ସେ ସୁନ୍ଦର ଉପବନକୁ ଧ୍ୱଂସ କରିବାକୁ ଭୀମଙ୍କର ମନ ବଳିଲା ନାହିଁ । ତେଣୁ ସେ ନିଜର ସାରଥୀ ସହିତ ପରାମର୍ଶ କରି ସୁଜାତେଶ୍ୱର ରାଜାନିକଟକୁ ଦୂତ ପଠାଇଲେ । ଭୀମ ଜରାସନ୍ଧଙ୍କୁ ବଧ କରିବା ଖବର ସୁଜାତେଶ୍ୱରଙ୍କୁ ଅଜଣା ନଥିଲା । ତେଣୁ ସେ ବହୁ ସମ୍ମାନର ସହିତ ଦୂତକୁ ସ୍ୱାଗତ କଲେ ଓ ସଦଳବଳେ ଭୀମସେନଙ୍କୁ ପାଛୋଟି ଆଣିବାକୁ ବାହାରିଲେ । ବିନା ରକ୍ତପାତରେ ଉଭୟ ପକ୍ଷ ମଧ୍ୟରେ ମୈତ୍ରୀ ସ୍ଥାପିତ ହେଲା । ଭୀମସେନ ସେ ରାଜାଙ୍କ ନିମନ୍ତ୍ରଣ ପତ୍ର ପ୍ରଦାନକଲେ ଓ ପ୍ରସଙ୍ଗକ୍ରମେ ତାଙ୍କର ଏ ବିରାଟ ଅଶ୍ୱବାହିନୀର କଥା ପଚାରିଲେ । ସୁଜାତେଶ୍ୱର କହିଲେ, "ସତ୍ୟଯୁଗରେ ଦେବୀ ସଞ୍ଜ୍ଞାଙ୍କ ସହିତ ଆଦିତ୍ୟଙ୍କର ପ୍ରୀତିହେଲା । ସଞ୍ଜ୍ଞା ଆଦିତ୍ୟଙ୍କର ତେଜକୁ ସହ୍ୟ କରିପାରିଲେ ନାହିଁ । ତେଣୁ ସେ ନିଜ ଶରୀରରୁ ଛାୟା କନ୍ୟାଙ୍କୁ ଜାତ କରି ଆଦିତ୍ୟଙ୍କ ସହିତ ତାଙ୍କର ପ୍ରୀତି ପ୍ରତିଷ୍ଠା କରାଇଲେ । ସଞ୍ଜ୍ଞା ଓ ଛାୟା, ରୂପରେ ଅଭିନ୍ନ ଥିବାରୁ ଆଦିତ୍ୟ ଏ କଥା ଜାଣି ପାରିଲେ ନାହିଁ । ସଞ୍ଜ୍ଞାଦେବୀ ସେଠାରୁ ଗୋପନରେ ଚାଲିଯାଇ ସୂର୍ଯ୍ୟଙ୍କର ତେଜ ଲାଗୁନଥିବା ମେରୁର ପଶ୍ଚିମ ପାର୍ଶ୍ୱରେ ରହିଲେ ।

ଏଣେ ସୂର୍ଯ୍ୟ ମଧ୍ୟ ଛାୟାଙ୍କ ସହିତ ଆନନ୍ଦରେ ରହିଲେ । ପୂର୍ବରୁ ସୂର୍ଯ୍ୟଙ୍କ ଔରସରେ ସଞ୍ଜ୍ଞାଦେବୀଙ୍କର ଯମ ଓ ଶନୈଶ୍ଚର, ଏହି ଦୁଇପୁତ୍ର

ଜାତ ହୋଇଥିଲେ । ଦିନେ ଯମ, ତମିରବଦାରଣ ମଣି ଘେନି ଖେଳୁଥିଲେ । ଛାୟାଦେବୀ, ସେ ମଣି ହଜିଯିବା ଆଶଙ୍କାରେ ଯମଠାରୁ ତାହା ଛଡ଼ାଇ ନେବାରୁ ଯମ ମା'ଙ୍କୁ ଗୋଇଠା ମାରିଲେ । ଫଳରେ ଛାୟାଦେବୀ ପଡ଼ିଯାଇ ମୂର୍ଚ୍ଛା ଗଲେ । ପରେ ଚେତାପାଇ ଉଠି ଯମଙ୍କୁ ଶାପଦେଲେ, ତୁ ପୁଅହୋଇ ମତେ ଗୋଇଠା ମାରିଲୁ । ତେଣୁ ତୋର ପାଦରେ ଗଳିତ କୁଷ୍ଠବ୍ୟାଧି ହୋଇଯାଉ । ଯମ ବିଚରା ଆଉ ଯିବେ କୁଆଡ଼େ ? ମାତାଙ୍କ ଅଭିଶାପ ଫଳରେ ତାଙ୍କ ଗୋଡ଼ରେ ଗଳିତ କୁଷ୍ଠ ବ୍ୟାଧି ହୋଇ ପୂଜରକ୍ତ ବହିଲା । ଦିନେ ସୂର୍ଯ୍ୟଦେବ ପୁଅକୁ କୋଳରେ ଧରିଲାବେଳକୁ ଅତି ଦୁର୍ଗନ୍ଧରେ ତାଙ୍କ ନାକ ଫାଟିଗଲାପରି ଲାଗିଲା । ଯମଠାରୁ ସବୁ ଘଟଣା ଶୁଣି ଘୋର ଦୁଃଖରେ ସେ ଅଭିଭୂତ ହୋଇ ପଡ଼ିଲେ । ମନେ ମନେ ଭାବିଲେ ମା ହୋଇ ନିଜର ପୁଅକୁ ଏଡ଼େ ଅଭିଶାପ କିଏ କିଣ ଦେଇପାରେ ?

"ମାତାଙ୍କର ଶାପ ଯେବେ ପଡ଼ଇ ପୁଅକୁ,
ଆଉ କି ବାଟ ଅଛି ପୁଣ ବ୍ରତିବାକୁ ?"

ମନରେ ଏହି ସନ୍ଦେହ ହେବାରୁ ସୂର୍ଯ୍ୟଦେବ ଧ୍ୟାନରେ ସମସ୍ତ ଘଟଣା ଜାଣି ପାରିଲେ । ଛାୟା ଯେ ତାଙ୍କର ତେଜକୁ ସହି ଏତେ କାଳ ତାଙ୍କର ପତ୍ନୀରୂପେ ସେବା କରି ଆସିଛନ୍ତି ସେଥିପାଇଁ ସେ ତାଙ୍କୁ ମନେ ମନେ ବହୁତ ପ୍ରଶଂସା କଲେ । ଯମର ଶାପମୋଚନ ପାଇଁ ଅନୁନୟ କରି କହିବାରୁ ଛାୟା କହିଲେ ଯେ ଶାପତ ଅନ୍ୟଥା ହେବାର ନୁହେଁ । ତେବେ ସେ ବ୍ୟାଧିର ପ୍ରକୋପ ଆଉ ରହିବ ନାହିଁ ବା ତାହାଦ୍ୱାରା ଯମର ସ୍ୱାଭାବିକ ଚଳାଚଳରେ କୌଣସି ଅସୁବିଧା ହେବନାହିଁ ।

ଏହାପରେ ଦିନେ ସୂର୍ଯ୍ୟଦେବ ନିଜତେଜ ସମ୍ବରଣ କରି ତାଙ୍କର ପ୍ରଣୟିଣୀ ସଜ୍ଞାଦେବୀଙ୍କୁ ଖୋଜିବାପାଇଁ ମେରୁର ଅପରପାର୍ଶ୍ୱକୁ ଗଲେ । ସେଠାରେ ଲୁଚିଛପି ଦେଖିଲେ ଯେ ଏକ ଅଶ୍ୱିନୀ ରୂପରେ ସଜ୍ଞାଦେବୀ ଆନନ୍ଦରେ ବୁଲୁଛନ୍ତି । ସେ ସଙ୍ଗେ ସଙ୍ଗେ ଏକ ଅଶ୍ୱରୂପ ଧରି ହେଷାରବ କଲେ ଓ ଗୋଡ଼ାଇଯାଇ ଅଶ୍ୱିନୀ ରୂପିଣୀ ସଜ୍ଞାଦେବୀଙ୍କ ସହିତ ଶୃଙ୍ଗାର କଲେ । ଫଳରେ ଅଶ୍ୱିନୀକୁମାରଙ୍କର ଜନ୍ମ ହେଲା । ପରେ ଆଦିତ୍ୟ-

ଦେବଙ୍କର ଆଶୀର୍ବାଦରେ ସେ ସମସ୍ତ ଚିକିତ୍ସାଶାସ୍ତ୍ରରେ ପ୍ରବୀଣ ହୋଇ ସ୍ୱର୍ଗର ବୈଦ୍ୟରୂପେ ପ୍ରତିଷ୍ଠା ଲାଭ କଲେ ।

ସୂର୍ଯ୍ୟଦେବଙ୍କର ସ୍ଖଳିତ ରେତର କିଛି ଅଂଶ ଭୂମିରେ ପଡ଼ି ପରେ ତାହା ନଦୀ ଜଳ ସଙ୍ଗେ ମିଶ୍ରିତ ହେଲା । ନଦୀ ତଟରେ ଥିବା ବଣର ଯେତେପ୍ରାଣୀ ତାହା ପିଇଲେ ସମସ୍ତେ ସୁନ୍ଦର ଅଶ୍ୱ ସନ୍ତାନ ପ୍ରସବକଲେ । ଏହି ପ୍ରକାରେ ଏହି ସୁନ୍ଦର ବନ୍ୟ ଓ ଅଶ୍ୱସମ୍ପଦର ସୃଷ୍ଟି ହୋଇଛି ଏବଂ ଏହା ପୁରୁଷାନୁକ୍ରମେ ଆମର ଏହି ରାଜବଂଶର ସମ୍ପଦ ହୋଇ ଆସିଅଛି ।' ସୁଜାଣେଶ୍ୱର ରାଜା ଏହା କହି ଏକ ଲକ୍ଷ ଅଶ୍ୱ ସହିତ ଅନ୍ୟାନ୍ୟ ଉପହାର ଦ୍ରବ୍ୟ ସଙ୍ଗରେ ନେଇ ଯୁଧିଷ୍ଠିର ମହାରାଜାଙ୍କର ରାଜସୂୟ ଯଜ୍ଞକୁ ଯିବା ନିମିତ୍ତ ପ୍ରତିଶ୍ରୁତି ଦେଲେ । ଭୀମସେନ ଖୁବ୍ ଆନନ୍ଦରେ ସେଦିନ ରାଜାଙ୍କର ଆତିଥ୍ୟ ଗ୍ରହଣ କରି ପରଦିନ ଅନ୍ୟରାଜ୍ୟ ଅଭିମୁଖେ ଚାଲିଲେ ।

ଏହାପରେ ଭୀମସେନ ପଶ୍ଚିମ କୋଶଳର କରବୀର ରାଜ୍ୟରେ ପହଞ୍ଚିଲେ । ସେଠାରେ ରାଜା ପୁଣ୍ଡ୍ରରୀକ ବାସୁଦେବ । ସେ ଅସୁର ଅଂଶରେ ଜନ୍ମ । ତାଙ୍କର ଜେଜେବାପ ଅନନ୍ତ ବାସୁଦେବ ଅପୁତ୍ରିକ ଥିଲେ । ତାଙ୍କ ସ୍ତ୍ରୀ ସହସ୍ରକଳା ଦିନେ ନଦୀରେ ସ୍ନାନକରି ଫେରିଲାବେଳକୁ ବଜ୍ର-କବଚ ନାମକ ଏକ ରାକ୍ଷସ ମାୟାରେ ଅନନ୍ତ ବାସୁଦେବ ରୂପ ଧରି ସହସ୍ରକଳାଙ୍କ ସହିତ ରମଣ କଲା । ଫଳରେ ସେହି ଅସୁର ଔରସରୁ ଏକ ପୁତ୍ର ଜାତ ହେଲା । ରାଜା ଏହି ନାମଦେଲେ ତ୍ରିକାଳ ବାସୁଦେବ । ପୁଣ୍ଡ୍ରରୀକ ବାସୁଦେବ ସେହି ତ୍ରିକାଳବାସୁଦେବର ପୁତ୍ର । ଅସୁର ଅଂଶରେ ଜାତହେତୁ ତାହାର ପୂର୍ବପୁରୁଷ ସହିତେ ବିଷ୍ଣୁଙ୍କର ବିରୋଧୀ । ସେ କାଠରେ ଦୁଇଟା ହାତ ଲଗାଇ ଚାରିହାତରେ ବିଷ୍ଣୁଙ୍କ ଶଙ୍ଖ ଚକ୍ର ଗଦା ପଦ୍ମ ଧରିଥାଏ ଏବଂ ଏକ କାଠର ଗରୁଡ଼ ଉପରେ ବସି ତହିଁରେ ଶାର୍ଙ୍ଗକମାନଙ୍କୁ ଯୋଚି ଯିବାଆସିବା କରେ । ସେ ବର୍ଣ୍ଣରେ ଦେଖିବାକୁ ଶ୍ରୀକୃଷ୍ଣଙ୍କପରି କଳା ଓ ମହାବୀର । ତାର ମୁକୁଟରେ ଯେତେ ହୀରାମାଳା ମଣି ମାଣିକ୍ୟ ଖଚିତ ହୋଇଥାଏ ତାହା ଲକ୍ଷେ ରାଜାର ରତ୍ନ ଭଣ୍ଡାରରୁ ଅଧିକ ମୂଲ୍ୟହେବ ।

ଚର ମୁଖରୁ ବାର୍ତ୍ତା ପାଇ ରାଜା ତାର ଲକ୍ଷ ଲକ୍ଷ ସୈନ୍ୟଙ୍କୁ ନଦୀକୂଳରେ ସମାବେଶ କଲା । ତାର ଗଡକୁ ଘେରି ରହିଥିବା ନଦୀ ସାତତାଳ ଗଭୀର ଓ ମଗର କୁମ୍ଭୀରରେ ପରିପୂର୍ଣ୍ଣ । ଭୀମସେନ ତାଙ୍କର ଗୋଟିଏ ହେଲେ ସୈନ୍ୟ କ୍ଷୟ ହେବାକୁ ନଦେଇ ଶ୍ରୀକୃଷ୍ଣଙ୍କ ନାମଧରି ଏକା ସେ ନଦୀ ଭିତରକୁ ଡେଇଁପଡ଼ିଲେ । ଏହା ଦେଖି ରାଜାର ସୈନ୍ୟମାନେ ଭୀମସେନଙ୍କ ଉପରକୁ ଏକାବେଳକେ ଲକ୍ଷ ଲକ୍ଷ ଶରମାରିଲେ । ମାତ୍ର ଭୀମଙ୍କ ଅକ୍ଷୟ ଶରୀରରେ ସେସବୁ ବାଜି ଖସିପଡ଼ିଲା । ମଗର କୁମ୍ଭୀର ମଧ୍ୟ ଭୀମଙ୍କର ବୃକୋଦର ମୂର୍ତ୍ତି ଦେଖି ଭୟରେ ପାଖ ପଶିଲେ ନାହିଁ । ଭୀମ ନଦୀର ଅପର ପାର୍ଶ୍ୱକୁ ଉଠି ଯାଇ ହାତୀ କଦଳୀ ବଣ ଦଳିଲା ପରି ପୁଣ୍ଡ୍ରରାଜ ବାସୁଦେବର ସୈନ୍ୟ ବାହିନୀକୁ ଦଳି ଦେଇ ଗଲେ । ମନ୍ତ୍ରୀର ପରାମର୍ଶରେ ରାଜା ଆସି ଶରଣ ପଶିଲା । ଭୀମ ତଥାପି ଦଣ୍ଡରେ ନାରାୟଣଙ୍କ ବୈରୀକୁ ଛାଡ଼ିଲେ ନାହିଁ । ତାକୁ ପ୍ରାଣରେ ନ ମାରି ନିଜର ରଥ ଖୁରାରେ ନେଇ ବାନ୍ଧି ପକାଇଲେ । ପରେ ସେ ରାଜସୂୟ ଯଜ୍ଞକୁ ଉପହାର ଦ୍ରବ୍ୟ ନେଇ ଯିବାକୁ ପ୍ରସ୍ତୁତ ହେବାରୁ ତାକୁ ଛାଡ଼ି ଦେଲେ ।

ଏହିପରି ଭାବରେ ଭୀମସେନ ପଶ୍ଚିମ ଦିଗର ସମସ୍ତ ରାଜାମାନଙ୍କୁ ନିମନ୍ତ୍ରଣ କରି ଠିକ୍ ନବେ ଦିନରେ ଇନ୍ଦ୍ରପ୍ରସ୍ଥକୁ ଫେରି ଗଲେ ।

## ଅର୍ଜୁନଙ୍କର ରାଜାମାନଙ୍କୁ ନିମନ୍ତ୍ରଣ

ଶ୍ରୀକୃଷ୍ଣଙ୍କର ନିର୍ଦ୍ଦେଶରେ ଅର୍ଜୁନ ଉତ୍ତର ଦିଗର ରାଜାମାନଙ୍କୁ ନିମନ୍ତ୍ରଣ କରି ଯାଇଥିଲେ । ଉତ୍ତର ଦିଗରେ ବହୁତ ଦୁଷ୍ଟ ରାଜା ରାଜୁତି କରୁଥିଲେ । ମାତ୍ର ଅର୍ଜୁନଙ୍କୁ କେହି ବଳାଇ ଗଲେ ନାହିଁ । ଶ୍ରୀକୃଷ୍ଣଙ୍କର କଡ଼ା ନିର୍ଦ୍ଦେଶ ଥିଲା ଯେ କୌଣସି ରାଜାଙ୍କୁ ଯୁଦ୍ଧରେ ନମାରି କେବଳ ପରାସ୍ତକରି ଯଜ୍ଞକୁ ନିମନ୍ତ୍ରଣ କରିବାକୁ ହେବ । ଲକ୍ଷେ ରାଜାରୁ କମ୍ ହୋଇଗଲେ ସୁନାରେ ରାଜପ୍ରତିମା ଗଠନ କରି ଲକ୍ଷେ ଭରଣା କରିବାକୁ ହେବ । ନଚେତ୍ ରାଜସୂୟ ଯଜ୍ଞ ହୋଇ ପାରିବ ନାହିଁ କି ପଣ୍ଡୁ ମହାରାଜା ଯମ ଦଣ୍ଡରୁ ଉଦ୍ଧାର ପାଇବେ ନାହିଁ । ତେଣୁ ଅର୍ଜୁନଙ୍କୁ ବହୁତ ସତର୍କତା ସହିତ ଦୁଷ୍ଟ ରାଜାମାନଙ୍କ ସହିତ ମୁକାବିଲା କରିବାକୁ ହେଉଥିଲା ।

ସବୁ ରାଜାଙ୍କୁ ସାଧି କରି କରି ଯାଇ ଶେଷକୁ ଗୋଟିଏ ରାଜ୍ୟରେ ଯେଉଁ ଅଘଟଣ ଘଟିଲା, ସେଥିରେ ଅର୍ଜ୍ଜୁନଙ୍କର ବୁଦ୍ଧି ହଜିଗଲା ।

ସେ ରାଜ୍ୟର ନାମ ଶାଖାପୁର । ଯମାଗୋଷ୍ଠି ସେ ରାଜ୍ୟରେ ରାଜା । ଅତ୍ୟନ୍ତ ଧାର୍ମିକ ! ଯମ ଦେବତାଙ୍କର ଏକ ଲୁହାର ପ୍ରତିମା ସ୍ଥାପନ କରି ବାଲ୍ୟ କାଳରୁ ସେ ପୂଜା କରୁ ଥାଏ । ଯମ ଦେବତା ତାର ପୂଜାରେ ସନ୍ତୁଷ୍ଟ ହୋଇ ତାର ଦକ୍ଷିଣ ହସ୍ତରେ କାଳଚକ୍ର ଚିହ୍ନ ଆଙ୍କି ଦେଇ ବର ଦେଇଥିଲେ ଯେ କୌଣସି ଶତ୍ରୁ ଅସାଧ୍ୟ ହେଲେ ତାର ନାମକୁ ଦକ୍ଷିଣ ହସ୍ତରେ ଲେଖି ବାମ ହସ୍ତରେ ଲିଭାଇ ଦେଲେ ସେ ସଙ୍ଗେ ସଙ୍ଗେ ନଷ୍ଟପ୍ରାୟ ମରିଯିବ ।

ଅର୍ଜ୍ଜୁନ ତା ରାଜ୍ୟରେ ପଶି ଦୂତ ହାତରେ ଖଣ୍ଡିଏ ଚିଠାଉ ପଠାଇଲେ । ଯମାଗୋଷ୍ଠି ସେ ଚିଠାଉକୁ ଚିରି ଫିଙ୍ଗି ଦେଲା ଓ ଦୂତକୁ ବହୁତ ଅପମାନ ଦେଲା । ଅର୍ଜ୍ଜୁନ ରାଗି ଯାଇ ମନଭେଦୀ ଶର ପ୍ରୟୋଗ କରି ତାର ସମସ୍ତ ସୈନ୍ୟଙ୍କୁ ମାରିଦେଲେ । ରାଜା ଚର ମୁଖରୁ ଏ ସମ୍ବାଦ ପାଇ ମହା କ୍ରୋଧରେ ମନ୍ତ୍ରୀକୁ ଡାକି ଅର୍ଜ୍ଜୁନଙ୍କର ନାମ ପରିଚୟ ଆଦି ପଚାରିଲା । ତା ପରେ ଦକ୍ଷିଣ ହସ୍ତରେ ଅର୍ଜ୍ଜୁନ ଓ ତାଙ୍କର ସୈନ୍ୟ ବାହିନୀର ନାମ ଲେଖି ବାମ ହସ୍ତରେ ଲିଭାଇ ଦେଲା । ସଙ୍ଗେ ସଙ୍ଗେ ଅର୍ଜ୍ଜୁନଙ୍କର ବିରାଟ ସୈନ୍ୟ ବାହିନୀ ମରି ଢଳି ପଡ଼ିଲେ । ଅର୍ଜ୍ଜୁନ ଏହା ଦେଖି ତାଟକା । ତାଙ୍କର ବୁଦ୍ଧି ଲୋପ ହୋଇ ଗଲା । କେବଳ ସେ ନିଜେ ଓ ତାଙ୍କ ରଥ ବାହୁଥିବା ଇନ୍ଦ୍ର ସାରଥି ମାତଳୀ ମାତ୍ର ବଞ୍ଚି ରହିଲେ । ଏଡ଼େ ବଡ଼ କର୍ମ କିଏ କିପରି କରି ପାରିଲା, ତାହା ଅର୍ଜ୍ଜୁନ ଚିନ୍ତା କରି ପାରିଲେ ନାହିଁ । ତେଣୁ ସେ ନିରୁପାୟ ହୋଇ ଅତ୍ୟନ୍ତ ବ୍ୟାକୁଳ ଭାବରେ ଶ୍ରୀକୃଷ୍ଣଙ୍କୁ ସ୍ମରଣ କଲେ । ଶ୍ରୀକୃଷ୍ଣ ଇନ୍ଦ୍ରପ୍ରସ୍ଥରେ ଯଜ୍ଞ ଆୟୋଜନରେ ବ୍ୟସ୍ତ ଥାଆନ୍ତି । ଆସନ କମ୍ପିବାରୁ ଜାଣିଲେ ଯେ ଅର୍ଜ୍ଜୁନ ବିପଦରେ ପଡ଼ି ତାଙ୍କୁ ସ୍ମରଣ କରୁଛନ୍ତି । ସେ ସଙ୍ଗେ ସଙ୍ଗେ ଖଗେଶ୍ୱର ବାହନରେ ଯାଇ ଅର୍ଜ୍ଜୁନଙ୍କ ସମ୍ମୁଖରେ ଉଭା ହେଲେ ଓ ଦେଖିଲେ ଯେ ଅର୍ଜ୍ଜୁନ ସୈନ୍ୟମାନଙ୍କୁ ହରାଇ ଲଜ୍ଜାରେ ଆତ୍ମହତ୍ୟା କରିବାକୁ ବସିଛନ୍ତି । ଶ୍ରୀକୃଷ୍ଣଙ୍କୁ ଦେଖି ତାଙ୍କ ମନରେ ବଳ ପଶିଲା । ସେ ଶ୍ରୀକୃଷ୍ଣଙ୍କର ପଦ

ବନ୍ଦନା କରି କରଯୋଡ଼ି କହିଲେ, "ହେ ଭକ୍ତ ବତ୍ସଳ ନାଥ ଦୟା ସାଗର, ହେ ଗୋପୀନନ୍ଦୀ ଦଳ ନନ୍ଦନ ନାଥ କମଳା ବଲ୍ଲଭ, କାହିଁକିର ଅର୍ଜ୍ଜୁନ ପ୍ରତି ଉପର ଏ କ ପରୀକ୍ଷା ? ଏ ଦୁସ୍ତର ସଙ୍କଟରୁ ଉଦ୍ଧାର କରି ହେ ଜଗନ୍ନାଥ । ସୈନ୍ୟମାନଙ୍କୁ ହରାଇ ମୁଁ କେଉଁ ମୁହଁରେ ଇନ୍ଦ୍ରପ୍ରସ୍ଥ ଫେରିବି ? କର୍ଣ୍ଣ ଦୁର୍ଯ୍ୟୋଧନ ଆଦି ମନେ ବ୍ୟଙ୍ଗ ବିଦ୍ରୂପ କରି ଉଖାଇ ଦେବେ କି ? ଯୁଧିଷ୍ଠିର ମହାରାଜାଙ୍କୁ କପରି ମୁଁ ଏ ମୁହଁ ଦେଖାଇବି ? ସମସ୍ତେ ନିନ୍ଦା କରି କହିବେ, ଅର୍ଜ୍ଜୁନ ପରି ବୀର, ତାର ସୈନ୍ୟମାନଙ୍କୁ ରକ୍ଷାକରି ପାରିଲାନାହିଁ ? ବିନା ଯୁଦ୍ଧରେ ମୋର ସୈନ୍ୟମାନେ ଅଳ୍ପ ପଡ଼ିବାର କାରଣ ମୁଁ ତ କଳ୍ପନା କରିପାରୁନାହିଁ । କେତେ ରାଜାଙ୍କ ସଙ୍ଗେ ଯୁଦ୍ଧ କରି କରି ଆସିଲି । ଅଥଚ ମୋର ଜଣେ ମାତ୍ର ସୈନ୍ୟ କ୍ଷୟ ହୋଇନଥିଲେ । ଏବେ ସବୁ ସୈନ୍ୟଙ୍କୁ ହରାଇ ମୁଁ କପରି ବଞ୍ଚି-ରହିବି ?"

ଶ୍ରୀକୃଷ୍ଣ ତାଙ୍କୁ ବହୁତ ପ୍ରବୋଧନା ଦେଇ ବୁଝାଇ ସୁଝାଇ କହିଲେ "ଅର୍ଜ୍ଜୁନ, ତୁମେ ବୀର । ଯୁଦ୍ଧରେ ଜୟ, ପରାଜୟ ସ୍ୱାଭାବିକ ଘଟଣା । ଯମାଗୋଷ୍ଠି ରାଜା, ଯମଦେବତାଙ୍କ ବରରେ ଏପରି ଅଦ୍ଭୁତ କାର୍ଯ୍ୟ ସାଧନ କରିପାରୁଛି । ତୁମର ସାରଥୀ ମାତଳୀ ସ୍ୱର୍ଗବାସୀ ହେତୁ ସେ ମଲେନାହିଁ । ଆଉ ମଧ୍ୟ ତୁମର ଦଶନାମ ଯମାଗୋଷ୍ଠିକୁ ଅଜଣା ଥିବାରୁ ତୁମେ ବଞ୍ଚିଗଲ । ନଚେତ୍ ସେ ଯଦି ତୁମର ଦଶନାମକୁ ଲେଖି ଲୋଡ଼ାଇ ଦେଇଥାନ୍ତା ତେବେ ତୁମେ ନିଶ୍ଚିତ ମୃତ୍ୟୁବରଣ କରିଥାନ୍ତ । ଯାହାହେଉ ଏବେ ଧୈର୍ଯ୍ୟଧରି ତୁମର କର୍ତ୍ତବ୍ୟ କରିଯାଅ । ମା ଭବାନୀଙ୍କ ଉପରେ ଭରସା ରଖ । ସବୁ ସୁଧୁରି ଯିବ । ମୁଁ ଗଲିଲି । ଯଜ୍ଞ ପ୍ରସ୍ତୁତି ପାଇଁ ଇନ୍ଦ୍ରପ୍ରସ୍ଥରେ ମୋର ଉପସ୍ଥିତି ନିତାନ୍ତ ଆବଶ୍ୟକ ।" ଏହାକହି ଶ୍ରୀକୃଷ୍ଣ ଅର୍ଜ୍ଜୁନଙ୍କୁ ଆଲିଙ୍ଗନ କରି ଗରୁଡ଼ ପୃଷ୍ଠରେ ବସି ଇନ୍ଦ୍ରପ୍ରସ୍ଥ ଫେରିଗଲେ ।

ଶ୍ରୀକୃଷ୍ଣଙ୍କର ଆଶ୍ୱାସନା ବାଣୀ ଶୁଣି ଅର୍ଜ୍ଜୁନଙ୍କ ହୃଦୟରେ ନୂତନ ବଳ ଓ ଉତ୍ସାହର ସଞ୍ଚାର ହେଲା । ସେ ଯମାଗୋଷ୍ଠି ରାଜାର ସମ୍ମୁଖକୁ ଶୀଘ୍ର ରଥ ବାହି ନେବାକୁ ମାତଳୀକୁ ଆଦେଶ ଦେଲେ । ଆଜ୍ଞାମାତ୍ରେ ମାତଳୀ ରଥ ଉଡ଼ାଇ ନେଇ ଯମାଗୋଷ୍ଠି ରାଜା ସମ୍ମୁଖରେ ପହଞ୍ଚାଇ

ଦେଲା । ଅର୍ଜୁନ ନମନ୍ତ କପଟ ବଞ୍ଚିରହିଲା ଏହା ଦେଖି ଯମାଗୋଷ୍ଟ ରାଜା ଉପୂରେ ଆସ୍ଥାନ ଛାଡ଼ି ପଳାଇଲା । ଅର୍ଜୁନ ରଗରେ ତା ନକଟରେ ବସି-ଥିବା ତାର ଦୁଇ ପୁତ୍ରକୁ ଧରି ନଜେ କର୍ଣ୍ଣ କଣ୍ଠାଗ୍ରରେ ତାଙ୍କର ମୁଣ୍ଡ କାଟି ପକାଇଲେ ଓ ଧାଇଁଯାଇ ଯମାଗୋଷ୍ଟର ଚୁଟି ଧରି ଟାଣି ଟାଣି ଆଣି ତାକୁ ହାଣିଲା ବେଳକୁ ମାତଳୀ ରଥରୁ ଡେଇଁପଡ଼ି ଅର୍ଜୁନଙ୍କର ହାତ ଧରିପକାଇଲେ । ସେ ଅର୍ଜୁନଙ୍କର ମନେ ପକାଇ ଦେଇ କହିଲେ ଯେ କୌଣସି ରାଜାଙ୍କୁ ମାରିବାକୁ ଶ୍ରୀକୃଷ୍ଣଙ୍କର ଆଦେଶ ନାହିଁ । ଏହା ଶୁଣି ଅର୍ଜୁନ ଯମାଗୋଷ୍ଟ ରାଜାର ଚୁଟି ଛାଡ଼ିଦେଲେ । ରାଜା ମଧ୍ୟ ଅର୍ଜୁନର ପାଦ ତଳେ ପଡ଼ି କ୍ଷମା ଭିକ୍ଷା କଲା ଓ ରାଜସୂୟ ଯଜ୍ଞରେ ଯୋଗଦେବା-ପାଇଁ ସ୍ୱୀକୃତ ହେଲା । ମାତ୍ର ଅର୍ଜୁନ କହିଲେ, "ହେ ରାଜା, ତୁମର ଅପରାଧ ଏତେ ଗୁରୁତର ଯେ ମୁଁ ତୁମକୁ ଛାଡ଼ିଦେଇ ନପାରେ । ମୁଁ ତୁମକୁ ମୋର ରଥ ଖୁରରେ ବାନ୍ଧି ଇନ୍ଦ୍ରପ୍ରସ୍ଥ ନେଇଯିବି । ତୁମେ ବିନା ଯୁଦ୍ଧରେ ମୋର ସୈନ୍ୟମାନଙ୍କୁ ଦୈବୀ ବଳରେ ହତ୍ୟା କରିଛ ବୋଲି ସମସ୍ତେ ଜାଣିବେ ।" ଯମାଘୋଷ କହିଲା, "ହେ ବୀର, ତୁମର ମହିମା ନଜାଣି ମୁଁ ଅପରାଧ କରିଛି । ମୋତେ ବାନ୍ଧି ପଛକେ ମୋର ନହିହ ସୈନ୍ୟମାନଙ୍କୁ ବଞ୍ଚାଇ ଦିଅ ।" ଅର୍ଜୁନଙ୍କର କ୍ରୋଧ କମି ଆସିଥିଲା । ତେଣୁ ସେ ସଞ୍ଜୀବନୀ ଶର ପ୍ରୟୋଗ କରି ରାଜାର ସୈନ୍ୟମାନଙ୍କୁ ବଞ୍ଚାଇ ଦେଲେ । ନଜର ସୈନ୍ୟମାନଙ୍କୁ ବଞ୍ଚାଇବାକୁ କହିବାରୁ ରାଜା ନଜର ଅକ୍ଷମତା ପ୍ରକାଶ କଲା । ଅର୍ଜୁନଙ୍କର ମନେ ପଡ଼ିଲା ଶ୍ରୀକୃଷ୍ଣ ଫେରିଗଲା ବେଳେ କହିଥିଲେ, ମା ଭବାନୀଙ୍କ ଉପରେ ଭରସା ରଖିବ । ତେଣୁ ସେ ଶୁଦ୍ଧ ପୂତ ହୋଇ ଉପବାସ କରି ମା ଭବାନୀଙ୍କର ସ୍ତୁତି ଆରମ୍ଭ କଲେ । ଦେବୀ ଅର୍ଜୁନଙ୍କର ସ୍ତୁତିରେ ସନ୍ତୁଷ୍ଟ ହୋଇ ବର ଯାଚିବାରୁ ଅର୍ଜୁନ ତାଙ୍କର ସୈନ୍ୟବାହିନୀକୁ ବଞ୍ଚାଇ ଦେବାପାଇଁ ପ୍ରାର୍ଥନା କଲେ । ଦେବୀଙ୍କ ନର୍ଦ୍ଦେଶରେ ଅର୍ଜୁନ, ନଜର ସୈନ୍ୟବାହିନୀର ଏକ ପରିପୂର୍ଣ୍ଣ ଚିତ୍ର ଅଙ୍କନ କଲେ । ଦେବୀ, ସେହି ଚିତ୍ର ଉପରେ ଅଭିମନ୍ତ୍ରିତ ମହୌଷଧି ଜଳ ସେଚନ କରିବାରୁ ସୈନ୍ୟବାହିନୀ ବଞ୍ଚିଉଠିଲେ । ଅର୍ଜୁନ ନଜର ସୈନ୍ୟ-ବାହିନୀଙ୍କୁ ଫେରିପାଇ ଅତ୍ୟନ୍ତ ଆନନ୍ଦିତ ହେଲେ ଓ ଅନ୍ୟରାଜ୍ୟର ରାଜା-ମାନଙ୍କୁ ଯଥାବିଧି ନମନ୍ତ୍ରଣ କରି ଠିକ୍ ନବେ ଦିନରେ ଇନ୍ଦ୍ରପ୍ରସ୍ଥକୁ ଫେରିଆସିଲେ ।

## ସଭାଗୃହ ନିର୍ମାଣ

ଶ୍ରୀକୃଷ୍ଣଙ୍କର ନିର୍ଦ୍ଦେଶରେ ସ୍ୱର୍ଗର କାରିଗର ବିଶ୍ୱକର୍ମା ଓ ଅସୁର-ମାନଙ୍କର କାରିଗର ମୟଦାନବ ଉଭୟେ ସଭାଗୃହ ନିର୍ମାଣରେ ଲାଗି-ପଡିଲେ । ଗଙ୍ଗା ଓ ଯମୁନା ନଦୀର ମଧ୍ୟସ୍ଥଳରେ ଦ୍ୱାଦଶ ଯୋଜନ ବ୍ୟାପୀ ଭୂମିରେ ସଭାଗୃହ ନିର୍ମିତ ହେଲା । ଶ୍ରୀକୃଷ୍ଣଙ୍କ ଅନୁରୋଧରେ ଦେବରାଜା ଇନ୍ଦ୍ର, ସ୍ୱର୍ଗର ସୁଧର୍ମା ସଭାର ସମସ୍ତ ଆୟୋଜନ ଏହି ସଭା ନିମିତ୍ତ ଯୋଗାଇ ଦେଲେ । ସଭାସ୍ଥଳୀକୁ ସୁବର୍ଣ୍ଣର ପ୍ରାଚୀରରେ ଆବଦ୍ଧ କରାଗଲା । ଲକ୍ଷେ ସୁବର୍ଣ୍ଣର ସ୍ତମ୍ଭ ଉପରେ ବୈଦୁର୍ଯ୍ୟ ଖଚିତ ଗୃହ ପ୍ରସ୍ତୁତ କରାଗଲା । ବିଭିନ୍ନ ରତ୍ନ ଖଚିତ ଚନ୍ଦ୍ରାତପ ଟାଙ୍ଗି ଦିଆଗଲା । ରତ୍ନମାନଙ୍କର ତେଜରେ ଦିନ ରାତି ବାରି ହେଲାନାହିଁ । ଲକ୍ଷେ ରାଜାଙ୍କ ପାଇଁ ଲକ୍ଷେ ସ୍ୱର୍ଣ୍ଣ ସିଂହାସନ ସ୍ଥାପନ କରାଗଲା । ସଭା ମଞ୍ଚ ଉପରକୁ ଉଠିବାକୁ ତେର ଗୋଟି ସୁବର୍ଣ୍ଣର ପାବଚ୍ଛ ରହିଲା । ସ୍ଥାନରେ ବହୁତ ସୁବର୍ଣ୍ଣ କଳସ ସ୍ଥାପନ-କରି ଅତି ସୁନ୍ଦର ରତ୍ନଖଚିତ ପତାକାମାନ ଉଡାଇ ଦିଆଗଲା । ଲୋକେ କ୍ଷୁଧା ତୃଷା ଭୁଲି ଲକ୍ଷ ଲକ୍ଷ ସଂଖ୍ୟାରେ ଆସି ସଭାଗୃହ ବୁଲି ଦେଖିଲେ ।

ରାଜାମାନଙ୍କର ଆବାସ ନିମିତ୍ତ ଲକ୍ଷେ ଦିବ୍ୟଭୁବନ ପ୍ରସ୍ତୁତ କରାଗଲା । ଚମତ୍କାର ସାଜସଜ୍ଜା ସହିତ ରତ୍ନଦୀପାବଳୀ ଦ୍ୱାରା ସେ ଗୃହକୁ ଆଲୋକିତ କରାଗଲା । ରାଜାମାନଙ୍କର ସୈନ୍ୟବାହିନୀ, ରଥ ଗଜ, ଅଶ୍ୱମାନଙ୍କର ରହିବା ନିମିତ୍ତ ମଧ୍ୟ ସୁନ୍ଦର ସୁନ୍ଦର ଗୃହମାନ ନିର୍ମିତ ହେଲା । ପାକ-ଶାଳାରେ ଲକ୍ଷ ଲକ୍ଷ ସୂପକାର ଅମୃତପାକ କରିବାରେ ନିଯୁକ୍ତ ରହିଲେ ।

ଏପରି ଅଭୂତପୂର୍ବ ବିରାଟ ଆୟୋଜନମାନ ଦେଖି ରାଜା ଦୁର୍ଯ୍ୟୋଧନ ବାହାରେ ଆନନ୍ଦ ପ୍ରକାଶ କରୁଥିଲେ ମଧ୍ୟ ଅନ୍ତରରେ ପାଣ୍ଡବମାନଙ୍କ ପ୍ରତି ଈର୍ଷାରେ ଜଳିଯାଉଥିଲେ । ସେ ନିଜର ମନକଥା ମାମୁଁ ଶକୁନି ଆଗରେ ପ୍ରକାଶ କଲେ । "ଦେଖ, ଗୃହ ଭାଇହୋଇ ଲକ୍ଷେ ରାଜାଙ୍କୁ ସାଧିଲେ । ସଭାମଣ୍ଡପ, ଟଙ୍କଶାଳାକୁ ଦେଖି ମନେ ହେଉଛି, ପୃଥିବୀ କଥା ଛାଡ, ସ୍ୱର୍ଗରେ ମଧ୍ୟ ଏପରି କେବେ ହୋଇନଥିବ । ଯେଉଁ ଅମୃତ ଭୋଜନରେ ଲକ୍ଷ ଲକ୍ଷ ଲୋକଙ୍କୁ ପ୍ରତ୍ୟହ ଆପ୍ୟାୟିତ କରାଯାଉଛି, ସ୍ୱୟଂ ଧନାଧିପତି

କୁବେର ମଧ୍ୟ ତାହା ଗୋଟିଏ ଧନ ପାଇଁ ଯୋଗାଇ ପାରିବେନାହିଁ । ଏ ସବୁ ଦେଖି ମୋ ଛାତି ଫାଟି ଯାଉଛି । କହ ମାମୁଁ, ମୁଁ କିପରି ଭଗାରିର ଏସବୁ ଐଶ୍ୱର୍ଯ୍ୟ ଦେଖି ଧୈର୍ଯ୍ୟଧରି ରହିବି ?" ଶକୁନି ତାଙ୍କୁ ବହୁତ ବୁଝାଇ କହିଲେ, "ହେ ବାବୁ ମାନଗୋବିନ୍ଦ, ଅବଶ୍ୟ ଏ ରାଜସୂୟ ଯଜ୍ଞ ଏକ ଅଲୌକିକ ଘଟଣା । ଆମେ ଯାହା ଶ୍ରବଣରେ ଶୁଣି ନଥିଲେ ତାହା ପ୍ରତ୍ୟକ୍ଷରେ ଦେଖିଲେ । ଦେଖ, ଆକାଶକୁ ଚାହଁ । ଦେବତାମାନେ ଭିନ୍ନ ସମ୍ଭାର ଧରି ଯଜ୍ଞସ୍ଥଳୀକୁ ଆସିବାରେ ଲାଗିଛନ୍ତି । ବରୁଣେନ୍ଦ୍ରପତି ବାରିନିଧିରୁ ରତ୍ନ ବହି ଆଣୁଛନ୍ତି । କୁବେର ନିଜର ଭଣ୍ଡାର ଖୋଲିଦେଇଛନ୍ତି । ସ୍ୱୟଂ ଅଗ୍ନି ଦେବତା ଅମୃତ ମଣୋହି ପ୍ରସ୍ତୁତ କରିବାରେ ଲାଗିଛନ୍ତି । ସମବେତ ରାଜାମାନଙ୍କର କି ଆନନ୍ଦ କି ଉତ୍ସାହ ! ତୁମେ ମନରେ ଦୁଃଖ, କରନା ବାବୁ । ପୁଣ୍ୟଥିଲେ ପ୍ରାଣୀମାନଙ୍କୁ ଏ ସମସ୍ତ ପ୍ରାପ୍ତ ହୁଏ । ଚାଲ, ମନରୁ ଈର୍ଷ୍ୟା, କ୍ରୋଧ, ଅହଙ୍କାର ତ୍ୟାଗକରି ଆମେମାନେ ମଧ୍ୟ ସେହି ମହୋତ୍ସବରେ ଯୋଗଦେବା । ଧର୍ମରାଜ ଯୁଧିଷ୍ଠିର ଦେବଙ୍କୁ ଭ୍ରାତା ବନ୍ଧୁ ହିସାବରେ ସାହାଯ୍ୟ କରିବା । ଏଥିରେ ଆମର ସମ୍ମାନ, ମର୍ଯ୍ୟାଦା ବଢ଼ିବ ସିନା, କଦାପି କ୍ଷୁଣ୍ଣ ହେବନାହିଁ ।" ଦୁର୍ଯ୍ୟୋଧନ ଶକୁନିଙ୍କର ସମସ୍ତ ଆଶ୍ୱାସନା ବାଣୀ ଶୁଣି ନୀରବ ରହିଲେ ।

## ସଭାରେ ଯୁଧିଷ୍ଠିରଙ୍କ ଉପବେଶନ ଓ କର୍ମ ବଣ୍ଟନ ।

ସଭାମଣ୍ଡପ ଶେଷ ହେଲାପରେ ଶ୍ରୀକୃଷ୍ଣ, କିଏ କେଉଁଠି ଆସନ ଗ୍ରହଣ କରିବେ ତାହା ସ୍ଥିର କଲେ । ଯୁଧିଷ୍ଠିରଙ୍କୁ ସମ୍ବୋଧନ କରି କହିଲେ, "ହେ ସ୍ୱାମୀ, ସଭାମଞ୍ଚର ମଧ୍ୟସ୍ଥଳରେ ଥିବା ସର୍ବୋଚ୍ଚ ରତ୍ନମୟ ସ୍ୱର୍ଣ୍ଣସିଂହାସନରେ ଆପଣ, ଦେବୀ ଦ୍ରୌପଦୀଙ୍କ ସହିତ ଉପବେଶନ କରନ୍ତୁ । ତା ତଳ ପାବଚ୍ଛରେ ସହଦେବ ମହାମନ୍ତ୍ରୀ ଉପସ୍ଥିତ ରହି ଭୂତ ଭବିଷ୍ୟତ ବାର୍ତ୍ତା ଜଣାଉଥିବେ । ତା ତଳ ପାବଚ୍ଛରେ ଅଭିଷେକ ଦଣ୍ଡଛତ୍ର ଧରି କୁମାର ନକୁଳ ରହିବେ । ତା ତଳ ପାବଚ୍ଛରେ ବୀର ଭୀମସେନ ଗଦାଧର ହୋଇ ରହିବେ ଓ ତା ତଳ ପାବଚ୍ଛରେ ବୀର ଫାଲ୍‌ଗୁନ ଗାଣ୍ଡିବ ଧନୁ ଧରି ଉପସ୍ଥିତ ରହିବେ । ରାଜାମାନଙ୍କୁ ଡାକି ମୁଁ ସବା

ଉଳ ପାଦଙ୍କରେ ଦର୍ଶନ କରାଉଥିବ ।" ଯୁଧିଷ୍ଠିର ଏହି ବ୍ୟବସ୍ଥା ଶୁଣି ଆନନ୍ଦିତ ହେଲେ ।

ଶ୍ରୀକୃଷ୍ଣଙ୍କର ପରାମର୍ଶରେ ଗୁରୁଦ୍ରୋଣଙ୍କୁ ଶାଢୀ ଦିଆଗଲା । ସେ ବ୍ରାହ୍ମଣମାନଙ୍କ ପାକଶାଳା ଦାୟିତ୍ୱରେ ରହିଲେ । ନିମନ୍ତ୍ରିତ ସମସ୍ତ ବ୍ରାହ୍ମଣ ଅତିଥି ଯେପରି ଭୂରି ଭୋଜନରେ ଆପ୍ୟାୟିତ ହୁଅନ୍ତି ତାହା ସେ ତତ୍ତ୍ୱା-ବଧାନ କଲେ । ଭୀଷ୍ମଦେବଙ୍କୁ ଶାଢୀ ଅର୍ପଣ କରି ଯାଇ କ୍ଷତ୍ରିୟମାନଙ୍କର ପାକଶାଳା ଦାୟିତ୍ୱରେ ରଖାଗଲା । ଦୁର୍ଯ୍ୟୋଧନଙ୍କୁ ଶାଢୀ ଦେଇ ଭଣ୍ଡାର ନାୟକ ଦାୟିତ୍ୱ ଦେବାକୁ ଶ୍ରୀକୃଷ୍ଣ ପରାମର୍ଶ ଦେଲେ । ମହାରାଜ ଯୁଧିଷ୍ଠିର କହିଲେ, "ହେ ଦାମୋଦର, ଦୁର୍ଯ୍ୟୋଧନଙ୍କ ହୃଦୟ ଆମ ପ୍ରତି ଈର୍ଷାରେ ପରିପୂର୍ଣ୍ଣ । ସେ ଆମକୁ ଦେଖି ସହି ପାରନ୍ତି ନାହିଁ । ଏହା ତୁମେ ଜାଣ । ତେଣୁ ସେ ଆମକୁ ଅପଦସ୍ଥ କରିବା ପାଇଁ ଅଯଥା ବହୁତ ଧନ ରତ୍ନ ଖର୍ଚ୍ଚ କରିବେ । ଫଳରେ ଆମର ଅର୍ଥ ଅନାଟନ ହୋଇ ପାରେ ।" ମାୟା ନାରାୟଣରୂପୀ ଶ୍ରୀକୃଷ୍ଣଙ୍କରତ ଏ ସଂସାର ଏକ ଖେଳ ଘର । ଚପଳମତି ଶିଶୁ ପରି କ୍ଷଣେ ଗଢ଼ିବା, କ୍ଷଣେ ଭାଙ୍ଗିବା, ତାଙ୍କର ସୃଷ୍ଟ ପ୍ରାଣୀଙ୍କୁ ଧରି କୌତୁକ କରିବା, ଏହା ତାଙ୍କର ଦୈନନ୍ଦିନ ବ୍ୟାପାର । ସେ ହସି ହସି କହିଲେ, "ହେ ଧର୍ମରାଜ, ଆପଣମାନଙ୍କ ପ୍ରତି ଦୁର୍ଯ୍ୟୋଧନର ହୃଦୟ ଯେ ଅସୂୟାରେ ପରିପୂର୍ଣ୍ଣ ଏହା ମୁଁ ଭଲ ଭାବରେ ଜାଣେ । ସେଇଥି ପାଇଁ ତ ମୁଁ ତାଙ୍କୁ ଭଣ୍ଡାରର ଦାୟିତ୍ୱ ଅର୍ପଣ କରି-ବାକୁ ଚାହୁଁଛି । ଦୁର୍ଯ୍ୟୋଧନ, ପନ୍ନଗାନାରାୟଣ । ତାଙ୍କ ହସ୍ତରେ ଶଙ୍ଖନିଧି, ପଦ୍ମନିଧି ରହିଛି । ସେ ଯେତେ ଧନ ରତ୍ନ ସାରିଲେ ମଧ୍ୟ ତାହା ଶେଷ ହେବ ନାହିଁ । ଏହା ଆମ ପକ୍ଷରେ ଶୁଭ ଦାୟକ ହେବ । ତମୋଗୁଣର ବଶବର୍ତ୍ତୀ ହୋଇ ଦୁର୍ଯ୍ୟୋଧନ ନିଜର ମହିମା ମଧ୍ୟ ବିସ୍ମୃତ ହୋଇଛନ୍ତି ।

ଯୁଧିଷ୍ଠିର ଏହାଶୁଣି ଭାରି ଖୁସି ହେଲେ ଏବଂ ଭଣ୍ଡାର ଦାୟିତ୍ୱ ଅର୍ପଣ କରିବା ପାଇଁ ଦୁର୍ଯ୍ୟୋଧନଙ୍କୁ ଡ଼କାଇଲେ । ଦୁର୍ଯ୍ୟୋଧନ ଶକୁନିଙ୍କ ସହିତ ପରାମର୍ଶ କଲେ । ଶକୁନି କହିଲେ, "ତୁମେ ଅତି ଶୀଘ୍ର ଯାଇ ଭଣ୍ଡାର ଦାୟିତ୍ୱ ଗ୍ରହଣ କର । ଯୁଧିଷ୍ଠିରଙ୍କର କାର୍ଯ୍ୟ ନଷ୍ଟ କରିବା ପାଇଁ ଏହା ଏକ ଉତ୍ତମ ସୁଯୋଗ । ଯେଉଁଠି ଭାରେ ପାଇଁ ଆଜ୍ଞା ହେବ, ତୁମେ

ସେଠାରେ ଦଶ ଘର ଦେଇ ଦେବ । ଫଳରେ ଧନର ଅଭାବ ହୋଇ ମହାଯଜ୍ଞ ନଷ୍ଟ ହେବ ଓ ଯୁଧିଷ୍ଠିରଙ୍କୁ ଧର୍ମ ପ୍ରାପ୍ତି ହେବ ନାହିଁ । ମାତୁଳଙ୍କର ଏହି ପରାମର୍ଶ ଦୁର୍ଯ୍ୟୋଧନଙ୍କ ମନକୁ ବେଶ୍ ପାଇଲା । ସେ ତୁରନ୍ତ ଯାଇ ଯୁଧିଷ୍ଠିରଙ୍କଠାରୁ ଶାଢୀ ଗ୍ରହଣ କରି ଭଣ୍ଡାର ଦାୟିତ୍ୱରେ ରହିଲେ । ତାଙ୍କର ମନୋଭାବକୁ ଜାଣି ପାରି ଶ୍ରୀକୃଷ୍ଣ ମନେ ମନେ ହସିଲେ । ଶକୁନି ମଧ୍ୟ ଗଜ ଅଶ୍ୱ ମାନଙ୍କ ଦାୟିତ୍ୱରେ, ଦୁଃଶାସନ ରାତ୍ରି କାଳରେ ନଗର ରକ୍ଷା କାର୍ଯ୍ୟରେ ଏବଂ ଭୀମସେନ ସଭା ସ୍ଥଳରେ ଶୃଙ୍ଖଳା ରକ୍ଷା କର୍ମରେ ନିଯୁକ୍ତ ହେଲେ । ଯୁଧିଷ୍ଠିର ଭୀମଙ୍କୁ ବହୁତ ବୁଝାଇ କହିଲେ, "ବାବୁ ସଭା ସ୍ଥଳରେ କେହି ବିଶୃଙ୍ଖଳା କଲେ ତାଙ୍କୁ ଭୟ ଦେଖାଇ ନିବୃତ୍ତ କରିବ । ମାତ୍ର କେବେ ହେଲେ ମାରିବ ନାହିଁ ।"

ଭୀମ, ଅର୍ଜୁନ, ନକୁଳ, ସହଦେବ, ଯେଉଁ ଯେଉଁ ରାଜାମାନଙ୍କୁ ନିମନ୍ତ୍ରଣ କରିଥିଲେ ସମସ୍ତେ ଆସିଲେ । ଏକମାତ୍ର ମତ୍ସ୍ୟଦେଶର ବିରାଟ ରାଜା ଆସିଲେ ନାହିଁ । ଭୀମ ହିଁ ତାଙ୍କୁ ନିମନ୍ତ୍ରଣ କରି ଆସିଥିଲେ । ତେଣୁ ସେ ମହା କ୍ରୋଧରେ ବିରାଟ ରାଜାକୁ ବନ୍ଦୀ କରି ଆଣିବା ପାଇଁ ଯୁଧିଷ୍ଠିରଙ୍କର ଅନୁମତି ପ୍ରାର୍ଥନା କଲେ । ମାତ୍ର ଶ୍ରୀକୃଷ୍ଣ ତାଙ୍କୁ ବାରଣ କରି କହିଲେ, "ହେ ଭୀମସେନ, ତୁମେ କ୍ରୋଧ ଶାନ୍ତ କର । ବିରାଟ ରାଜା ଏ ସଭାକୁ ନ ଆସିବା ତୁମ ମାନଙ୍କ ପକ୍ଷରେ ମଙ୍ଗଳ ହୋଇଛି । ତୁମେ ଏଥିପାଇଁ ବ୍ୟସ୍ତ ହୁଅ ନାହିଁ । ଶ୍ରୀକୃଷ୍ଣଙ୍କଠାରୁ ଏପରି କଥା ଶୁଣି ଭୀମ ନୀରବ ରହିଲେ । ଭବିଷ୍ୟତରେ ପାଣ୍ଡବମାନେ ବିରାଟ ରାଜନଗରରେ ଅଜ୍ଞାତ ବାସ କରିବେ । ତେଣୁ ପାଣ୍ଡବମାନଙ୍କୁ ଭଲ ରୂପେ ନ ଚିହ୍ନନ୍ତୁ, ଏହି କଥାକୁ ଲକ୍ଷ୍ୟ ରଖି ଶ୍ରୀକୃଷ୍ଣ, ଭୀମଙ୍କୁ ବିରାଟ ରାଜାଙ୍କୁ ବନ୍ଦୀ କରି ଆଣିବା ପାଇଁ ବାରଣ କରିଥିଲେ ।



ମ
ହା
ଭା
ର
ତ

ସାରଳା

୧୯୯ଶ ଅଧ୍ୟାୟ

## ଯଜ୍ଞରେ ଆହୂତି

ଯଜ୍ଞରେ ପ୍ରଥମ ଆହୂତି ପ୍ରଦାନ ସମୟ ଉପସ୍ଥିତ ହେବାରୁ ବିଭିନ୍ନ ମଙ୍ଗଳବାଜଣା ବାଜି ଉଠିଲା । ନିଜେ ଶ୍ରୀକୃଷ୍ଣ ପାଞ୍ଚଜନ୍ୟ ଶଙ୍ଖ ଧ୍ୱନି କଲେ । ମହାରାଜ ଯୁଧିଷ୍ଠିର, ବ୍ୟାସ, ବାଲ୍ମୀକୀ, ବଶିଷ୍ଠ, ବିଶ୍ୱାମିତ୍ର, ମାର୍କଣ୍ଡାଦି ମୁନିମାନଙ୍କ ଦ୍ୱାରା ପରିବେଷ୍ଟିତ ହୋଇ ଯଜ୍ଞସ୍ଥଳୀରେ ଉପସ୍ଥିତ ହେଲେ । ପ୍ରାରମ୍ଭିକ ପୂଜାକର୍ମାଦି ଶେଷପରେ ଯୁଧିଷ୍ଠିର ଯଜ୍ଞକୁଣ୍ଡରେ ପ୍ରଥମ ଆହୂତି ପ୍ରଦାନ କଲେ । ମାତ୍ର ବଡ଼ ଆଶ୍ଚର୍ଯ୍ୟର କଥା, ଅଗ୍ନି ଜଳିବା ପରିବର୍ତ୍ତେ ନିସ୍ତେଜ ହୋଇଗଲେ । ସମସ୍ତେ ନିରୁପାୟ ହୋଇ ପରସ୍ପର ମୁହଁକୁ ଚାହିଁଲେ । ଏହି ସମୟରେ ନାରଦ ମୁନି ପହଞ୍ଚିବାରୁ ସମସ୍ତେ କଳିଆ ନାରଦ ଆସିଲେ ବୋଲି କୁହା କୁହି ହେଲେ । ଏହା ଶୁଣି ନାରଦ କହିଲେ, "ହଁ ତା ଠିକ୍ । ମୁଁ ସତ କହିବାରୁ ମିଥ୍ୟାବାଦୀ ଚିହ୍ନା ପଡ଼ିଯାଏ । ତେଣୁ କଳି ଲାଗେ । ଏଥିପାଇଁ ମୋତେ କଳିଆ ନାରଦ କହନ୍ତି । ସେଥିରେ ମୋର ଏତେ ଟିକିଏ ଦୁଃଖ ନାହିଁ ।"

ମାର୍କଣ୍ଡ ମୁନି କହିଲେ "ହେ ଦେବର୍ଷି, ସେ କଥା ଛାଡ଼ନ୍ତୁ । ଆପଣତ ଭୂତ-ଭବିଷ୍ୟତ-ଜ୍ଞାତା । ଏବେ କହନ୍ତୁ, ଯଜ୍ଞକୁଣ୍ଡରେ ଘୃତାହୁତି ସତ୍ତ୍ୱେ

ଅଗ୍ନି କାହିଁକି ନିସ୍ତେଜ ରହିଛନ୍ତି ?" ନାରଦ କହିଲେ, "ଦେଖ, ମୁଁ ବର୍ତ୍ତମାନ ଯାହା ସତ କଥା କହିବି ତେବେ ତୁମେମାନେ ଯେପରି ମୋତେ କଳିଆ ବୋଲି ନକହ । ଅଗ୍ନି ନିସ୍ତେଜ ରହିବାର କାରଣ ହେଉଛି, ଯୁଧିଷ୍ଠିର ମହାରାଜା ଅପୁତ୍ରିକ ।"

"ସନ୍ତାନ ଅଭାବେ ଧର୍ମ ହୁଅଇଛି ହାନି,
ତେଣୁ କରି ଅଗ୍ନିଦେବ ଆହୂତି ନଘେନି ।"

ସମସ୍ତେ ଏହାଶୁଣି ବଡ଼ ଚିନ୍ତିତ ହେଲେ । ଯୁଧିଷ୍ଠିର ମହାରାଜାଙ୍କର ମୁହଁ ଶୁଖିଗଲା । ଏହାର ପ୍ରତିକାର କଅଣ ବୋଲି ପଚାରିବାରୁ ନାରଦ କହିଲେ ଯେ ଭୀମଙ୍କର ଔରସରେ ହିଡ଼ିମ୍ବୀ ଗର୍ଭରୁ ଘଟୋତ୍କଚ ଜାତ ହୋଇଛି । ପଞ୍ଚପାଣ୍ଡବ ଏକଆତ୍ମା । ତେଣୁ ଧର୍ମତଃ ଘଟୋତ୍କଚ ଯୁଧିଷ୍ଠିରଙ୍କର ମଧ୍ୟ ପୁତ୍ର । ତାକୁ ଏ ସ୍ଥାନକୁ ଅଣାଯାଉ । ଏଠାରେ ପ୍ରଥମେ ପୁତ୍ର ବରଣ କର୍ମକରି ଯୁଧିଷ୍ଠିର ମହାରାଜା ଆହୂତି ପ୍ରଦାନ କଲେ ଅଗ୍ନିଦେବ ତାହା ଗ୍ରହଣ କରିବେ ।"

## ଘଟୋତ୍କଚର ଆଗମନ ଓ ହିଡ଼ିମ୍ବୀ, ଦ୍ରୌପଦୀ କଳହ ।

ହସ୍ତିନାଠାରୁ ହିଡ଼ିମ୍ବକ ବନ ସହସ୍ର ଯୋଜନ ଦୂର । କେହିଯାଇ ଘଟୋତ୍କଚକୁ ଆସିବା ନିମିତ୍ତ ବାର୍ତ୍ତାଦେବା ସମୟ ସାପେକ୍ଷ । ତେଣୁ ଶ୍ରୀକୃଷ୍ଣଙ୍କର ନିର୍ଦ୍ଦେଶରେ ଭୀମସେନ, ପୁତ୍ର ଘଟୋତ୍କଚକୁ ହୃଦୟରେ ସ୍ମରଣ କଲେ । ଘଟୋତ୍କଚର ଆସନ କମ୍ପିଲା । ସେ ନିଜର ମାତା ହିଡ଼ିମ୍ବୀକୁ ଏହାର କାରଣ ପଚାରିବାରୁ ସେ କହିଲା ଯେ ପିତା ଭୀମସେନ ତାକୁ ସ୍ମରଣ କରୁଛନ୍ତି । ଘଟୋତ୍କଚ ମହା ଆନନ୍ଦରେ ଲକ୍ଷେଭାର କସ୍ତୁରୀ, ଲକ୍ଷେଭାର ଅଗୁରୁ ଚନ୍ଦନ ଓ ଲକ୍ଷେଭାର ପାଚିଲା ଆମ୍ବ ନେଇ ରାଜସୂୟ ଯଜ୍ଞକୁ ଯିବାପାଇଁ ବାହାରିଲା । ଯିବାବେଳେ ମାତା ହିଡ଼ିମ୍ବୀ କହିଲା, "ବାବୁରେ, ତୁ ପ୍ରଥମେ ତୋର ପିତାଙ୍କୁ ନମସ୍କାର କରିବୁ । ତା ପରେ ବାସୁଦେବ, ବ୍ୟାସଦେବ ଓ ଯୁଧିଷ୍ଠିରଙ୍କୁ ନମସ୍କାର କରିବୁ । ଆଉ କାହାକୁ ନମସ୍କାର କରିବୁ ନାହିଁ ।"

ଏହାଶୁଣି ଘଟୋତ୍କଚ କହିଲା, "ମା ଯୁଧିଷ୍ଠିରଦେବଙ୍କ ନିକଟରେ ମାତା ଦ୍ରୌପଦୀ ବସିଥିବେ । ତାଙ୍କୁ ନମସ୍କାର କରିବ ନାହିଁ ?" "ନାଁ ତାଙ୍କୁ ନମସ୍କାର କରିବୁ ନାହିଁ । ସେ ଅସତୀ, ନାରୀକୁଳର କଳଙ୍କ । ଜଣେ ସ୍ତ୍ରୀ ହୋଇ ପାଞ୍ଚପତି କରିଛି । ତାଙ୍କୁ ନମସ୍କାର କଲେ ଆୟୁକ୍ଷୟ ହେବ ।" ହିଡ଼ିମ୍ବୀ ଏହା କହି ପୁଣି କଣ ଭାବି ପୁତ୍ର ସହିତ ନିଜେ ଯିବାକୁ ସ୍ଥିର କଲେ । ଅସୁରୀ ମାୟା ବଳରେ ସେ ନିମିଷକେ ସହସ୍ର ଯୋଜନ ଯାଇ ଇନ୍ଦ୍ରପ୍ରସ୍ଥରେ ପହଞ୍ଚିଲା ବେଳକୁ ଭୀମସେନ ତାଙ୍କୁ ପାଛୋଟି ନେବାକୁ ଖଣ୍ଡେବାଟ ଆସିଥିଲେ । ମାୟା ବଳରେ ହିଡ଼ିମ୍ବୀ ସର୍ବଶ୍ରେଷ୍ଠ ସୁନ୍ଦରୀ ରୂପ ଧାରଣ କରିଥିଲା । ତଥାପି ଭୀମ ତାଙ୍କୁ ବାହାରେ ରଖି ଘଟୋତ୍କଚକୁ ନେଇ ଭିତରକୁ ଗଲେ ।

ମାତାର ଆଦେଶକ୍ରମେ ଘଟୋତ୍କଚ ପ୍ରଥମେ ଶ୍ରୀକୃଷ୍ଣଙ୍କୁ, ତାପରେ ବ୍ୟାସଦେବଙ୍କୁ ଓ ତାପରେ ଯୁଧିଷ୍ଠିରଙ୍କୁ ପ୍ରଣାମ କଲା । ଯୁଧିଷ୍ଠିରଙ୍କ କୋଳରେ ଦ୍ରୌପଦୀଙ୍କୁ ଦେଖି ତାଙ୍କୁ ନମସ୍କାର ନକରି ମୁହଁ ବୁଲାଇ ଦେଲା । ଏତେ ବଡ଼ ସଭାମଧ୍ୟରେ ଦ୍ରୌପଦୀଙ୍କୁ ବଡ଼ ଅପମାନ ହେଲା । ସେ କ୍ରୋଧରେ ଶାପଦେଲେ "ମୁଁ ରାଜକନ୍ୟା ଯାଜ୍ଞସେନୀ । ପାଣ୍ଡବଙ୍କ ପାଟରାଣୀ । ତୋର ମାତା, ଗୁରୁଜନ । ଅଥଚ ତୁ ମୋତେ ନମସ୍କାର କଲୁନାହିଁ । ମୋର ଶାପରେ ତୁ ଅଳ୍ପାୟୁଷ ହେବୁ । ଯୁଦ୍ଧ-ବେଳେ ତୋର ହୃଦୟରେ ବଜ୍ରଶକ୍ତି ପଡ଼ୁ ।"

ଏହା ଶୁଣିପାରି ହିଡ଼ିମ୍ବୀ କି ଆଉ ଥୟ ଧରେ ? ସେ ସଙ୍ଗେ ସଙ୍ଗେ ଯଜ୍ଞଶାଳାରେ ପଶିଯାଇ ଦ୍ରୌପଦୀଙ୍କୁ ଲକ୍ଷ୍ୟ କରି କହିଲା, "ତୁ ପାମରୀ ବଡ଼ ଅସତୀ । ଜଣେ ସ୍ତ୍ରୀ ହୋଇ ପାଞ୍ଚ ସ୍ୱାମୀ କରିଛୁ । ଅଜ୍ଞାନ ବାଳୁତ ପୁଅ ମୋର । ଲେଖାରେ ସେ ତୋର ପୁଅ ହେବ ବୋଲି କହି ପୁଣି ଏତେ ନିଷ୍ଠୁର ଅଭିଶାପ ତାକୁ ଦେଲୁ । ହେଉ, ଜନ୍ମହେଲେ ତ ମରଣ ସୁନିଶ୍ଚିତ । ମୋର ପୁଅତ କ୍ଷତ୍ରିୟବୃତ୍ତି କରୁ କରୁ ହୃଦୟରେ ବଜ୍ରଶକ୍ତି ପଡ଼ିବ । ମାତ୍ର ମୁଁ ତୋତେ ଶାପ ଦେଉଛି, ପାଞ୍ଚ ସ୍ୱାମୀଙ୍କଠାରୁ ତୋର ପାଞ୍ଚପୁଅ ହେବେ । ସାତବର୍ଷ ପୂରିଲାବେଳକୁ ସମସ୍ତଙ୍କର ଶିରଚ୍ଛେଦ ହେବ ।"

ଏହା କହି ବିଭୂମ୍ବୀ ସେଠାରେ ଆଉ ମୁହୂର୍ତ୍ତେ ନରହି ଚାଲିଗଲା । ସମସ୍ତେ ଆଶ୍ଚର୍ଯ୍ୟ ହୋଇ ଅନାଇ ରହିଥାନ୍ତି ।

## ଲଙ୍କାରୁ ବିଭୀଷଣଙ୍କ ଆଗମନ ।

ଯୁଧିଷ୍ଠିରଙ୍କ ଆଦେଶ ନେଇ ଶ୍ରୀକୃଷ୍ଣ ତ୍ରେତାଯୁଗର ରାଜା ବିଭୀଷଣଙ୍କୁ ଲଙ୍କାରୁ ନିମନ୍ତ୍ରଣ କରି ଆଣିବା ପାଇଁ ଘଟୋତ୍କଚକୁ ପଠାଇଲେ । ଘଟୋତ୍କଚ ଆସୁରୀ ମାୟାବଳରେ ଆକାଶବାଟେ ଉଡ଼ି ଯାଇ ବିଭୀଷଣଙ୍କୁ ଶ୍ରୀକୃଷ୍ଣଙ୍କର ଶ୍ରୀହସ୍ତ ଲେଖା ପ୍ରଦାନ କଲେ । ଲେଖାକୁ ପଢ଼ି ବିଭୀଷଣ ଆନନ୍ଦରେ ବିହ୍ୱଳ ହୋଇ ପଡ଼ି ଘଟୋତ୍କଚକୁ ଆଲିଙ୍ଗନ କରି ପକାଇଲେ । ସେ ତ ପରମ ବିଷ୍ଣୁ ଭକ୍ତ । ସଙ୍ଗେ ସଙ୍ଗେ ପାତ୍ର ମନ୍ତ୍ରୀମାନଙ୍କୁ ଡକାଇ ଆଦେଶ ଦେଲେ, "ଆରେ ମୋର ସମଦଣ୍ଡ ଶୀଘ୍ର ସଜ କର । ପ୍ରଭୁ ରାମଚନ୍ଦ୍ର ମୋତେ କହିଥିଲେ, ଦ୍ୱାପର ଯୁଗରେ ସେ ମୋତେ 'କାହ୍ନୁ' ରୂପରେ ଦର୍ଶନ ଦେବେ । ଆଜ ସେହି ଶୁଭ ଦିନ ମୋ ଜୀବନରେ ଆସିଛି ।" ଏହା କହୁ କହୁ ଆନନ୍ଦରେ ତାଙ୍କର ଦୁଇ ଚକ୍ଷୁରୁ ଲୋତକ ଝରି ପଡ଼ିଲା । ଘଟୋତ୍କଚ ତାଙ୍କର ଭକ୍ତି ଦେଖି ଅବାକ୍ ହେଲେ ।

ରାବଣର ଦେବ-ଦଳନ ରଥରେ ବିଭୀଷଣ ସମଦଣ୍ଡ ଘେନି ବିଜେ କଲେ । ତାଙ୍କ ସହିତ ଯେତେ ରାକ୍ଷସ ସୈନ୍ୟ କଳକଳା ନାଦ କରି ବାହାରିଲେ ତାହା ଦେଖି ଘଟୋତ୍କଚ ମନେ ମନେ ଭାବିଲେ ଏମାନେ ତ ସାରା ସଂସାର ଚରିଯିବେ । ଏମାନଙ୍କୁ ଖାଇବାକୁ ଦେବା ଏକ ବିରାଟ ସମସ୍ୟା । ତେଣୁ ଏ ବିଷୟ ଶ୍ରୀକୃଷ୍ଣଙ୍କୁ ପୂର୍ବରୁ କହିବା ଉଚିତ୍ । ଏହା ଭାବି ସେ ଆଗ ଚାଲି ଯିବା ପାଇଁ ବିଭୀଷଣଙ୍କଠାରୁ ଅନୁମତି ମାଗିଲେ । ବିଭୀଷଣ ତାଙ୍କର ଗଳାରେ ଏକ ରତ୍ନମାଳା ଲମ୍ବାଇ ଦେଇ ଆଗ ଯାଇ ଶ୍ରୀକୃଷ୍ଣଙ୍କୁ ସେମାନଙ୍କର ଆଗମନ ସମ୍ବାଦ ଦେବାକୁ କହିଲେ ।

ଘଟୋତ୍କଚ ପୂର୍ବପରି ଉଡ଼ି ଯାଇ ଶ୍ରୀକୃଷ୍ଣଙ୍କୁ ଦର୍ଶନ କରି କହିଲେ, "ପ୍ରଭୁ, ଆପଣଙ୍କର ପତ୍ରପାଇ ବିଭୀଷଣ ଅତ୍ୟନ୍ତ ଆନନ୍ଦରେ ସଦଳବଳେ ଆସୁଛନ୍ତି । ମାତ୍ର ତାଙ୍କ ସଙ୍ଗରେ ଯେଉଁ ଅକଳନ ରାକ୍ଷସ ସୈନ୍ୟ

ଆସୁଛନ୍ତି ସେମାନଙ୍କୁ ଖାଇବା ଯୋଗାଇବା ଏକ ବିଷମ ସମସ୍ୟା ହେବ । ଏଠାରେ ଲକ୍ଷେ ରାଜାଙ୍କର ସୈନ୍ୟମାନଙ୍କ ପାଇଁ ବନରେ ଯେତେ ଅନ୍ନ ଲାଗୁଛି ଏକା ବିଭୀଷଣଙ୍କ ସୈନ୍ୟବାହିନୀକୁ ତାହା ଅଣ୍ଟିବ ନାହିଁ । ଖାଦ୍ୟ ଅଣ୍ଟାଇ ନ ପାରିଲେ ସେମାନେ ମଣିଷ ଖାଇଯିବେ କି କଣ ? ଏଥିକୁ ଆପଣଙ୍କର ଯାହା ବିଚାର ହେଉ ।”

ଶ୍ରୀକୃଷ୍ଣ ଅଳ୍ପ ହସି କହିଲେ, “ବାବୁ, ତୁମେ ବ୍ୟସ୍ତ ହୁଅ ନାହିଁ । ଖାଇବା ପାଇଁ ସେମାନଙ୍କର ଅଭାବ ହେବ ନାହିଁ । ଆଉ ସେମାନେ ଯେପରି ଶୃଙ୍ଖଳା ରକ୍ଷା କରନ୍ତି ତାର ବ୍ୟବସ୍ଥା ମୁଁ କରୁଛି ।” ଏହା କହି ଶ୍ରୀକୃଷ୍ଣ ହନୁମାନଙ୍କୁ ସ୍ମରଣ କଲେ । ଆସନ କମ୍ପିବାରୁ ହନୁମାନ ଜାଣିଲେ ଯେ ଭଗବାନ ଶ୍ରୀକୃଷ୍ଣ ତାଙ୍କୁ ଆହ୍ୱାନ କରୁଛନ୍ତି । ସେ ସଙ୍ଗେ ସଙ୍ଗେ ଆକାଶ ମାର୍ଗରେ ଉଡ଼ି ଆସି ଶ୍ରୀକୃଷ୍ଣଙ୍କର ପଦ ବନ୍ଦନା କଲେ । ସମବେତ ରାଜାମାନେ ତ୍ରେତା ଯୁଗର ମଲ୍ଲ ପରମ ଭକ୍ତ ହନୁମାନଙ୍କୁ ଦୁଇ ଆଖିରେ ଦେଖି ସେମାନଙ୍କର ଜନ୍ମ ସଫଳ ହେଲା ବୋଲି ମନେ କଲେ ଏବଂ ମହାରାଜା ଯୁଧିଷ୍ଠିରଙ୍କ ଯଜ୍ଞ ହେତୁ ସେମାନଙ୍କର ଏ ସୌଭାଗ୍ୟ ହେଲା ବୋଲି ତାଙ୍କୁ ବହୁତ ପ୍ରଶଂସା କଲେ ।

ଲଙ୍କାର ରାଜା ମହାଭକ୍ତ ବିଭୀଷଣ ରାଜସୂୟ ମହୋତ୍ସବରେ ଯୋଗ ଦେବାକୁ ଆସୁଛନ୍ତି ବୋଲି ଶ୍ରୀକୃଷ୍ଣଙ୍କଠାରୁ ଶୁଣି ହନୁମାନ ବହୁତ ଆନନ୍ଦିତ ହେଲେ । ବହୁକାଳ ପରେ ଦ୍ୱାପର ଯୁଗରେ ତାଙ୍କ ସହିତ ଦେଖା ହେବ । ଶ୍ରୀକୃଷ୍ଣ ଓ ହନୁମାନ ବିଭୀଷଣଙ୍କୁ ପାଛୋଟି ଆଣିବା ପାଇଁ କିଛି ବାଟ ଗଲେ ।

ରଥରେ ଗରୁଡ଼ ଧ୍ୱଜ ଚିହ୍ନ ଦେଖି ବିଭୀଷଣ ଜାଣିଲେ, ଶ୍ରୀକୃଷ୍ଣ ତାଙ୍କୁ ପାଛୋଟି ନେବାକୁ ଆସୁଛନ୍ତି । ସେ ସଙ୍ଗେ ସଙ୍ଗେ ନିଜ ରଥରୁ ଓହ୍ଲାଇ ପାଦ ଗଡ଼ି କରି ଶ୍ରୀକୃଷ୍ଣଙ୍କୁ ଭେଟିଲେ । ନବ ଦୂର୍ବାଦଳ ବର୍ଣ୍ଣ ଶାନ୍ତ ସୌମ୍ୟମୂର୍ତ୍ତି ଶ୍ରୀରାମ, ଦ୍ୱାପର ଯୁଗରେ ନବ ଶାରଦ ବର୍ଣ୍ଣ କୋଟି କନ୍ଦର୍ପ ଲାବଣ୍ୟଜିଣି ମୂରଲୀ ମନୋହର ରୂପ ଧାରଣ କରିଛନ୍ତି । ବିଭୀଷଣ ଦର୍ଶନ ମାତ୍ରେ ଭକ୍ତି-ବିହ୍ୱଳ ହୋଇପଡ଼ିଲେ । ଶ୍ରୀକୃଷ୍ଣ ମଧ୍ୟ ତ୍ରେତୟା ଯୁଗର ପରମ

ଭକ୍ତ ବିଭୀଷଣଙ୍କୁ ଦେଖି ରଥରୁ ଓହ୍ଲାଇ ଯାଇ ତାଙ୍କୁ ନିବିଡ଼ ଭାବେ ଆଲିଙ୍ଗନ କଲେ । ପ୍ରଭୁଙ୍କ ଶରୀର ସ୍ପର୍ଶରେ ବିଭୀଷଣଙ୍କର ସର୍ବାଙ୍ଗ ପୁଲକିତ ହେଲା ।

ତାପରେ ହନୁମାନ ଓ ବିଭୀଷଣ, ଦୁଇ ମହାଭକ୍ତ ପରସ୍ପରକୁ ନିବିଡ଼ଭାବେ ଆଲିଙ୍ଗନ କଲେ । ସମସ୍ତେ ମିଶି ସଭାସ୍ଥଳୀକୁ ଗଲେ । ଏଣେ ବୀରବର ହନୁମାନଙ୍କୁ ଦେଖି ଭୟରେ ରାକ୍ଷସମାନଙ୍କର କୋଳାହଳ ବନ୍ଦ ହୋଇଗଲା । ସେମାନେ ବାପ ଅଜାଙ୍କ ଠାରୁ ହନୁମାନଙ୍କର ବୀରତ୍ୱ, ଲଙ୍କାଗଡ଼ରେ ତାଙ୍କର ଧ୍ୱଂସଲୀଳା, ନିଷ୍ଠୁର ଭାବେ ଅସୁର ସଂହାର ଆଦି ବିଷୟ ଶୁଣି ଆସୁଥିଲେ । ତାଙ୍କୁ ସ୍ୱଚକ୍ଷୁରେ ଦେଖି ସେମାନଙ୍କର ଉତ୍ପାତ, ଉପଦ୍ରବ ସବୁ ବନ୍ଦ ହୋଇଗଲା । ସେମାନେ ଭୟରେ ଆଉ ଆଗେଇଲେ ନାହିଁ । ଶ୍ରୀକୃଷ୍ଣ ଏହା ଲକ୍ଷ୍ୟ କରି ମନେ ମନେ ଖୁସି ହେଲେ । ଅବଶ୍ୟ ସେମାନଙ୍କ ପ୍ରତି ସତ୍କାରରେ କୌଣସି ତ୍ରୁଟି ହେଲା ନାହିଁ । ସଭା-ସ୍ଥଳୀର ଖଣ୍ଡେ ଦୂରରେ ସେମାନଙ୍କର ରହିବା, ଖାଇବାର ସୁବନ୍ଦୋବସ୍ତ କରି ଦିଆଗଲା । ସ୍ୱୟଂ ହନୁମାନ ସେ ଦାୟିତ୍ୱ ନେଲେ । ତେଣୁ ଅସୁର ଥାଟରେ କୌଣସି ଅଶାନ୍ତି, କୌଣସି ବିଶୃଙ୍ଖଳା ହେଲାନାହିଁ ।

ଏହାପରେ ଶ୍ରୀକୃଷ୍ଣ ବିଭୀଷଣଙ୍କୁ ସଙ୍ଗରେ ନେଇ ସଭାମଞ୍ଚ, ଯଜ୍ଞବେଦୀ, ରାଜାମାନଙ୍କର ବାସଭବନ, ପାକଶାଳା ଇତ୍ୟାଦି ବୁଲାଇ ଦେଖାଇଲେ । ବିଭୀଷଣ ଏ ବିରାଟ ଆୟୋଜନ, ସାଜସଜ୍ଜା ଦେଖି ଅତ୍ୟନ୍ତ ଆଶ୍ଚର୍ଯ୍ୟ ହେଲେ । ତାପରେ ଧର୍ମରାଜ ଯୁଧିଷ୍ଠିରଙ୍କୁ ଦର୍ଶନ କରିବାପାଇଁ ଶ୍ରୀକୃଷ୍ଣ ବିଭୀଷଣଙ୍କୁ ନେଇଗଲେ । ତାଙ୍କୁ ବାଟରେ କହିଲେ ଯେ ଯୁଧିଷ୍ଠିର ଠାକୁର ପ୍ରତ୍ୟକ୍ଷରେ ଦେବ ନିରଞ୍ଜନ । ତାଙ୍କୁ ପ୍ରଲମ୍ବ ହେଲେ କୋଟିଏ ଜନ୍ମର ସୁଫଳ ପ୍ରାପ୍ତି ହେବ । ବିଭୀଷଣ ମନେ ମନେ ଭାବିଲେ ମୋର ପ୍ରଭୁ ଶ୍ରୀରାମ-ଶ୍ରୀକୃଷ୍ଣଙ୍କ ଛଡ଼ା ମୁଁ ତ ଅନ୍ୟ ପ୍ରଭୁ ଜାଣେନାହିଁ । ମୁଁ ଯୁଧିଷ୍ଠିରଙ୍କୁ ପ୍ରଣାମ କରିବି କାହିଁକି ? ଅନ୍ତର୍ଯ୍ୟାମୀ ପ୍ରଭୁ ଶ୍ରୀକୃଷ୍ଣ ବିଭୀଷଣଙ୍କର ମନର କଥା ଜାଣିଲେ ।

ତାପରେ ଉଭୟେଯାଇ ଯୁଧିଷ୍ଠିର ଦେବଙ୍କୁ ଦର୍ଶନ କଲାବେଳେ ଶ୍ରୀକୃଷ୍ଣ ନିଜେ ଯୁଷ୍ଠିରଙ୍କର ପାଦତଳେ ଲମ୍ୱହୋଇ ପଡ଼ିଗଲେ । ଆଉ

ବିଭୀଷଣ ଯାଆନ୍ତି କୁଆଡ଼େ ? ସେ ଅତି ଆଶ୍ଚର୍ଯ୍ୟ ହୋଇ ଶ୍ରୀକୃଷ୍ଣଙ୍କର ପାଦତଳେ ଲମ୍ବହୋଇ ପଡ଼ିଗଲେ । ଯୁଧିଷ୍ଠିର ମହାରାଜା ସିଂହାସନରୁ ଉଠିଆସି ଉଭୟଙ୍କୁ ତଳୁ ଉଠାଇ କୋଳାଗ୍ରତ କଲେ । ତାପରେ ସ୍ୱର୍ଣ୍ଣମୟ ଦ୍ରବ୍ୟ ଭୂବନରେ ବିଭୀଷଣଙ୍କର ରହିବା ବନ୍ଦୋବସ୍ତ କରି ଦିଆଗଲା । ଆନନ୍ଦ କୋଳାହଳରେ ଦ୍ୱାରକି ସଭାସ୍ଥଳ ମୁଖରିତ ହୋଇ ଉଠିଲା ।

କିଛି ବିଳମ୍ବରେ ମତ୍ସ୍ୟଦେଶର ବିରାଟରାଜା ଆସି ପହଞ୍ଚିଲେ । ବିଳମ୍ବ ହେତୁ ଭୀମସେନ ତାଙ୍କ ଉପରେ ବହୁତ କ୍ରୋଧ କଲେ । ମାତ୍ର ଶ୍ରୀକୃଷ୍ଣଙ୍କ ହସ୍ତକ୍ଷେପ ଫଳରେ ଭୀମଙ୍କର କ୍ରୋଧ ଶାନ୍ତ ହେଲା । ଏତିକବେଳେ ତ୍ରିକାଳ ଦ୍ରଷ୍ଟା ବ୍ୟାସଦେବ ଶ୍ରୀକୃଷ୍ଣଙ୍କୁ ଏକାନ୍ତରେ କହିଲେ ଯେ, ଭବିଷ୍ୟତରେ ବିରାଟ ନଗରରେ ପାଣ୍ଡବମାନଙ୍କ ଅଜ୍ଞାତ ବାସ ହେବ । ତେଣୁ ସେ ଯୁଧିଷ୍ଠିରଙ୍କୁ ଏଠାରେ ଦେଖିବା ଉଚିତ ନୁହେଁ । ମାତ୍ର ସବୁରାଜାତ ଯୁଧିଷ୍ଠିରଙ୍କ ଆସ୍ଥାନ ତଳେ ତାଙ୍କୁ ଦର୍ଶନ କରିବା ଉଚିତ୍ । ସେଥିପାଇଁ ଶ୍ରୀକୃଷ୍ଣ ଏକ କୌଶଳ କଲେ । ବିରାଟ, ଯୁଧିଷ୍ଠିରଙ୍କୁ ଦର୍ଶନ କରି ଗଲାବେଳେ ଶ୍ରୀକୃଷ୍ଣଙ୍କ ଆଦେଶରେ ସୁଦର୍ଶନଚକ୍ର ବିରାଟଙ୍କ ମୁହଁ ଆଗରେ ଅଦୃଶ୍ୟଭାବେ ଘୂରିଲେ । ଫଳରେ ତାଙ୍କୁ ଚୁରିଆଡ଼ ଅନ୍ଧାର ଦିଶିଲା । ଯୁଧିଷ୍ଠିରଙ୍କ ମୁହଁ ତାଙ୍କୁ ଦେଖାଗଲାନାହିଁ । ସେ କେବଳ ଯୁଧିଷ୍ଠିରଙ୍କ ଆସ୍ଥାନ ତଳେ ପ୍ରଣିପାତ କରି ଚାଲି ଆସିଲେ ।

## ଦୁଷ୍ଟ ପ୍ରକୃତିର ପରାଭବ ।

ଚେଦି ଦେଶର ରାଜା ଦମଘୋଷଙ୍କ ପୁତ୍ର ଶିଶୁପାଳ ଶ୍ରୀକୃଷ୍ଣଙ୍କର ମାଉସୀ ପୁଅ ଭାଇ ହେଲେ ମଧ୍ୟ ଦୁହିଁଙ୍କ ମଧ୍ୟରେ ଆଦୌ ପଡ଼ୁନଥିଲା । ଶିଶୁପାଳ ଦୁଷ୍ଟ ପ୍ରକୃତିର ଲୋକ । ତା ସାଙ୍ଗକୁ କର୍ଣ୍ଣ, ଶକୁନି, ଦୁର୍ଯ୍ୟୋଧନ ମନ୍ତ୍ରଣା କଲେ କପଟ ଯଜ୍ଞରେ ବ୍ୟାଘାତ ସୃଷ୍ଟି କରି ଯୁଧିଷ୍ଠିରଙ୍କୁ ଅପଦସ୍ତ କରିବା ।

ଯୁଧିଷ୍ଠିର ମହାରାଜାତ ଯେ ଯାହା ଦାନ, ଭୋଜନ ପ୍ରାର୍ଥନା କରିବ ତାହା ଦେବାପାଇଁ ସତ୍ୟବଦ୍ଧ ହୋଇଛନ୍ତି । ଦୁଷ୍ଟମାନେ ଏହି ସୁଯୋଗ

ନେଇ ଶିଶୁପାଳଙ୍କୁ ଯୁଧିଷ୍ଠିରଙ୍କ ନିକଟକୁ ପଠାଇଲେ । ସେ ଯାଇ କହିଲେ ଯେ ସେ ନିତାନ୍ତ ଦରିଦ୍ର ହୋଇ ଯାଇଛନ୍ତି । ତେଣୁ ଯୁଧିଷ୍ଠିର ମହାରାଜା ତାଙ୍କୁ ଲକ୍ଷେଶ୍ୱର ସୁବର୍ଣ୍ଣ ଦାନ କରନ୍ତୁ । ଯୁଧିଷ୍ଠିର ସଙ୍ଗେ ସଙ୍ଗେ ତାହା ଦେବାପାଇଁ ଭୀମଙ୍କୁ ଆଦେଶ ଦେଲେ । ଭୀମ ଯାଇ ଭଣ୍ଡାର ରକ୍ଷକ ଦୁର୍ଯ୍ୟୋଧନଙ୍କୁ ଯୁଧିଷ୍ଠିରଙ୍କ ଆଦେଶ ଜଣାଇ ଶିଶୁପାଳକୁ ଲକ୍ଷେଶ୍ୱର ସୁବର୍ଣ୍ଣ ଦେବାକୁ କହିଲେ । ମାତ୍ର ଦୁର୍ଯ୍ୟୋଧନ ଭୀମଙ୍କୁ ଭଣ୍ଡାର ଘର ଦେଖାଇ କହିଲେ ଯେ ଲକ୍ଷେ ଭରିତ ଦୂରର କଥା, ଗୋଟିଏ ଭରି ସୁବର୍ଣ୍ଣ ମଧ୍ୟ ନାହିଁ । ଏହା ଦେଖି ଭୀମଙ୍କର ବୁଦ୍ଧି ହଜିଗଲା । ସେ ଶ୍ରୀକୃଷ୍ଣଙ୍କ ନିକଟକୁ ଦୌଡିଯାଇ ସବୁ ଘଟଣା କହିଲେ । ଶ୍ରୀକୃଷ୍ଣ ଜାଣିଲେ ଯେ ଏହା ଦୁଷ୍ଟମାନଙ୍କର ଚକ୍ରାନ୍ତ । ସେ ମନେ ମନେ ରାଗିଗଲେ । ମାତ୍ର ରାଗକୁ ମନ ଭିତରେ ଗୁପ୍ତି ରଖି ହନୁମାନଙ୍କୁ ଏକାନ୍ତରେ ଯାଇ କହିଲେ ଯେ ସେ ଯେପରି ସମସ୍ତଙ୍କର ଅଜଣାରେ ଭଣ୍ଡାର ଘର ପଛପଟେ ବାଟ କରି ପଥରସବୁ ନେଇ ଭର୍ତ୍ତି କରିଦେବେ । ହନୁମାନ ଖୁବ୍ ସତର୍କତାର ସହିତ ପ୍ରଭୁଙ୍କ ଆଦେଶ ପାଳନ କଲେ ।

ପରଦିନ ଶ୍ରୀକୃଷ୍ଣ ନିଜେ ଶିଶୁପାଳକୁ ସଙ୍ଗରେ ନେଇ ଦାନ ଦିଆଯିବା ନିମିତ୍ତ ଭଣ୍ଡାର ଘରକୁ ଗଲେ ଓ ଭଣ୍ଡାର ଘରେ ଯାହାଅଛି ତହିଁରୁ ଆଞ୍ଜୁଳାଏ ଆଣିବାକୁ ଦୁର୍ଯ୍ୟୋଧନକୁ କହିଲେ । ଦୁର୍ଯ୍ୟୋଧନ ଯାଇ ଭଣ୍ଡାର ଭିତରେ ଥିବା ପଥର ଗଦାକୁ ଛୁଇଁଦେବାମାତ୍ରେ ସେ ସବୁ ସୁନା ପାଲଟି ଗଲା । କାରଣ ସେ ସ୍ୱୟଂ ବିଷ୍ଣୁରୂପୀ ପନ୍ନଗାନାରାୟଣ ଓ ତାଙ୍କ ହାତରେ ଶଙ୍ଖ ପଦ୍ମଚିହ୍ନ ଅଛି ।

ଦୁର୍ଯ୍ୟୋଧନ ବାହାରେ ଆସି ଆଞ୍ଜୁଳା ଖୋଲିଲାବେଳକୁ ସମସ୍ତେ ଦେଖିଲେ ସୁନା ଆଞ୍ଜୁଳାଏ । ଶ୍ରୀକୃଷ୍ଣଙ୍କର ଉପସ୍ଥିତିରେ ଶିଶୁପାଳଙ୍କୁ ଲକ୍ଷେଶ୍ୱର ସୁବର୍ଣ୍ଣ ଦିଆଗଲା । ତା ଦ୍ୱାରା ଭଣ୍ଡାର ଘରରୁ କୋଣେ ମଧ୍ୟ ସରିଲା ନାହିଁ । ଏହି ପ୍ରକାରେ ପ୍ରଭୁ ଶ୍ରୀକୃଷ୍ଣଙ୍କର କୌଶଳ ଫଳରେ ଦୁଷ୍ଟମାନଙ୍କର ଚକ୍ରାନ୍ତ ପସରଫାଟି ଗଲା ।

## ବାସୁକୀଙ୍କୁ ନିମନ୍ତ୍ରଣ

ବ୍ୟାସଦେବ କହିଲେ ଯେ ସ୍ୱର୍ଗ, ମର୍ତ୍ତ୍ୟରୁ ସମସ୍ତେ ନିମନ୍ତ୍ରିତ ହୋଇ ଆସିଲେ । ମାତ୍ର ପାତାଳରୁ ନାଗରାଜା ବାସୁକୀ ନଆସିଲେ ଯଜ୍ଞ ପୂର୍ଣ୍ଣାଙ୍ଗ ହେବନାହିଁ । ତେଣୁ ତାଙ୍କୁ ନିମନ୍ତ୍ରଣ କରିବାକୁ ଅର୍ଜ୍ଜୁନ ଗଲେ । ଅର୍ଜ୍ଜୁନଙ୍କୁ ଦେଖି ବାସୁକୀ ବହୁତ ଆଦର କଲେ । ଅର୍ଜ୍ଜୁନ ତାଙ୍କୁ ରାଜସୂୟ ଯଜ୍ଞକୁ ଯିବା ନିମିତ୍ତ ନିମନ୍ତ୍ରଣ କରିବାରୁ ବାସୁକୀ ହସି ହସି କହିଲେ ଯେ ତାଙ୍କର ସପ୍ତଫେଣା ଉପରେ ସାରା ପୃଥିବୀ ତିଷ୍ଠି ରହିଛି । ଏ ମହାଦାୟିତ୍ୱ ଆଜି କେହି ତୁଲାଇବା ସମ୍ଭବ ନୁହେଁ । ତେଣୁ ଯଜ୍ଞକୁ ଯିବା ତାଙ୍କ ପକ୍ଷରେ ଅସମ୍ଭବ ।

ମାତ୍ର ଅର୍ଜ୍ଜୁନ ଭାବିଲେ, ବାସୁକୀ ନଗଲେ ଯଦି ଯଜ୍ଞ ଅପୂର୍ଣ୍ଣ ରହେ ତେବେ ତ ଯଜ୍ଞ ଫଳ ମିଳିବ ନାହିଁ, କି ତାଙ୍କ ପିତା ପଣ୍ଡୁ ମହାରାଜ ବ୍ରହ୍ମହତ୍ୟା ଦୋଷରୁ ମୁକ୍ତ ହେବେନାହିଁ । ତେଣୁ ସେ ନିଜ ଧନୁର ଗୋଟିଏ ମୁଣ୍ଡ ନିଜ ଜାନୁ ଉପରେ ଓ ଅପର ମୁଣ୍ଡ ପୃଥିବୀ ତଳେ ଦେଇ ବାସୁକୀଙ୍କୁ ଅସ୍ତେ ଶିର ଖସାଇ ନେବାକୁ କହିଲେ । ବାସୁକୀଙ୍କ ମନରେ ପ୍ରଥମେ ସଂଶୟ ହେଲା । ମାତ୍ର ଅର୍ଜ୍ଜୁନଙ୍କର ତେଜୋମୟ ରୂପ ଦେଖି ତାଙ୍କର ଭରସା ହେଲା । ସେ ଆସ୍ତେ ଶିର ଘୁଞ୍ଚାଇ ଆଣିଲେ । ପୃଥିବୀ ଅର୍ଜ୍ଜୁନଙ୍କର ଧନୁହୁଳ ଉପରେ ସ୍ଥିରହୋଇ ରହିଲା ।

ବାସୁକୀ ନିଜର କନ୍ୟାକୁ ଅର୍ଜ୍ଜୁନଙ୍କର ପରିଚର୍ଯ୍ୟାରେ ନିଯୁକ୍ତ କରି ଅବିଳମ୍ବେ ଆସି ଯଜ୍ଞସ୍ଥାନରେ ଉପସ୍ଥିତ ହେଲେ । ଶ୍ରୀକୃଷ୍ଣ ବହୁତ ଗୌରବର ସହିତ ତାଙ୍କୁ ସ୍ୱାଗତ କଲେ ଓ ତାଙ୍କୁ ନେଇ ଯୁଧିଷ୍ଠିରଙ୍କୁ ଦର୍ଶନ କରାଇଲେ । ଯୁଧିଷ୍ଠିର ଯଜ୍ଞରେ ପୂର୍ଣ୍ଣାହୁତି ଦେଇ ଯଜ୍ଞ ସମାପନ କଲେ । ଆକାଶ ଭୁବନରୁ ବେଦଧ୍ୱନି ଶୁଣାଗଲା । ମୁନିମାନେ ଏକମୁଖ ହୋଇ କହିଲେ ଯେ ପଣ୍ଡୁ ମହାରାଜାଙ୍କର ବ୍ରହ୍ମହତ୍ୟା ପାତକ ଖଣ୍ଡନ ହେଲା ।

ଶ୍ରୀକୃଷ୍ଣ, ଅର୍ଜ୍ଜୁନ କାହିଁକି ଫେରିଲେ ନାହିଁ ବୋଲି ବାସୁକୀଙ୍କୁ ପଚାରିବାରୁ ସେ କହିଲେ, "ହେ ପ୍ରଭୁ, ତୁମକୁ କେଉଁ କଥା ଅଜଣା ?

ଭୂମର ଶକ୍ତ ନେଇ ଅର୍ଜ୍ଜୁନ ଧନୁର୍ଦ୍ଧରେ ପୃଥିବୀ ଧାରଣ କରିଛନ୍ତି । ମୁଁ ଫେରିଗଲେ ମୋ ଦାୟିତ୍ୱ ମୋତେ ଅର୍ପଣ କରି ସେ ଫେରିଆସିବେ ।” ଶ୍ରୀକୃଷ୍ଣ ତାଙ୍କୁ ଭୂନ ଭୂନ କହିଲେ, “ଯୁଧିଷ୍ଠିର ମହାରାଜାଙ୍କୁ ଏକଥା କହିବେ ନାହିଁ । କାରଣ ମୋ ଭାଇଙ୍କୁ କାଳେ ପୃଥିବୀ ମାଡ଼ିବସିବ ବୋଲି ଭାବି ସେ ମହାବ୍ୟସ୍ତ ହେବେ ।”

## ଶିଶୁପାଳ ବଧ

ମହାଯଜ୍ଞ ଶେଷପରେ ବ୍ରାହ୍ମଣମାନେ ଯୁଧିଷ୍ଠିରଙ୍କୁ କୋଟିଏ ତୀର୍ଥ-ଜଳରେ ସ୍ନାନ କରାଇଲେ । ସ୍ୱର୍ଗରୁ ଦେବରାଜ ଇନ୍ଦ୍ର ଯୁଧିଷ୍ଠିରଙ୍କ ଶିରରେ ପୁଷ୍ପବୃଷ୍ଟି କଲେ । ଚତୁର୍ଦ୍ଦିଗ ଜୟ ଜୟ ଶବ୍ଦରେ କମ୍ପି ଉଠିଲା । ସ୍ୱୟଂ ଶ୍ରୀକୃଷ୍ଣ, ଯୁଧିଷ୍ଠିରଙ୍କୁ ବିଭିନ୍ନ ରତ୍ନ ଅଳଙ୍କାର, ମୁକୁଟ ଓ ସୁବର୍ଣ୍ଣ ପଇତା ପିନ୍ଧାଇ ଦେଲେ । ଯୁଧିଷ୍ଠିର, ଦ୍ରୌପଦୀଙ୍କୁ କୋଳରେ ଧରି ଶ୍ୱେତହସ୍ତୀ ଉପରେ ବସି ପଞ୍ଚକୋଟକ ପରିକ୍ରମା କରିବାକୁ ଶୋଭାଯାତ୍ରାରେ ବାହାରିଲେ । ସେହି ଶୋଭାଯାତ୍ରାରେ ଲକ୍ଷେ ରାଜା ଯୁଧିଷ୍ଠିରଙ୍କ ପଛେ ପଛେ ଚାଲିଲେ । ଛତ୍ର, ଚାମର ଚତୁରଙ୍ଗବଳ ଇତ୍ୟାଦି ସହିତ ସେହି ବିରାଟ ଶୋଭାଯାତ୍ରାକୁ ଦେବନାରୀମାନେ ମଧ୍ୟ ଅଧାସ୍ୱର୍ଗରେ ରହି ଦେଖିଲେ ।

ଶୋଭାଯାତ୍ରା ଶେଷରେ ଦାନ ବିତରଣ ଆରମ୍ଭ ହେଲା । ମୁନି, ଋଷି, ବ୍ରାହ୍ମଣମାନଙ୍କୁ ଯଥା ଯୋଗ୍ୟ ଦାନଦେଇ ଯୁଧିଷ୍ଠିର ମହାରାଜା ସମସ୍ତଙ୍କୁ ପରିତୃପ୍ତ କରାଇଲେ । ଜଣେ ଜଣେ ବ୍ରାହ୍ମଣ ଯେତେ ପରିମାଣ ଦାନ ନେଲେ, ସେଥିରେ କୌଣସି କୃଷି, ବାଣିଜ୍ୟ ନକରି ମଧ୍ୟ ସାରାଜୀବନ ସପରିବାର ଚଳି ଯାଇପାରିବେ ।

ଦାନ ବିତରଣ ପରେ ବ୍ୟାସଦେବଙ୍କ ନିର୍ଦ୍ଦେଶରେ ଯୁଧିଷ୍ଠିର ବିଧି ଅନୁଯାୟୀ ଅର୍ଘ୍ୟ ପ୍ରଦାନ ପାଇଁ ପ୍ରସ୍ତୁତ ହେଲେ । ସେ ଗୋଟିଏ ସୁବର୍ଣ୍ଣର ପାତ୍ରରେ ଲକ୍ଷେ ଅଷ୍ଟରତ୍ନ ଓ ମାଣିକ୍ୟର ଦୀପଧରି ସଭାରେ ଉପସ୍ଥିତ ହେଲେ ଓ କାହାକୁ ପାଦାର୍ଘ୍ୟ ଦେଇ ପୂଜା କରିବେ ବୋଲି ରାଜାମାନଙ୍କୁ

ପଗ୍ଭରଲେ । ଏହାଶୁଣି ରାଜାମାନେ ମୌନ ରହି ପରସ୍ପର ମୁହଁକୁ ଚାହିଁଲେ । ସ୍ୱୟଂ ଧର୍ମରାଜ ଯୁଧିଷ୍ଠିର ପୁଣି କାହାକୁ ପାଦାର୍ଘ୍ୟ ପ୍ରଦାନ କରିବେ ।

ରାଜାମାନେ ଏ ବିଷୟରେ ବୟୋବୃଦ୍ଧ ଦ୍ରୋଣଗୁରୁଙ୍କର ପରାମର୍ଶ ଲୋଡ଼ିଲେ । ଦ୍ରୋଣ କହିଲେ, "ଧର୍ମ, ଅର୍ଥ, କାମ, ମୋକ୍ଷ—ଏ ଚତୁର୍ବର୍ଗ-ଦାତା ସ୍ୱୟଂ ଶ୍ରୀକୃଷ୍ଣଙ୍କ ଛଡ଼ା ଧର୍ମରାଜଙ୍କ ହାତରୁ ଅର୍ଘ୍ୟ ଗ୍ରହଣ କରିବା ଆଉ କାହା ପକ୍ଷରେ ସମ୍ଭବ ? ତେଣୁ ସେ ଶ୍ରୀଜଗନ୍ନାଥଙ୍କ ଚରଣରେହିଁ ଅର୍ଘ୍ୟପ୍ରଦାନ କରନ୍ତୁ ।" ରାଜାମାନେ ଏହାଶୁଣି ଆନନ୍ଦରେ କରତାଳି ଦେଲେ । ଯୁଧିଷ୍ଠିର ରତ୍ନଝରିରେ ତୀର୍ଥଜଳ ନେଇ ଜଗନ୍ନାଥ (ଶ୍ରୀକୃଷ୍ଣ) ଙ୍କର ପାଦ ପଖାଳିଲେ । ଅଷ୍ଟରତ୍ନମାଳା ତାଙ୍କର ଗଳାରେ ଲମ୍ବାଇ-ଦେଲେ । ତାଙ୍କୁ ବନ୍ଦାପନା କରି ଦୁର୍ବାକ୍ଷତ, ସୁବାସ କୁସୁମ ତାଙ୍କର ଶ୍ରୀଚରଣରେ ଅର୍ପଣ କଲେ । ଶ୍ରୀକୃଷ୍ଣ ହସ ହସ ବଦନରେ ଯୁଧିଷ୍ଠିରଙ୍କୁ ଆଲିଙ୍ଗନ କଲେ । ଆକାଶରୁ ପୁଷ୍ପବୃଷ୍ଟି ହେଲା ।

ଦୁଷ୍ଟରାଜାମାନେ ଏ ଦୃଶ୍ୟଦେଖି ସହିପାରିଲେନାହିଁ । ସେମାନଙ୍କ ମନରେ ଶ୍ରୀକୃଷ୍ଣଙ୍କ ପ୍ରତି ଈର୍ଷା ହେଲା । ଶକୁନି ଶିଶୁପାଳକୁ ଉସୁକାଇ କହିଲେ, "ଏତେ ରାଜା ଥାଉ ଥାଉ ଗଉଡ଼ କୃଷ୍ଣ ପାଦାର୍ଘ୍ୟ ପାଇଲା ! ତୁମେମାନେ ଏହା ମୌନରେ ସହିବ ? ତୁମେପରି କୃଷ୍ଣର ଭାଇହେବ ? ପରିହାସରେ ହେଲେ ଦି'ପଦ ଶୁଣାଉନାହଁ କାହିଁକି ?" ଶିଶୁପାଳ କହିଲା "ତୁମେମାନେ ଯଦି ମୋର 'ପିଠିରକ୍ଷା' କରିପାରିବ ତେବେ ମୁଁ କୃଷ୍ଣକୁ ଦିପଦ ଭଲକରି ଶୁଣାଇଦେବି ।" ହଠାତ୍ ଦୁର୍ଯ୍ୟୋଧନ ଉଠିପଡ଼ି କହିଲେ, "ତୁମେ ନିର୍ଭୟରେ ପ୍ରତିବାଦ କର । ମୁଁ ତୁମ 'ପିଠିରକ୍ଷା'ର ସମସ୍ତ ଦାୟିତ୍ୱ ନେଲି ।"

ଦୁର୍ଯ୍ୟୋଧନ କଥାରେ ଉତ୍ସାହିତ ହୋଇ ଶିଶୁପାଳ ଉଠିଲା ଓ ସଭାମଧ୍ୟରେ ଶ୍ରୀକୃଷ୍ଣଙ୍କ ପ୍ରତି ବହୁତ ଝିଙ୍ଗାସି କରି କହିବାକୁ ଆରମ୍ଭ କଲା । "ହେ ଯୁଧିଷ୍ଠିର, ତୁମେ ଏଡ଼େ ବଡ଼ ଯଜ୍ଞକରି ଶେଷରେ ଗୋଟାଏ ଗଉଡ଼କୁ ପାଦାର୍ଘ୍ୟ ଦେଲ ! ସେ କେଉଁ ରାଜାର ପୁଅ ମତେ କହିଲ ?

ନନ୍ଦ ଗଉଡ଼ ତାର ବାପ, ଯଶୋବନ୍ତୀ ଗଉଡୁଣୀ ତାର ମାଆ । ଗୋପପୁରରେ ଗାଈ ଚରାଉଥିଲା । ଖାଲି ସେତିକି ନୁହେଁ ପିଲାଦିନେ ସ୍ତ୍ରୀହତ୍ୟା, ଗୋ ହତ୍ୟା, ପରଦାରା ହରଣ ଆଦି ଯେତେକ ପାତକ ସବୁ କଲା । ସେ'ଟା ମହା ପାତକୀ । ତାକୁ କପଟ ଆଜିଯାଏ ଧର୍ମ ସହୁଛି କେଜାଣି ?"

ଶିଶୁପାଳ ମୁଖରୁ କୃଷ୍ଣନିନ୍ଦା ଶୁଣି ଭୀମ ରାଗରେ ଦାନ୍ତ କଡ଼ମଡ଼ କରି ଉଠିଲେ । ଯୁଧିଷ୍ଠିର ଏହା ଲକ୍ଷ୍ୟ କଲେ ଓ ଭାବିଲେ ଭୀମ ନିଶ୍ଚୟ ଏକ୍ଷଣି ଯାଇ ଶିଶୁପାଳର ବେକ ମୋଡ଼ିଦେବ । ତେଣୁ ସେ ହଠାତ୍ ଉଠିଯାଇ ଭୀମକୁ ବସାଇ ଦେଲେ ଓ ବୁଝାଇ ସୁଝାଇ କହିଲେ, "ବାବୁ ତୁ ଧୈର୍ଯ୍ୟଧର । ତୁ ରାଗିଗଲେ ଆମର ଧର୍ମ ନଷ୍ଟହେବ । ଶିଶୁପାଳ କୃଷ୍ଣ ନିନ୍ଦାର ଫଳ ହାତେ ହାତେ ପାଇବ । ଆମେ କାହିଁକି ତା ଦେହରେ ହାତଦେବା ?" ଏହା ଶୁଣି ଭୀମ ଶାନ୍ତହୋଇ ବସିଲେ ।

ଏଣେ ଶିଶୁପାଳ କହି ଚାଲିଛି, "ଏ ଗଉଡ଼ଟା ପୁଣି କୁଆଡ଼େ ବୀର ! ଜରାସନ୍ଧ ରାଜା ସେ ଦୁଇଭାଇଙ୍କୁ ତଡ଼ିନେଇ ସମୁଦ୍ର ପନ୍ତାରେ ଛାଡ଼ିଲା ! କୌଶଳ କରି କୃଷ୍ଣ ପାଣ୍ଡବଙ୍କୁ ବରାବର ନିଜସ୍ୱାର୍ଥରେ ଲଗାଉଛି । ପାଣ୍ଡବମାନେ ତ ହେଲେ ଜାରଜାତକ । ବାପା ବ୍ରହ୍ମହତ୍ୟା କଲେ ଶୁଣି

"ଯେଉଁକା ମାତା ଭୁମ୍ବରରେ ଅଛଇ ଭିନ ପିତା
ଯେଉଁକା ଭାରିଜାକୁ ଭୁଚେମ୍ବରେ ହୋଇଲ ପଞ୍ଚ ଭ୍ରାତା ।"

ତେଣୁ ତୁମଠାରୁ ଆଉ କି ନ୍ୟାୟ ଆଶା କରାଯାଇପାରେ ? ଗଉଡ଼କୁ ପାଦାର୍ଘ୍ୟ ଦେବା ତୁମ ପକ୍ଷରେହିଁ ସମ୍ଭବ ।"

ଶିଶୁପାଳର ଏ ସବୁ ଝିଙ୍ଗାସ କଥା ଦ୍ରୋଣଙ୍କର ସହ୍ୟ ହେଲାନାହିଁ । ସେ ଉଠି କହିଲେ, "ହେ ଶିଶୁପାଳ, ତୁମେ ଅତ୍ୟନ୍ତ ଅଜ୍ଞାନ । ଯେଉଁ ପ୍ରଭୁ ଜଗଦ୍‌ବନ୍ଦନ, ଯାହାଙ୍କ ଉଦରରେ ନବଖଣ୍ଡ ମେଦିନୀ, ଯାହାଙ୍କ ଲୋମକୂପରେ କୋଟି କୋଟି ବ୍ରହ୍ମାଣ୍ଡ, ତାଙ୍କୁ ତୁମେ କଅଣ କହି ଯାଉଛ ?"

ମାନ ଶିଶୁପାଳକୁ ତ ଦଇବ ଗ୍ରୁଡ଼ଲାଣି । ଯମ ଦେବତା ତେଣେ ତାର ପାଞ୍ଜି ପୋଛୁଲାଣି । ସେ ଶ୍ରୀକୃଷ୍ଣଙ୍କୁ ଲକ୍ଷ୍ୟ କରି ପୁଣି କହିଲା, "ଆରେ ହେ ଗଉଡ଼, କଥାର ଉତ୍ତର ନଦେଇ ମଉନବ୍ରତ କରି କାହିଁକି ବସି ରହିଛୁ ? ପାଣ୍ଡବ ଜାରଜାତକାଙ୍କୁ ତୋର ମଧ୍ୟ ମାଟକୁଳ । ଏହିକ୍ଷଣି ଗୃପୋଡ଼େ ମାରି ତୋର ଶିର ଛୁଣ୍ଡାଇବ । ଏବେ ତୋର ଇଷ୍ଟଦେବ ସ୍ମରଣ କର ।" ଏହାକହି ଖୋଳରୁ ତରବାରି କାଢିଲା ।

ଶ୍ରୀକୃଷ୍ଣ ଆଉ ଥୟହୋଇ ରହିପାରିଲେ ନାହିଁ । ଲକ୍ଷେ ରାଜାଙ୍କ ସମ୍ମୁଖରେ ତାଙ୍କର ଓ ପାଣ୍ଡବମାନଙ୍କର ମର୍ଯ୍ୟାଦା ରକ୍ଷା କରିବାକୁ ହେବ । ସେ ଜାଣିଲେ ଯେ ଶିଶୁପାଳର ଆୟୁଷ ଶେଷହେଲା । ନଚେତ୍ ଏପରି କୁଭାଷା ତାର ମୁଖକୁ ଆସି ନଥାନ୍ତା । ସେ ଶେଷରେ ମାରବତା ଭର୍ତ୍ସି କହିଲେ, "ଶିଶୁପାଳ, ମାତାର ଶପଥ ନେଇ ଅଜ୍ଞାତରେ ମୁଁ ତୁମକୁ ଶେଷଥର ପାଇଁ କ୍ଷମା କରି ସାରିଛି । ଆଜି ଆଉ ତାହା ସମ୍ଭବ ନୁହେଁ ।" ଏହା କହି ସୁଦର୍ଶନ ଚକ୍ରକୁ ସ୍ମରଣ କଲେ । ସମସ୍ତେ ଗୃହିଁ ରହିଛନ୍ତି । ଆଖି ପିଛୁଳାକେ ଚକ୍ରାଘାତରେ ଶିଶୁପାଳର ମୁଣ୍ଡ ଗଣ୍ଡି ଅଲଗା ହୋଇଗଲା । ଏହାଦେଖି ଦୁଷ୍ଟ ରାଜାମାନେ ଭୟରେ ସଭାଛାଡ଼ି ପଳାଇଗଲେ ।

ସମସ୍ତ ବିଧି ବିଧାନ ସହିତ ରାଜସୂୟ ଯଜ୍ଞ ଉଦ୍‌ଯାପନ ହେଲା । ଆକାଶବାଣୀ ଶୁଭିଲା ଯେ ପାଣ୍ଡୁ ମହାରାଜା ବ୍ରହ୍ମହତ୍ୟା ପାତକରୁ ମୁକ୍ତ-ହୋଇ ସ୍ୱର୍ଗକୁ ଗଲେ । ରାଜାମାନେ ମଧ୍ୟ ଶ୍ରୀକୃଷ୍ଣ ଓ ଯୁଧିଷ୍ଠିରଙ୍କୁ ପ୍ରଣାମ କରି ନିଜନିଜ ରାଜ୍ୟକୁ ଫେରିଗଲେ ।

ବ୍ୟାସଦେବ କହିଲେ ଯେ ଏତେ ଦିନକେ ବିଷ୍ଣୁଙ୍କର ଦ୍ୱାରପାଳ ଜୟ ବିଜୟ ଦୁଇଭାଇ ଶାପ ମୁକ୍ତ ହେଲେ । ବ୍ରହ୍ମାଙ୍କର ପୁତ୍ର ମନୁ, ଥରେ ବିଷ୍ଣୁ ଦର୍ଶନ କରି ଯିବାବେଳେ ଜୟବିଜୟ ତାଙ୍କୁ ବାଟ ଛାଡ଼ିଲେ ନାହିଁ । ତାଙ୍କର ବାଙ୍ଗରା ଆକୃତି ଦେଖି ବହୁତ ବ୍ୟଙ୍ଗ ବିଦ୍ରୁପ କଲେ । ଶେଷରେ ଧକ୍କାମାରି ତଡ଼ିଦେଲେ । ତେଣୁ ତାଙ୍କର ଅଭିଶାପରେ ସେ ଦୁହେଁ ପ୍ରଥମ ଜନ୍ମରେ ହିରଣ୍ୟ ଓ ହିରଣାକ୍ଷ, ଦ୍ୱିତୀୟ ଜନ୍ମରେ ରାବଣ

କୁମ୍ଭକର୍ଣ୍ଣ ଓ ବିଭୀଷଣ ଜନ୍ମରେ ଦନ୍ତବକ୍ର ଓ ଶିଶୁପାଳ ରୂପେ ଜନ୍ମହୋଇ ବିଷ୍ଣୁଙ୍କ ହାତରେ ନିହତ ହେଲେ ।

ଦନ୍ତବକ୍ରକୁ ରୁକ୍ମିଣୀ ସ୍ୱୟଂବରବେଳେ ଶ୍ରୀକୃଷ୍ଣ ବଧ କରିଥିଲେ । ଏବେ ନିଜେ ଚକ୍ରଦ୍ୱାରା ଶିଶୁପାଳ ମସ୍ତକ ଛେଦନ କରି ତାକୁ ମୁନି ଅଭି-ଶାପରୁ ମୁକ୍ତକଲେ ।

ଯଜ୍ଞ ଶେଷପରେ ଶ୍ରୀକୃଷ୍ଣ ଓ ଯୁଧିଷ୍ଠିରଙ୍କ ଅନୁରୋଧ କ୍ରମେ ବିଭୀଷଣ ଆଉ କିଛି ଦିନ ଇନ୍ଦ୍ରପ୍ରସ୍ଥରେ ରହିଲେ । ଲଙ୍କାକୁ ଫେରିଯିବାବେଳେ ଶ୍ରୀକୃଷ୍ଣଙ୍କୁ ପଚାରିଲେ, "ପ୍ରଭୁ, ଏହି ଦ୍ୱାପରଯୁଗରେ ତୁମର ଦର୍ଶନ ପାଇ ଧନ୍ୟ ହେଲି । ପୁଣି କଳି ଯୁଗରେ ଦର୍ଶନ ପାଇବି ତ ?" ଶ୍ରୀକୃଷ୍ଣ ତାଙ୍କୁ ସ୍ନେହରେ ଆଲିଙ୍ଗନ କରି କହିଲେ, "ନିଶ୍ଚୟ ପାଇବ । ବାରିନିଧି ଉତ୍ତର-ତଟେ ଯମନିକ ତୀର୍ଥରେ ନୀଳସୁନ୍ଦର ପର୍ବତରେ ମୁଁ 'ବଉଦ୍ଧ' ରୂପ ଧରି ବିଜେ କରିବି । ମିଥୁନମାସ ଶୁକ୍ଳପକ୍ଷ ଦ୍ୱିତୀୟା ତିଥିରେ ଦକ୍ଷିଣମୂର୍ତ୍ତିହୋଇ ରଥଯାତ୍ରାକୁ ବିଜେ କରିବା ସମୟରେ ନୀଳସୁନ୍ଦର ପର୍ବତ ଉପରୁ ମୁଁ ଲଙ୍କାଗଡ଼କୁ ଦୃଶ୍ୟହେବି । ସମସ୍ତେ ମୋତେ ସେହି ରୂପରେ ଦର୍ଶନ କରିବେ ।

ଏହାଶୁଣି ବିଭୀଷଣ ଅତ୍ୟନ୍ତ ଆନନ୍ଦିତ ହୋଇ ଆଖି ପାଇବା ପର୍ଯ୍ୟନ୍ତ ଶ୍ରୀକୃଷ୍ଣଙ୍କୁ ପ୍ରଣାମ କରି କରି ସସୈନ୍ୟେ ଲଙ୍କାଗଡ ଫେରିଗଲେ ।

## ଅର୍ଜୁନ ବୃକ୍ଷର ଉତ୍ପତ୍ତି ।

ନାଗରାଜା ବାସୁକୀ ପାତାଳ ଭୁବନକୁ ଫେରିଯାଇ ଦେଖିଲେ ଅର୍ଜୁନ ଧନୁହୁଳରେ ପୃଥିବୀ ଧାରଣ କରି ରହିଛନ୍ତି । ସେ ଅର୍ଜୁନଙ୍କୁ ବହୁତ ପ୍ରଶଂସା କରି ନିଜର ସପ୍ତଫେଣା ଉପରେ ପୁନର୍ବାର ପୃଥିବୀ ଧାରଣ କଲେ । ଅର୍ଜୁନ ପୃଥିବୀ ଧାରଣ କରି ରହିଥିବା ସମୟରେ ବାସୁକୀଙ୍କର କନ୍ୟା ନାଗବାଳୀ ଅର୍ଜୁନଙ୍କର ବହୁତ ସେବା କରିଥିଲା । ଏବେ ବାସୁକୀ ତାଙ୍କ କନ୍ୟାର ପାଣି ଗ୍ରହଣ କରିବାକୁ ଅର୍ଜୁନଙ୍କୁ ଅନୁରୋଧ କଲେ । ଅର୍ଜୁନବି ସେ କନ୍ୟାର ରୂପ ଗୁଣରେ ଆଗରୁ ମୁଗ୍ଧହୋଇ ଥିଲେ । ତେଣୁ ସେ ପ୍ରସ୍ତାବରେ ଆନନ୍ଦରେ ରାଜି ହୋଇଗଲେ ।

ନାଗକନ୍ୟାକୁ ବିବାହ କରି ଅର୍ଜ୍ଜୁନ ଆନନ୍ଦରେ ପାତାଳ ଭୁବନରେ ରହିଗଲେ । ନାଗୁଣୀ ନିଜର ସେବା, ଭକ୍ତି ପୁଣି ପୁରୁଷବଶ ବିଦ୍ୟାରେ ଅର୍ଜ୍ଜୁନଙ୍କୁ ସମ୍ପୂର୍ଣ୍ଣ ମୋହିତ କରି ରଖିଲା । ଅର୍ଜ୍ଜୁନ ନାଗକନ୍ୟାର ପ୍ରେମରେ ବୁଡ଼ରହି ଯୁଧିଷ୍ଠିର, ଶ୍ରୀକୃଷ୍ଣ, ସୁଭଦ୍ରା, ଦ୍ରୌପଦୀ ସମସ୍ତଙ୍କୁ ଭୁଲିଗଲେ ଓ ଆଉ ମଧ୍ୟଭୁବନକୁ ଫେରିବା ନାଁ ଧରିଲେ ନାହିଁ ।

ଏଣେ ଶ୍ରୀକୃଷ୍ଣ ଯୁଧିଷ୍ଠିର, ଅର୍ଜ୍ଜୁନ ପାତାଳ ଭୁବନରୁ ନଫେରିବାର ଦେଖି ମହାବ୍ୟସ୍ତ । ସେମାନେ ଭାବୁଛନ୍ତି ନାଗରାଜା ତ ବହୁ ଦିନରୁ ପାତାଳକୁ ଫେରି ଗଲେଣି । ଅର୍ଜ୍ଜୁନ ବାହୁଡ଼ ଆସିବାରେ ଏତେ ବିଳମ୍ବ କାହିଁକି ହେଉଛି ? ଭାଇକୁ ମୋର କିଛି ବିପତ୍ତି ପଡ଼ିଲାକି ? ଯୁଧିଷ୍ଠିର ବ୍ୟସ୍ତ ହୋଇ ସହଦେବଙ୍କୁ ଏ ବିଷୟ ପଚାରିବାରୁ ସେ ସବୁକଥା ଆମୂଳ-ଚୂଳ କହିଗଲେ । ନାଗୁଣୀ ତୁଲେ ବିବାହ କଥା ଶୁଣି ଶ୍ରୀକୃଷ୍ଣ ମୁରୁକେଇ ହସିଲେ ଓ ଅର୍ଜ୍ଜୁନଙ୍କୁ ସ୍ମରଣ କଲେ ।

ଏଣେ ପାତାଳରେ ଅର୍ଜ୍ଜୁନ ନାଗବାଳୀର ବାହୁପାଶରେ ଆବଦ୍ଧ ହୋଇ ତା ସଙ୍ଗେ କ୍ରୀଡ଼ାରସରେ ମାତିଛନ୍ତି । କ୍ଷଣେହେଲେ ତାକୁ ପାଖରୁ ଅନ୍ତର କରୁ ନାହାନ୍ତି । ଶ୍ରୀକୃଷ୍ଣ ସ୍ମରଣ କରିବାରୁ ତାଙ୍କର ଆସନ କମ୍ପିଲା । ସେ ତଙ୍ଗେ ତଙ୍ଗେ ନାଗବାଳୀର ବାହୁବନ୍ଧନରୁ ନିଜକୁ ମୁକ୍ତ କରି ଉଠି ଠିଆହେଲେ । ନାଗବାଳୀ ନିଜର ପ୍ରିୟତମଙ୍କର ହଠାତ୍ ଏ ଭାବାନ୍ତର ଦେଖି ବହୁତ ବିନମ୍ର ହୋଇ ପାଦତଳେ ପଡ଼ି କାରଣ ପଚାରିଲେ । "ହେ ପ୍ରଭୁ, ଦାସୀପ୍ରତି ଆଜି ଏପରି ନିଷ୍ଠୁର କାହିଁକି ହେଲ ? କିଛି ଅପରାଧ କଲିକି ? ପାଦପଦ୍ମ ସେବାରେ କିଛି ତ୍ରୁଟି ହେଲା କି ? ସବୁ ଅପରାଧ ମୋର କ୍ଷମା କର ।" ଏହା କହି ଅର୍ଜ୍ଜୁନଙ୍କ ପାଦ ଦୁଇଟି ଯାବୁଡ଼ି ଧରି କଇଁ କଇଁ ହୋଇ କାନ୍ଦି ଉଠିଲା । ଅର୍ଜ୍ଜୁନ ନିଜର ପ୍ରିୟତମାର ଦୁଃଖଦେଖି ତାକୁ ତଳୁ ଉଠାଇ କୋଳାଗତ କଲେ ଏବଂ ପ୍ରବୋଧନା ଦେଇ କହିଲେ, "ହେ ପ୍ରିୟେ, ତୁମର ସେବା, ଯତ୍ନ, ଅଗାଧ ପ୍ରେମରେ ମୁଁ ସମ୍ପୂର୍ଣ୍ଣ ବିଭୋର ହୋଇ ସବୁ ଭୁଲିଯାଇଛି । ଏବେ ମୋର ଠାକୁର ଦେବ ବନମାଳୀ ମୋତେ ସ୍ମରଣ କଲେଣି । ତେଣୁ ମୋତେ ଯଥାଶୀଘ୍ର ଫେରି ଯିବାକୁ ହେବ ।"

ଏହା ଶୁଣି ନାଗବାଳୀର ମସ୍ତକରେ ସତେ ଯେପରି ବଜ୍ର ପଡ଼ିଲା । ସେ ଅତି ଆକୁଳହୋଇ କହିଲା "ହେ ପ୍ରଭୁ, ମୁଁ ତୁମର ପତ୍ନୀହେବାକୁ ଯୋଗ୍ୟ ନୁହେଁ । ମୋର କେଉଁ ପୁଣ୍ୟ ଫଳରୁ ଅତି ଅଦ୍ଭୁତଭାବେ ତୁମେ ମୋତେ ସ୍ୱାମୀରୂପେ ପ୍ରାପ୍ତ ହୋଇଥିଲ । ବିଧାତା କ'ଣ ଏତେ ଶୀଘ୍ର ମୋର ସୁଖ ଶେଷ କରି ଦେଲା ? ତୁମକୁ ଛାଡ଼ି ମୁଁ କପରି ବଞ୍ଚିରହିବି ? ତୁମେ ଯିବା ସଙ୍ଗେ ସଙ୍ଗେ ନିଶ୍ଚିତଭାବେ ମୋର ମରଣ ହେବ । ଏ ଦାସୀ ତୁମକୁ ମୁକ୍ତି କଦାପି ରହି ପାରିବ ନାହିଁ । କେତେ ଦିନକୁ ଆସି ସ୍ନେହ ଲଗାଇଲ । ଏ ଦେହ ମନ ପ୍ରାଣ ସବୁ ଆବୋରି ନେଲ । ଏବେ ଛାଡ଼ି-ଯିବାକୁ ତୁମର କପରି ସତ ବଳିବ ? ଏ ଦାସୀପ୍ରତି ଏତେ ନିଷ୍ଠୁର ତୁମେ ହୋଇ ପାରିବ ପ୍ରଭୁ ? ଯଦି ତୁମେ ନିଶ୍ଚୟ ଯିବ, ତେବେ ଅନୁଗ୍ରହ କରି ଏ ଦାସୀକୁ ସଙ୍ଗରେ ନେଇ ଯାଅ । ସେଠାରେ ମୁଁ ତୁମର ସେବାକରି ଚଳିଯିବି । କୌଣସି ଜଞ୍ଜାଳ କରିବି ନାହିଁ ।" ଅର୍ଜ୍ଜୁନ ମହା ସମସ୍ୟାରେ ପଡ଼ିଲେ । ତେଣେ କର୍ତ୍ତବ୍ୟର ଆହ୍ୱାନ । ଏଣେ ନାଗବାଳୀର ନିବିଡ଼ ପ୍ରଣୟ । ସେ ନାଗବାଳୀକୁ ପ୍ରବୋଧନାଦେଇ କହିଲେ, "ହେ ସୁନ୍ଦରୀ, ନାଗରାଜାଙ୍କର ଅତି ଅଲିଅଳି କନ୍ୟା ତୁମେ । ଜଗନ୍ନାଥଙ୍କର ଭଗିନୀ ସୁଭଦ୍ରା ମୋର ଭାରିଜା । ବଡ଼ ଦୁଷ୍ଟ ଅସହିଷ୍ଣୁ ସେ । ପୁଣି ଦ୍ରୁପଦ ରାଜ କନ୍ୟା ଦ୍ରୌପଦୀ ମୋର ସ୍ତ୍ରୀ । ସେ ମଧ ବଡ଼ ପ୍ରତାପୀ । ସେମାନଙ୍କର ବ୍ୟବହାର, ଝିଙ୍ଗାସ କଥା ତୁମ ପକ୍ଷରେ ଅସହ୍ୟ ହେବ । ତେଣୁ ଆମ ସମସ୍ତଙ୍କର ଭଲପାଇଁ କହୁଛି ତୁମେ ପିତାଘରେ ଏହିଠାରେ ଥାଅ । ମୁଁ ନିଶ୍ଚୟ ମଝେ ମଝେ ଆସୁଥିବି । ମୋର ଶପଥ, ତୁମେ ଆଉ କାନ୍ଦ ନା ।"

ନାଗରାଜା ବାସୁକୀ ମଧ ଝିଅକୁ ବୁଝାଇଲେ । "ମା ମୋର, ଅର୍ଜ୍ଜୁନ ସ୍ୱୟଂ ଦ୍ୱିତୀୟ ନାରାୟଣ । କେଉଁ ଭାଗ୍ୟବଳରେ ତୋର ସ୍ୱାମୀ ହୋଇଛନ୍ତି । ପୃଥିବୀର ଭାରନିବାରଣ କାର୍ଯ୍ୟରେ ଜଗନ୍ନାଥଙ୍କୁ ସହାୟତା କରିବା ପାଇଁ ତାଙ୍କର ଜନ୍ମ । ତାଙ୍କର ବିରାଟ କର୍ତ୍ତବ୍ୟର ଆହ୍ୱାନ । ସେ ଅବଶ୍ୟ ଯିବେ, ତୁ ମନରେ ଦୁଃଖ ନକରି ତାଙ୍କୁ ଆନନ୍ଦ ମନରେ ବିଦାୟ ଦେ ।"

ସ୍ୱାମୀ ଓ ପିତା ଉଭୟଙ୍କର ପ୍ରବୋଧନାରେ ନାଗବାଳୀର ମନ ଟିକିଏ ବୁଝିଲା । ସେ ସ୍ୱାମୀଙ୍କ ଗଳାରେ ନିଜର ବାହୁବେଷ୍ଟନ କରି ତୁନି ତୁନି କହିଲା, "ପ୍ରଭୁ ତୁମର ସନ୍ତାନକୁ ମୁଁ ଦୁଇପାସ ହେଲା ଗର୍ଭରେ ଧାରଣ କଲିଣି । ପଛରେ ମୋତେ ଅପବାଦ ଦେବନି ତ ? ଅର୍ଜ୍ଜୁନ ଏହା ଶୁଣି ବହୁତ ଆନନ୍ଦିତ ହୋଇ କହିଲେ, ' ଏହା ମୋର ପରମ ସୌଭାଗ୍ୟ । ଆମର ପୁଅଟିଏ ହେଲେ ତୁମେ ଆମ ଦୁହିଙ୍କର ନାମକୁ ମିଶାଇ ତାର ନାମ ଦେବ । ତା ପରେ ନାଗବାଳୀ କହିଲା, "ମୋର ତ ଯୁବା ବୟସ । ତୁମର ଅନୁପସ୍ଥିତିରେ ମୋର ଶରୀରରେ ଯଦି ଉତ୍ତେଜନା ହୁଏ ମୁଁ ତାକୁ କିପରି ଶାନ୍ତ କରିବି ? ଅର୍ଜ୍ଜୁନ ତତ୍‌କ୍ଷଣାତ୍ ବାମ କରରେ ଏକ ଶର ଧରି ନିଜର ଦକ୍ଷିଣ କରକୁ ତିନିଗାର ପକାଇ ଚିରିଲେ । ତାଙ୍କର ରକ୍ତ ଭୂମିରେ ପଡିବାରୁ ସେଠାରେ ଗୋଟିଏ ଅତି ସୁନ୍ଦର, ସୁସଞ୍ଚ, କୋମଳ ବୃକ୍ଷର ଉତ୍ପତ୍ତି ହେଲା । ଅର୍ଜ୍ଜୁନ ସେହି ବୃକ୍ଷକୁ ଦେଖାଇ କହିଲେ, "ହେ ପ୍ରିୟେ ଏହାର ନାମ ହେଲା ଅର୍ଜ୍ଜୁନ ବୃକ୍ଷ । ତୁମେ ଶୃଙ୍ଗାର ଇଚ୍ଛା କଲେ ନାନା ସୁବେଶ ହୋଇ ମତେ ସ୍ମରଣ କରି ଏହି ବୃକ୍ଷକୁ ଆଲିଙ୍ଗନ କରିବ । ତାହା ଦ୍ୱାରା ତୁମର କାମନା ପୂର୍ଣ୍ଣ ହେବ । ଶରୀରର ଉତ୍ତେଜନା ଶାନ୍ତ ହୋଇଯିବ । ମୋ ନିଜ ରକ୍ତରୁ ଜାତ ଏହି ବୃକ୍ଷକୁ ଯତ୍ନରେ ସେବା କରୁଥିବ ।"

ତାପରେ ନାଗବାଳୀ କହିଲା, "ତୁମର ତ କ୍ଷତ୍ରିୟ ବୃତ୍ତି । କେତେ-ବେଳେ ଯଦି ତୁମର କିଛି ଅଘଟଣ ହୋଇଯାଏ ମୁଁ ଏଠାରେ ଥାଇ କିପରି ଜାଣିବି ?" ଅର୍ଜ୍ଜୁନ ଏ କଥାଟିକୁ ହସରେ ଉଡ଼ାଇ ଦେଇ କହିଲେ, "ପିଲାଙ୍କ ପରି ତୁମେ କଥା କହୁଛ । ମୋର ପ୍ରାଣନାଶ କଲାପରି ବୀର ପୃଥିବୀରେ ନାହିଁ । ପୁଣି ମୋର ବଡ଼ଭାଇ ଭୀମସେନଙ୍କୁ ଯମ ମଧ୍ୟ ଦେଖିଲେ ଭୟକରେ । ଅନ୍ୟାୟ ଅପଥକୁ ଆମେ ଗୋଡ ବଢାଉନାହିଁ । ତେଣୁ ସ୍ୱୟଂ ଜଗନ୍ନାଥ ଆମର ସହାୟ । ତୁମେ ସେ ଦୁଶ୍ଚିନ୍ତା ମନରୁ ଛାଡ଼ି ନିଶ୍ଚିନ୍ତ ରହ ।" ତଥାପି ନାଗବଳୀର ମନ ମାନିଲାନାହିଁ । ସେ କହିଲା, "ସ୍ୱାମୀ, ଜନ୍ମ ହେଲେ ତ ମୃତ୍ୟୁ ସୁନିଶ୍ଚିତ । ମଧ୍ୟ ଭୁବନରେ ଅମର ହୋଇ କେହି ରହି ନପାରେ ।" ଅର୍ଜ୍ଜୁନ ଏହା ଶୁଣି କହିଲେ, "ତେବେ ତୁମେ

ଲକ୍ଷ୍ୟ ରଖିଥାଅ । ଏହି ଅର୍ଜ୍ଜୁନ ବୃକ୍ଷଟି ଯେଉଁଦିନ ମଉଳି ପଡ଼ିବ ସେହିଦିନ ଜାଣିବ ମୋତେ କିଛି ପ୍ରମାଦ ପଡ଼ିଲା । ତେବେ ଏହା ହୁଏତ କେବେ ହେଲେ ଘଟି ନପାରେ । ତୁମେ କିଛି ବ୍ୟସ୍ତ ହୁଅନାହିଁ । ମୁଁ ନିଶ୍ଚୟ ମଝିରେ ମଝିରେ ଆସୁଥିବି । ତୁମର ଅଗାଧ ପ୍ରଣୟ, ସେବା ଯତ୍ନରେ ମୁଁ ଆଜୀବନ ତୁମ ନିକଟରେ ଋଣୀ । ଏହା କହି ନାଗବାଳୀଠାରୁ ବିଦାୟ ନେଇ ଅର୍ଜ୍ଜୁନ ଇନ୍ଦ୍ରପ୍ରସ୍ଥ ଫେରିଗଲେ ।

## ଶାଲ୍ୱ ବଧ

ରାଜସୂୟ ଯଜ୍ଞ ଶେଷରେ ଶ୍ରୀକୃଷ୍ଣ ଦ୍ୱାରବତୀ ପୁରକୁ ଫେରିଯିବା ପାଇଁ ଯୁଧିଷ୍ଠିରଙ୍କର ଅନୁମତି ମାଗିଲେ । ଯୁଧିଷ୍ଠିର ଶ୍ରୀକୃଷ୍ଣ ଫେରିଯିବା କଥା ଶୁଣି ହୃଦୟର କୋହକୁ ଘୁଞ୍ଚି ରଖିପାରିଲେ ନାହିଁ । ତାଙ୍କର ଚକ୍ଷୁ ଲୋତକ ପୂର୍ଣ୍ଣ ହୋଇଗଲା । ସେ ଥର ଥର କଣ୍ଠରେ କହିଲେ, "ବାବୁ ଜଗନ୍ନାଥ, ମୋହର ବୋଲି ଏ ଯେଉଁ ବିପୁଳ ସମ୍ପଦ, ତାହା ସବୁ ତୁମର ସଞ୍ଚିତ । ମୁଁ 'ନିଦ୍ରବ୍ୟ' ପୁରୁଷ । ତୁମରି ଦୟାରେ ପିତା ବ୍ରହ୍ମହତ୍ୟା ପାତକରୁ ମୁକ୍ତ ହେଲେ ।

"ନିଧନର ଧନ ତୁ ଅଟୁ ଜଗନ୍ନାଥ,  
ସଂସାରେ ବହୁତ କୀର୍ତ୍ତି ହୋଇଲା ବିଖ୍ୟାତ ।  
ପଞ୍ଚୁପାଣ୍ଡବଙ୍କର ଅନ୍ୟ ସାହା ନାହିଁ  
ମାରୁ, ତାରୁ, ରଖୁ ଏକା ପ୍ରଭୁ ଭାବଗ୍ରାହୀ ।  
ମୁଁ ଅନାଥ ପ୍ରାଣୀ, ତୁ ଅନାଥ ଜନଙ୍କର ବନ୍ଧୁ  
କେଉଁ ଗୁଣେ ନାଥ ମୋତେ କୃପାସିନ୍ଧୁ ?"  
ଯୁଧିଷ୍ଠିର ମୁଖେ ଶୁଣି ବଦଯୁକ୍ତ ଦେବ ହରି  
ତୁମ୍ଭେ ମୋର ପିତା ବସୁଦେବର ସରି ।  
ମାତା ମୋର ଅଟଇ ଦ୍ରୁପଦ ଦୁହିତ  
ମୁହିଁ ତୋହର ଅଟଇ ପରିଗ୍ରର ନିପୁତ ।  
ଭୀମ, ଅରଜୁନ, ନକୁଳ, ସହଦେବ  
ଏହାଙ୍କର ତୁଲେ ମୋତେ ଗଣନା କରିବ ।"

ଏହା କହି ପ୍ରଭୁ ଶ୍ରୀକୃଷ୍ଣ, ଯୁଧିଷ୍ଠିରଙ୍କର ପଦ ବନ୍ଦନା କଲେ । ତାଙ୍କଠାରୁ ଏବଂ ଅନ୍ୟମାନଙ୍କଠାରୁ ବିଦାୟ ନେଇ ଗରୁଡ଼ପୃଷ୍ଠରେ ବିଜେ କରି ଦ୍ୱାରିବତୀପୁର ଫେରିଗଲେ ।

ଫେରିବା ବାଟରେ ଏକ ଘଟଣା ଘଟିଗଲା । ତ୍ରେତୟା ଯୁଗରେ ଶ୍ରୀରାମ ଯେତେବେଳେ ଶରମାରି କୁମ୍ଭକର୍ଣ୍ଣର ମସ୍ତକ ଛେଦନ କଲେ, ସେ ମଲାନାହିଁ । ତାର କଟାମୁଣ୍ଡ ଡେଇଁ ଡେଇଁ ଯାଇ ବାନରମାନଙ୍କୁ ଗିଳିବାକୁ ଲଗିଲା । ଶ୍ରୀରାମ ଏହାଦେଖି ତାର ବ୍ରହ୍ମ କପାଳକୁ ଦୁଇଫାଳ କରି ଛେଦି ଶରମାରି ଉଡ଼ାଇ ଦେବାରୁ ତାହା ଯାଇ ଦୁଇ ସ୍ଥାନରେ ପଡ଼ିଲା । ତେଣୁ ପରଜନ୍ମରେ କୁମ୍ଭକର୍ଣ୍ଣ ଦୁଇ ସ୍ଥାନରେ ଦୁଇଜଣ ହୋଇ ଜନ୍ମହେଲା । ଜଣେ ହେଲା ଦନ୍ତବକ୍ର, ଯାହାକୁ ରୁକ୍ମିଣୀ ସ୍ୱୟମ୍ବର ବେଳେ ଶ୍ରୀକୃଷ୍ଣ ମାରିଥିଲେ । ଅନ୍ୟଜଣେ ହେଲା କାଶୀ ଦେଶର ନୃପତି କାମେଶ୍ୱରଙ୍କର ପୁତ୍ର ଶାଲୁ ବା ଶାଲ୍ୱ ।

ଶାଲ୍ୱ ଶିଶୁପାଳର ଖୁବ୍ ସାଙ୍ଗ । ଶିଶୁପାଳ ମରିଯିବା ପରେ ଦୁର୍ଯ୍ୟୋଧନ ଶାଲ୍ୱକୁ ଉସୁକାଇଲେ ଯେ ଶ୍ରୀକୃଷ୍ଣଙ୍କର ଅନୁପସ୍ଥିତିରେ ସେ ଦ୍ୱାରିବତୀପୁରକୁ ଆକ୍ରମଣ କରି ଧ୍ୱଂସ କରିଦେଉ । ଏହା ବନ୍ଧୁ ହତ୍ୟାର ବେଶ୍ ପ୍ରତିଶୋଧ ହେବ ।

ଶାଲ୍ୱ ବହୁତ ସୈନ୍ୟ ନେଇଯାଇ ଦ୍ୱାରକା ଆକ୍ରମଣ କଲା । ମାତ୍ର ଯୁଦ୍ଧରେ ହାରିଯାଇ ଫେରିଆସୁଥିଲା । ବାଟରେ ଶ୍ରୀକୃଷ୍ଣଙ୍କ ଥାଟ ସହିତ ତାର ଭେଟ ହୋଇଗଲା । ଶ୍ରୀକୃଷ୍ଣଙ୍କୁ ଦେଖି ତାର ପୂର୍ବ ଜନ୍ମ ଘଟଣା ଓ ମନୁଙ୍କର ଅଭିଶାପ ସ୍ମରଣ ହେଲା । ସେ ଭାବିଲା, ଶିଶୁପାଳ ଭାଗ୍ୟବାନ୍ । ପ୍ରଭୁଙ୍କର ସ୍ୱହସ୍ତରେ ଚକ୍ର ମରଣ ପ୍ରାପ୍ତହୋଇ ଅଭିଶାପରୁ ମୁକ୍ତ ହୋଇଗଲା । ସେହି ଚକ୍ରକୁ ମୋର ତ ସବୁବେଳେ ଆଶା । ଏହା ଭାବି ଶ୍ରୀକୃଷ୍ଣଙ୍କୁ ଓଗାଳି ବହୁତ କଟୁ ଓ ଅସହ୍ୟ ଭାଷାରେ ଗାଳିଦେଲା । ପୁଣି ମାୟାରେ ଏକ ବସୁଦେବ ଆଣି ଶ୍ରୀକୃଷ୍ଣଙ୍କ ଆଗରେ ତାକୁ କାଟି ଦୁଇଖଣ୍ଡ କରିଦେଲା ଏବଂ କହିଲା ଯେ ଦ୍ୱାରକା ଧ୍ୱଂସ କରି ବସୁଦେବଙ୍କୁ ସେ ବନ୍ଦୀକରି ଆଣିଥିଲା । ଶ୍ରୀକୃଷ୍ଣ ଏହାଦେଖି ପ୍ରଥମେ ସ୍ତମ୍ଭୀଭୂତ ହୋଇଗଲେ । ପରେ

ଯୋଗବଳରେ ଜାଣିଲେ ଯେ ଅସୁର ଅଂଶରେ ଜାତ ହୋଇଥିବାରୁ ଶାଲ୍ୱକୁ ଆସୁରୀ ମାୟା ଜଣା ଓ ସେହି ମାୟା ବଳରେ ସେ ଏକ ନକଲି ବସୁଦେବ ସୃଷ୍ଟି କରିଥିଲା । ଶ୍ରୀକୃଷ୍ଣ ଆଉ ବିଳମ୍ବ ନକରି ସୁଦର୍ଶନ ଚକ୍ରକୁ ସ୍ମରଣ କଲେ ଓ ଚକ୍ରାଘାତରେ ଶାଲ୍ୱର ମୃତ୍ୟୁହେଲା । ସଙ୍ଗେ ସଙ୍ଗେ ଦେବତାମାନେ ଆସି ପହଞ୍ଚିଲେ । ଶାଲ୍ୱର ଆତ୍ମା ଶୂନ୍ୟରେ ଶ୍ରୀକୃଷ୍ଣଙ୍କୁ ନମସ୍କାର କରି ଦେବତାମାନଙ୍କରେ ବସି ସ୍ୱର୍ଗକୁ ଗମନ କଲା ।





ମ ହା ଭା ର ତ

ସାରଳା

୨୦ଶ ଅଧ୍ୟାୟ

## ପଶା ଖେଳ

ଦିନେ ଦୁର୍ଯ୍ୟୋଧନ ଅତି ଦୁଃଖରେ ଶକୁନିଙ୍କୁ କହିଲେ, "ମାମୁଁ, ପାଣ୍ଡବମାନଙ୍କର ଶ୍ରୀ, ସମ୍ପଦ ଦେଖି ମୋର ଆଉ ସହ୍ୟ ହେଉନାହିଁ । ମୁଁ ନିଶ୍ଚେ ଆତ୍ମହତ୍ୟା କରିଦେବି ।" ଶକୁନି ତାଙ୍କୁ ବୁଝାଇ କହିଲେ, "ବାବୁ ସେପରି କହନାହିଁ । ଏଥର ମୁଁ ଏପରି ଉପାୟ କରିବି ଯେ ପାଣ୍ଡବମାନଙ୍କର ଧ୍ୱଂସକୁ ସ୍ୱୟଂ ଭଗବାନ ମଧ୍ୟ ରୋକି ପାରିବେ ନାହିଁ । ଅଥଚ ଆମକୁ ଟିକିଏ ହେଲେ ଦୋଷ ଲାଗିବ ନାହିଁ । ଗଙ୍ଗାଦେବୀଙ୍କ କୃପାରୁ ମୋ ପାଖରେ ଅଜେୟ ପଶାକାଠି ଅଛି । ତାକୁ ଧରି ଖେଳିଲେ ଜୟ ଛଡ଼ା ମୋର ପରାଜୟ ନାହିଁ । ଯୁଧିଷ୍ଠିରଙ୍କୁ ଡାକି ପଶା ଖେଳେଇବା ଓ ସେଇ ପଶାଖେଳରେ ସେ ଯେପରି ସର୍ବସ୍ୱ ହାରିବେ ତାର ବ୍ୟବସ୍ଥା ମୁଁ କରିବି । ତୁମେ ଆଉ ବ୍ୟସ୍ତ ହୁଅନାହିଁ ।

ଏହାର କିଛିଦିନ ପରେ ଦୈବଯୋଗକୁ ଯୁଧିଷ୍ଠିର ଗୋଟିଏ ଶ୍ୱେତ ହସ୍ତୀ ଉପରେ ବସି ଧୃତରାଷ୍ଟ୍ର ଓ ଗାନ୍ଧାରୀଙ୍କୁ ଦେଖିବାକୁ ଆସିଲେ । ଏହି ସୁଯୋଗରେ ଦୁର୍ଯ୍ୟୋଧନ ଓ ଶକୁନି ତାଙ୍କୁ ପଶା ଖେଳିବା ପାଇଁ ଆହ୍ୱାନ କଲେ । ଯୁଧିଷ୍ଠିର ତ ଅତି ସରଳ, ଅମାୟିକ । ସେ ଶକୁନିର କୂଟ

କପଟ ମଧ୍ୟରେ ପଶି ପାରିଲେ ନାହିଁ । ପଶାଖେଳିବାକୁ ଆନନ୍ଦରେ ରାଜି ହୋଇଗଲେ ।

ଦୁର୍ଯ୍ୟୋଧନଙ୍କ ତରଫରୁ ଶକୁନି ପଶାଖେଳିଲେ । ପ୍ରଥମେ ଯୁଧିଷ୍ଠିର ଓ ଦୁର୍ଯ୍ୟୋଧନ ନିଜ ନିଜ ଦେହର ଅଳଙ୍କାରକୁ ବାଜି ରଖିଲେ । ଖେଳରେ ଯୁଧିଷ୍ଠିର ହାରିଲେ । ତାପରେ ମସ୍ତକର ମୁକୁଟ, କର୍ଣ୍ଣର କୁଣ୍ଡଳକୁ ମଧ୍ୟ ବାଜି ରଖି ହାରିଲେ । ଏ ସବୁ ଅଳଙ୍କାରକୁ ଦୁଃଶାସନ ସଙ୍ଗେ ସଙ୍ଗେ ଯୁଧିଷ୍ଠିରଙ୍କ ଦେହରୁ କାଢ଼ିନେଇ ଦୁର୍ଯ୍ୟୋଧନଙ୍କ ଦେହରେ ପିନ୍ଧାଇଦେଲେ ଓ ଆନନ୍ଦରେ ତାଳମାରି ନାଚିଲେ ।

ତାପରେ ଯୁଧିଷ୍ଠିର ଅଶ୍ୱଦଣ୍ଡ, ଗଜଦଣ୍ଡ, ରଥଦଣ୍ଡ ଓ ସାତ ଅକ୍ଷୌହିଣୀ ସୈନ୍ୟବଳ ଗୋଟିକପରେ ଗୋଟିଏ ବାଜି ରଖି ସବୁ ହାରିଲେ । ଏହା ଦେଖି କୌରବମାନେ ଆନନ୍ଦରେ ନାଚି ଗଲେ । ଯୁଧିଷ୍ଠିରଙ୍କର ମୁହଁ ଶୁଖିଗଲାଣି । ମାତ୍ର ଖେଳର ମୋହ ଛାଡ଼ି ପାରୁ ନାହାନ୍ତି । ହଠାତ୍ ଖେଳରୁ ଉଠିଗଲେ ମଧ୍ୟ ବଡ଼ ଅପମାନ ହେବ । ଦ୍ୟୁତକ୍ରୀଡ଼ାର ତ ଗୋଟାଏ ମିଠା ରହିଛି ଯାହା ଜିଣିବା ହାରିବା ଉଭୟ ଲୋକଙ୍କୁ ବାନ୍ଧିରଖିଥାଏ କରେ ।

"ପ୍ରେମର ମିଷ୍ଟଯେ ଅଟଇ ରୁଷଣ
ଜରର ମିଷ୍ଟହେ ପାଣି ଆଗ୍ରହଣ ।
ମନର ମିଠା ଯେ ଅଟଇ ମଉନ
କାର୍ଯ୍ୟର ମିଠା ଯେବେ ହୁଏ ତତ୍‌କ୍ଷଣ ।

× × ×

ଯନ୍ତ୍ରର ମିଠା ଯେବେ ହସ୍ତ ଚଳଇ ଭଲ
ଆଧାର ମିଠା ଯେବେ ଭୁଞ୍ଜେ କ୍ଷୁଧାବେଳ ।
ବଣିଜ ମିଠା ଯେବେ ଭଲେ ଯାଏ ବିକା
ରୂପର ମିଠା ଯେବେ ସୁନ୍ଦର ନାସିକା ।

× × ×

ତପର ମିଠା ଯେବେ ନୋହେ ଦ୍ୱନ୍ଦକାରୀ
ଜୁଆର ମିଠା ଯେବେ ମଣ୍ଡଳେଣ ହାରି ।

ଯୁଧିଷ୍ଠିରଙ୍କର ଏ ଅସହାୟ ଅବସ୍ଥାକୁ ଲକ୍ଷ୍ୟକରି ଭୀଷ୍ମଦେବ କହି ଉଠିଲେ "ବାବୁ ଯୁଧିଷ୍ଠିର, ତୁମେ ଏବେ ଖେଳ ବନ୍ଦ କର । ସବୁ ତ ହାରସାରିଲଣି । ଆଉ କଅଣ ଅଛି ? ତୁମର ଭାଗ୍ୟ ଭଲ ନାହିଁ । ଯାଅ, ଘରକୁ ଫେରି ଯାଅ । ଆଉ ଦିନେ ଆସି ଖେଳିବ ।"

ଏହା ଶୁଣି କର୍ଣ୍ଣ ଉଠିପଡ଼ି କହିଲେ, " ଯୁଧିଷ୍ଠିର କଅଣ ହାରିଲେ ? ହାରିଥିବା କୌଣସି ଜିନିଷ ତ ତାଙ୍କ ନିଜର ନୁହେଁ । ମରୁତ ଦେବତା ତାଙ୍କୁ କୁଣ୍ଡଳ ଦେଇଥିଲେ । କୁବେର ଦେଇଥିଲେ ମୁକୁଟ । ଜରାସନ୍ଧକୁ ମାରି ଆଣିଥିଲେ ରଥ, ଗଜ, ଅଶ୍ୱ ଓ ପଦାତି । ଦ୍ରୁପଦ ରାଜା ଯୌତୁକ ଦେଇଥିଲେ ଚତୁରଙ୍ଗବଳ ସହିତ ଅନେକ ସମ୍ପଦ । ପୁଣି ଯଜ୍ଞକୁ ନିମନ୍ତ୍ରିତ ରଜାମାନେ ଯେଉଁ ଅମାପ ଧନରାଶି ଆଣିଥିଲେ ସେ ସବୁ ଏ ପର୍ଯ୍ୟନ୍ତ ତାଙ୍କ ଭଣ୍ଡାରରେ ଅଛି । ତେଣୁ ପଶା ଖେଳରେ ଯଦି ରାଜ୍ୟ ହାରି ଜିଣି ହୁଅନ୍ତା ତେବେ ସିନା ଖେଳ ସାର୍ଥକ ହୁଅନ୍ତା ।

ଏହା ଶୁଣି କୁଟିଳ ହସ ହସି ଶକୁନି ଯୁଧିଷ୍ଠିରଙ୍କ ମୁଖକୁ ଚାହିଁଲେ । ଯୁଧିଷ୍ଠିର କହିଲେ ଏଥର ମୁଁ ରାଜ୍ୟ ବାଜି ରଖିଲି । ଖେଳ ଚାଲିଲା । ପୁଣି ଯୁଧିଷ୍ଠିର ହାରିଲେ । ତଥାପି ତାଙ୍କର ସରଳ ମନରେ ବିକାର ନାହିଁ । ଆଉ କଅଣ ବାଜି ରଖିବେ ବୋଲି ଭାବୁଛନ୍ତି । ଏତିକବେଳେ ଦୁର୍ଯ୍ୟୋଧନ କହିଲେ, "ଏଥର ଭାଇମାନଙ୍କୁ ଜଣ ଜଣ କରି ବାଜି ରଖ ।" ତାହାହିଁ ହେଲା । ଖେଳରେ ଯୁଧିଷ୍ଠିର, ନିଜର ଭାଇ ଭୀମ, ଅର୍ଜ୍ଜୁନ, ନକୁଳ, ସହଦେବଙ୍କୁ ଜଣଙ୍କ ପରେ ଜଣଙ୍କୁ ବାଜି ରଖି ସମସ୍ତଙ୍କୁ ହାରିଲେ । ତାପରେ ନିଜକୁ ବାଜି ରଖି ମଧ ହାରିଲେ । ସଭାରେ ଦୁଃଶାସନ ବାହା-ସ୍ଫୋଟ ମାରି ଡେଇଁଲା । ଦୁର୍ଯ୍ୟୋଧନ ଆନନ୍ଦରେ କୁରୁଳି ଉଠୁଥାନ୍ତି । ମାତ୍ର ଭୀଷ୍ମ, ଦ୍ରୋଣ ଆଦି ଗୁରୁଜନମାନେ ଏହାଦେଖି ଅତ୍ୟନ୍ତ ଦୁଃଖିତ ହୋଇ ହାୟ, ହାୟ କଲେ ।

ଏ ଦୁଃସମ୍ବାଦ ଇନ୍ଦ୍ରପ୍ରସ୍ଥରେ ପହଞ୍ଚିଗଲା । ପାଣ୍ଡବ ପୁରବାସୀ ଓ ଦ୍ରୌପଦୀ ଏହା ଶୁଣି ବଡ ବ୍ୟଥିତ ହେଲେ ଓ ଭାଇମାନେ ସଙ୍ଗ ସଙ୍ଗେ

ହସ୍ତିନାକୁ ଆସିଲେ । ଦୁଇକ୍ରୋଶ ଦୂରରୁ ଖେଳର ଆବାଜ ଶୁଭୁଥାଏ । ଭ୍ରାତୃଭାଇ ସଭାରେ ଉପସ୍ଥିତ ହେବାକ୍ଷଣି ଦୁର୍ଯ୍ୟୋଧନ ଗର୍ଜିଉଠି କହିଲେ "ସଭାର ତଳେ ଠିଆ ହୁଅ । ପାହାଚ ଉଠନାହିଁ । ତୁମେମାନେ ଆଜି-ଠାରୁ ମୋର ପରିଚର । ମାତ୍ର ଭୀମ କି ଏହା ସହିବା ଲୋକ ? ସେ ଦୁଇଟା ବଗଟ ଲୁହାର ଗଦାକୁ ଦୁଇ କାନ୍ଧରେ ପକାଇ ଠେଲ ପେଲ ଆଗେଇ ଯାଇ ଗୋଟାଏ ହୁଁକାରନାଦ ଛାଡ଼ିଲେ । ତାହା ଶୁଣି କୌରବମାନଙ୍କର କଲିଜା ଥରି ଉଠିଲା ।

ମାତ୍ର ଯୁଧିଷ୍ଠିର ଭୀମଙ୍କୁ ଅନାଇଁ କହିଲେ "ବାବୁ, ମୁଁ ଦୁର୍ଯ୍ୟୋଧନଙ୍କୁ ଏହି ପଶାଖେଳରେ ତୁମମାନଙ୍କ ସହିତେ ସର୍ବସ୍ୱ ହାରିଯାଇଛି । ସଭା ତଳେ ଦଣ୍ଡେ ଧୈର୍ଯ୍ୟ ଧରି ରହିଥାଅ । ଏହା ଶୁଣି ଭୀମସେନ ସତେ ଯେପରି ବୋକା ପାଲଟି ଗଲେ । ତଳକୁ ମୁହଁପୋତି ଶ୍ରେଷ୍ଠ ପିଲାଟି ପରି ତଳକୁ ଓହ୍ଲାଇ ଗଲେ । ଅନ୍ୟ ଭାଇଭାଇଙ୍କ ମୁଖରେ ଭାଷା ନାହିଁ । କେବଳ ପରସ୍ପରକୁ ଚିକଏ ଚାହୁଁଥାନ୍ତି । ଏଣେ ଦୁଃଖ ଓ କ୍ରୋଧରେ ହୃଦୟ ଫାଟି ଯାଉଛି ।

ଶକୁନି ଏସବୁ ଲକ୍ଷ୍ୟକରି ମନେ ମନେ ଉତ୍ଫୁଲ୍ଲ ହେଉଛି । ପିତୃହନ୍ତା ଦୁର୍ଯ୍ୟୋଧନ ପ୍ରତି ତାର ପ୍ରତିଶୋଧ ପର୍ବ ଆରମ୍ଭ ହେଲା । କୌରବଙ୍କ ବିରୁଦ୍ଧରେ ପାଣ୍ଡବମାନଙ୍କୁ ସେ ଯେତେ ଦୂର ଉତ୍ତ୍ୟକ୍ତ କରିପାରେ ତାହା ସେ ନିଶ୍ଚୟ କରିବ । କୌରବମାନଙ୍କର ପାପଭାର ସେ ଯେତେ ଦୂର ବଢ଼ାଇପାରେ ତାହା ସେ ଅବଶ୍ୟ କରିବ । ସେମାନଙ୍କର ଧ୍ୱଂସ ସାଧନ ପାଇଁ ଏସବୁ ନିଶ୍ଚେ ଆବଶ୍ୟକ । ଆଖି ଆଗରେ ତାର ମୁମୂର୍ଷୁ ପିତାଙ୍କର ନୀରସ, ଶୁଷ୍କ, ମୁଖମଣ୍ଡଳ ଭାସି ଉଠିଲା । ପିତାଙ୍କ ନିକଟରେ ତାର ପ୍ରତିଜ୍ଞା ସେ ଅକ୍ଷରେ ଅକ୍ଷରେ ପାଳନ କରିବ । ନଚେତ୍ ତାର ବଞ୍ଚି ରହିବା ବୃଥା ।

ନିରନ୍ଧ୍ର ପ୍ରସ୍ତର ଗୃହମଧ୍ୟରେ ସପରିବାର ବନ୍ଦୀଥିବା ବେଳର ନର୍କ ଯନ୍ତ୍ରଣା, ଦାରୁଣ ଉଦରଜ୍ୱାଳା, ଆଖି ଆଗରେ ନିଜର ପିତାମାତା, ଭ୍ରାତା ଭଗିନୀ ଗୋଟି ଗୋଟି ହୋଇ ନିଃସହାୟ ଭାବେ ମୃତ୍ୟୁ ବରଣ କରିବା, ଏ ସମସ୍ତ ବିଭତ୍ସ ଦୃଶ୍ୟ ଶକୁନିର ଚକ୍ଷୁ ସମ୍ମୁଖରେ କ୍ଷଣକପାଇଁ

ଭସି ଉଠି ମନଟା ତାର ଅତ୍ୟନ୍ତ ବଷାକ୍ତ ହୋଇଗଲା । ହାତମୁଠା ଟାଣ ହୋଇଗଲା । ଲୋମ ଟାଙ୍କୁର ଉଠିଲା ।

ସେ ଯୁଧିଷ୍ଠିରଙ୍କୁ ବ୍ୟଙ୍ଗ କରି କହିଲା, "ହେ ଧର୍ମରାଜ, ତୁମର ଆଉ କଅଣ ଅଛି ଶୀଘ୍ର ବାଜି ଲଗାଅ ।" ଏହା କହି ଦୁର୍ଯ୍ୟୋଧନଙ୍କୁ ଭୁନ ଭୁନ କହିନେଲା ଦ୍ରୌପଦୀଙ୍କୁ ବାଜି ଲଗାଇବା ପାଇଁ ଏବେ ଯୁଧିଷ୍ଠିରଙ୍କୁ କୁହାଯାଉ । ଏହା ଶୁଣି ଦୁର୍ଯ୍ୟୋଧନ ଯୁଧିଷ୍ଠିରଙ୍କୁ ଚାହିଁ ସଙ୍ଗେ ସଙ୍ଗେ କହିଲେ, "ତୁମେ ବର୍ତ୍ତମାନ ଚାହିଁଲେ ଦ୍ରୌପଦୀଙ୍କୁ ବାଜି ରଖିପାର ।" ଏହା ଶୁଣି ଭୀମ ଅର୍ଜ୍ଜୁନ ନକୁଳ ସହଦେବ ରାଗରେ ଜଳିଗଲେ । ମାତ୍ର ଯୁଧିଷ୍ଠିର ଦ୍ରୌପଦୀଙ୍କୁ ବାଜି ରଖିଲେ ଓ ହାରିଲେ । ସବୁ ହାରି ସାରିଲାପରେ ଯୁଧିଷ୍ଠିରଙ୍କ ସଭା ତଳକୁ ଟାଣି ଅଣାଗଲା । ଭୀଷ୍ମ ଦ୍ରୋଣାଦି ଏ ଦାରୁଣ ଦୃଶ୍ୟ ଦେଖି ନପାରି ମୁହଁକୁ ତଳକୁ ପୋତିଦେଲେ । ହାୟ, ଲକ୍ଷେ ନୃପତି ଯାହାଙ୍କ ଚରଣ ବନ୍ଦନା କରନ୍ତି, ସ୍ୱୟଂ ଭଗବାନ ଶ୍ରୀକୃଷ୍ଣ ଯାହାଙ୍କର ପାଦତଳେ ପ୍ରଣିପାତ ହୁଅନ୍ତି ସେହି ସାକ୍ଷାତ୍ ଧର୍ମ ଦେବତାଙ୍କୁ ଦୁଷ୍ଟ ଦୁଃଶାସନ ଟାଣି ଆଣି ସଭାତଳେ ଠିଆ କରାଇଲା । ଭୀମ ରାଗରେ ଦାନ୍ତ କଡ଼ ମଡ଼ କରି କୌରବ ଶତଭାଇଙ୍କ ତଣ୍ଟି ଚିପି ଦେବାକୁ ବାହାରିବାରୁ ଯୁଧିଷ୍ଠିର ବାରଣ କରି କହିଲେ, "ବାବୁରେ ତୁ କଣ ଭୁଲିଗଲୁ ? ଅନ୍ଧ ଧୃତରାଷ୍ଟ୍ରଙ୍କ ପୁତ୍ରକଷ୍ଟହେଲେ ମୋତେ ଏ ଦୁଃଖଠାରୁ ସେ ଦୁଃଖ ବେଶି ବାଧିବ । ତୁ ଧୈର୍ଯ୍ୟଧରି ରହ । ଆମର ଧର୍ମହିଁ ଆମକୁ ରକ୍ଷା କରିବ ।" ନିଆଁରେ ପାଣି ପଡ଼ିଲା ପରି ଭୀମଙ୍କର ରାଗ ଶାନ୍ତ ହୋଇଗଲା । କୌରବଙ୍କ ମୁହଁକୁ ଚାହିଁଲେ ରାଗ ଲାଗିବ ବୋଲି ସେ ତଳକୁ ମୁହଁ ପୋତିଦେଲେ ।

## ଦ୍ରୌପଦୀଙ୍କ ଅପମାନ

ଦୁର୍ଯ୍ୟୋଧନ ଗୋଟିଏ ପୈଶାଚିକ ହସ ହସି ବିଦ୍ରୂପ କରି କହିଲା "ହେ ଧର୍ମରାଜ, ହେ ଭୀମ, ହେ ଅର୍ଜ୍ଜୁନ ? ତଳକୁ ମୁହଁ ପୋତିଲ କାହିଁକି ? କାହିଁ ଗଲା ତୁମର ସେ ଗରଜ ? ଏବେ ତ ଆସି ରକ୍ଷା କରୁନାହିଁ ? ମାୟାରେ ସଭାଗୃହ କରି ମୋତେ କେତେ ଅପମାନ ନ ଦେଇଛ !

ମାୟାଖୁମ୍ବରେ ଆଉଜିବାକୁ ଯାଇ ମୁଁ ମୁହଁମାଡ଼ି ପଡ଼ିଛି । ମାୟା ସରୋବରେ ବୋଲି ଜାଣିନପାରି ଜଳରେ ପଡ଼ି ବୁଡ଼ିଯାଇଛି । ଦ୍ରୌପଦୀ ସହିତେ ତୁମେମାନେ କରତାଳି ଦେଇ ହସୁଥିଲ । କାହିଁଗଲା ସେ ଦୁଷ୍ଟା ଦ୍ରୌପଦୀ ? ଦୁଃଶାସନ, ଶୀଘ୍ର ଯାଇ ଦ୍ରୌପଦୀକୁ ଏଠାକୁ ଧରିଆଣ । ପାଣ୍ଡବଙ୍କ ପାଖରେ ସେ ଆସି ବସୁ । ଆଜିଠାରୁ ଏମାନେ ସମସ୍ତେ ମୋର ଦାସ ଦାସୀ ।" ଏହା କହି ପୁଣି ଗୋଟାଏ ପୈଶାଚିକ ହସ ହସିଲା ।

ଦୁଃଶାସନ ସଙ୍ଗେ ସଙ୍ଗେ ଧାଇଁଲା । ତାର ପାଦ ଭରରେ ମେଦିନୀ କମ୍ପି ଉଠିଲା । ଲକ୍ଷେ ଯୋଦ୍ଧା ଯୁଧିଷ୍ଠିରଙ୍କର ସିଂହଦ୍ୱାର ରକ୍ଷା କରୁଥିଲେ । ଦୁଃଶାସନ ଗଦା ବୁଲାଇ ସେମାନଙ୍କୁ ଠେଲି ପେଲି ଭିତରକୁ ପଶିଗଲା । ଦ୍ୱାର, ଝରକାସବୁ ଗଦାପ୍ରହାର କରି ଚୂନା କରିପକାଇଲା । ତାହାର ଏ ଉତ୍ପାତ ଦେଖି ନବ ଲକ୍ଷ ଯୋଦ୍ଧା ପୁଣି ତାକୁ ଘେରିଲେ । ଦୁଃଶାସନ ଭୟ ପାଇ କହିଲା, "ଦେଖ ତୁମେମାନେ ମୋ ସହିତ ଯୁଦ୍ଧ କରନାହିଁ । ଅକାରଣ ମୃତ୍ୟୁଦଣ୍ଡ ପାଇବ । ତୁମେମାନେ ସମସ୍ତେ ଏବେ ଆମର ସୈନ୍ୟ । ଯୁଧିଷ୍ଠିର ପଶାଖେଳରେ ଧନରତ୍ନ, ରାଜ୍ୟ, ସୈନ୍ୟ-ବାହିନୀ, ଭାଇ, ଭାରିଜା ସମସ୍ତଙ୍କୁ ହାରିସାରିଛନ୍ତି । ତେଣୁ ତୁମେମାନେ ମହାରାଜା ଦୁର୍ଯ୍ୟୋଧନଙ୍କର ଆଦେଶ ପାଳନରେ ମୋତେ ବାଧା ଦେବା, ରାଜଦ୍ରୋହ ଅପରାଧ ରୂପେ ଗଣ୍ୟହେବ । ସେହି ଅପରାଧ ପାଇଁ କେବଳ ମୃତ୍ୟୁଦଣ୍ଡ ଦିଆଯାଏ । ଏହା ତୁମେମାନେ ଭଲକରି ଜାଣିଛ । ତେଣୁ ତୁମେମାନେ ମୋର ପଥ ଛାଡ଼ିଦିଅ । ଏହି ସମୟରେ ଚର ମଧ୍ୟ ହସ୍ତିନାରୁ ଫେରି ସେହି ଦୁଃସମ୍ବାଦ ଦେଲା । ତାହା ଶୁଣି ଯୋଦ୍ଧାମାନେ ଦୁଃଶାସନକୁ ବାଟ ଛାଡ଼ିଦେଲେ ।

ମାତା କୁନ୍ତୀ ଏହା ଶୁଣି ଧାଇଁ ଆସି ଦୁଃଶାସନର ବାଟ ଓଗାଳିଲେ । ମାତ୍ର ଦୁଃଶାସନ କର ଯୋଡ଼ି କହିଲା, "ମାତା, ମୋର କିଛି ଦୋଷନାହିଁ । ତୁମ ବଡ଼ପୁଅ ଅବିବେକ ପଣରେ ସବୁ ହାରିଛନ୍ତି । ଏବେ ରାଜା ଦୁର୍ଯ୍ୟୋଧନଙ୍କ ଆଦେଶ ପାଳନରେ ବିଳମ୍ବ ହେଲେ ମୁଁ ନିଜେ ଦଣ୍ଡିତ ହେବି । ତେଣୁ ଶୀଘ୍ର ବାଟ ଛାଡ଼ ।" କୁନ୍ତୀ ଦୁଃଶାସନକୁ ବୁଝାଇବାକୁ ଚେଷ୍ଟାକଲେ । ମାତ୍ର ଦୁଷ୍ଟ ଦୁଃଶାସନ କି ସେଥିରେ ବୁଝେ ? ସେ କୁନ୍ତୀଙ୍କୁ

ଫେଲି ତଳେ ପକାଇଦେଇ ଭିତରକୁ ପଶିଲା । କୁନ୍ତୀ ଡାକ ଦେଲେ "ହେ ଚନ୍ଦ୍ରଧର ରକ୍ଷାକର । ଏହା କହି ଉଠି ଧାଇଁ ଯାଇ ଦ୍ରୌପଦୀଙ୍କୁ ଶ୍ରେଷେଇ ଶାଳରେ ଲୁଚି ଯିବାକୁ କହିଲେ ।

ଦୁଃଶାସନ ଅନ୍ତଃପୁରର ଗଳି କନ୍ଦି ଖୋଜି ଦ୍ରୌପଦୀଙ୍କୁ ପାଇଲାନାହିଁ । ଯୁଧିଷ୍ଠିରଙ୍କ ଶୟନ କକ୍ଷକୁ ଦେଖି ତାର ମନେ ହେଲା, ତାକୁ ଲକ୍ଷେ ଇନ୍ଦ୍ର ଭୁବନ ସର ହେବ ନାହିଁ । ସେ ତାକୁ ନିଜ ବ୍ୟବହାରପାଇଁ ରଖିବ ବୋଲି ମନେ ମନେ ଠିକ୍ କଲା । ଦ୍ରୌପଦୀଙ୍କୁ ଖୋଜି ଖୋଜି ଯାଇ ରୋଷେଇ ଶାଳରେ ପଶି ଦେଖିଲା ଯେ ଗୋଟିଏ କୋଣ ଚନ୍ଦ୍ର କରଣ ପଡ଼ିଲାପରି ଅତି ଉଜ୍ଜ୍ୱଳ ଦିଶୁଛି । ଦ୍ରୌପଦୀ ସେଠାରେହିଁ ଆତ୍ମଗୋପନ କରିଥିଲେ । ତାଙ୍କ ଶରୀରର ତେଜରେ ସେ ସ୍ଥାନ ଆଲୋକିତ ହୋଇ-ଥିଲା । ସତେ ଯେପରି ରାହୁର ଭୟରେ ଚନ୍ଦ୍ରମା ସେଠାରେ ଲୁଚି ଯାଇଥିଲେ ।

ଏହାତ ଦୈବ ଇଚ୍ଛା । ଦ୍ରୌପଦୀଙ୍କ ଉପରେ ଦୁଃଶାର ଦୃଷ୍ଟି ପଡ଼ିବା ମାତ୍ରେ ସେ ତାଙ୍କର କେଶଧରି ଟାଣି ଆଣିଲା । ଦ୍ରୌପଦୀ କାକୁତି ମିନତି ହୋଇ କହିଲେ, "ହେ ଦୁଃଶାସନ ମୁଁ ପାକାସ୍ପର୍ଶ ହୋଇଛି । ମୋତେ ଛୁଅଁ ନାହିଁ । ଦୁଃଶାସନ ହଠାତ୍ ଏହା ଶୁଣି ତାଙ୍କ କେଶକୁ ଛାଡ଼ିଦେଲା ।

ଦ୍ରୌପଦୀ ତାକୁ ବୁଝାଇବାକୁ ଚେଷ୍ଟାକଲେ ।

"ପ୍ରଥମ ଦିନ ରଜୋବନ୍ତୀ ନାରୀଙ୍କୁ ଛୁଇଁଲେ
ଲିଙ୍ଗଭଗ୍ନ ଦୋଷ ଯେ ପୁରୁଷ ପାଇ ହେଲେ ।
ଦ୍ୱିତୀୟଦିନ ଛୁଇଁଲେ ରଜୋବନ୍ତୀ ନାରୀ
ଗୋ ହତ୍ୟା ଦୋଷ ଲଭି ପୁରୁଷର ତୁଟେ ଶିରୀ ।
ତୃତୀୟଦିନ ଛୁଇଁଲେ ବ୍ରହ୍ମହତ୍ୟା ଦୋଷ
ଚତୁର୍ଥଦିନେ ବାଳହତ୍ୟା ଦୋଷ ଲଭଇ ପୁରୁଷ ।
ସୋଦର ବଧ ଦୋଷ ପଞ୍ଚମଦିନେ ପାଇ
ମାତୃହରଣ ଦୋଷଟି ଷଷ୍ଠରେ ଲଭଇ ।

ସପତ ଦ୍ୱନତି ଶୁଦ୍ଧ ହୋଏ ନାଶ
ଅପ୍ସେଂଳା ଯେମନେ ଯାନ୍ତ ଥାଉଁ ବଣବଶ ।
ସ୍ୱାହାନ ସାର ଓଦା ବାସ ପିନ୍ଧ କୂଳେ ଉଠି
କାହାକଇଁ ନଗୃହିଁ ଆସଇ ଘରକୁ ନେଉଛି ।
ପ୍ରଣମି ଗୁରୁ ବ୍ରାହ୍ମଣ ଶାଶୁ ଯେ ଶ୍ୱଶୁରେ
ଗୃହ କୁଟୁମ୍ବାଦ କାର୍ଯ୍ୟ ତା ଉତ୍ତରୁ କରେ ।
ନିଜ ଅଙ୍ଗ ସୁବେଶ କରଣ ରଜନୀରେ
କାନ୍ତ ସଙ୍ଗତେ ବିହାର କରଇ ଆନନ୍ଦରେ ।
ତେବେ ଜାଣ ଉପୁଜଇ ଅପୂରୁବ ନନ୍ଦନ
ଲକ୍ଷେ ପ୍ରାଣୀ ପୋଷଣେ ସେ ହୁଅଇ ସୁଜନ ।

ମାତ୍ର ଦୁଃଶାସନକ ଏସବୁ ବୁଝେ ? ସେ ଚଢ଼ି ଉଠି କହିଲା, "ଦେଖ ଦ୍ରୌପଦୀ, ତୁମେ ଭଲରେ ନଗଲେ ମୁଁ ତୁମ ଚୁଟି ଧରି ନେଇଯିବି ।" ଦ୍ରୌପଦୀ ନିରୁପାୟ ହୋଇ ପଳାଇବାକୁ ଉଦ୍ୟତ ହେବାରୁ ଦୁଃଶାସନ ତାଙ୍କର ଚୁଟି ଧରି ଟାଣିଲେ । ତାଙ୍କର ପାଦ ତଳେ ଲଗିଲା ନାହିଁ । ଏହା ଦେଖି ପୁରଜନମାନେ ହାୟ ହାୟ କଲେ । ଯେଉଁ ଦ୍ରୌପଦୀ ସ୍ୱୟଂ ଅନାଦ୍ୟ, ଅପର୍ଣ୍ଣା, ଗୌରି ·ଅବତାରରେ ଅଯୋନି ସମ୍ଭବା, ଧର୍ମରାଜଙ୍କର ପାଟରାଣୀ, କୋଟିଏ ବଳାସୁଣୀ ଯାହାଙ୍କୁ ନିତ୍ୟ ଖଟନ୍ତି, ତାଙ୍କର ଭାଗ୍ୟରେ ପୁଣି ଏ ଦଣ୍ଡ ଥିଲା । ଲୋକେ ଏପରି ଦାରୁଣ ଦୃଶ୍ୟକୁ ଦେଖି କେବଳ ଧର୍ମ ଧର୍ମ ବୋଲି ଡାକ ଦେଲେ । କୁନ୍ତୀଦେବୀ ହଠାତ୍ ପୁଣି ପହଞ୍ଚିଯାଇ ଦୁଃଶାସନ ହାତରୁ ଦ୍ରୌପଦୀଙ୍କୁ ଛଡ଼ାଇବାକୁ ଚେଷ୍ଟାକଲେ । ମାତ୍ର ଦୁଃଶାସନ·ତାଙ୍କୁ ଏକା ଧକ୍କାରେ ତଳେ ପକାଇ ଦ୍ରୌପଦୀଙ୍କୁ ଟାଣି ଟାଣି ନେଇ ଚାଲିଗଲା । କୁନ୍ତୀ କ୍ରୋଧରେ କହିଲେ, "ହେ କୃଷ୍ଣ, ତୁମେ କଣ ଦ୍ୱାରକା ଛାଡ଼ି କେଉଁଆଡ଼େ ଚାଲିଗଲ ? ହେ ଧର୍ମ ଦେବତା, ତୁମେ କଣ ସଂସାରରୁ ଲୋପ ହେଲ ? ମୋର ପାଞ୍ଚପୁଅଯାକ କଅଣ ମରିଗଲେ ? ମୁଁ ଶକ୍ତିହୀନା ବିଧବା ନାରୀ । ମୋର ଆଖି ଆଗରେ ମୋର କୁଳଲକ୍ଷ୍ମୀକୁ ଦୁଷ୍ଟ ଘୋଷାରି ନେଲା । "ହେ ଧର୍ମ" ବୋଲି ତିନଥର ଉଚ୍ଚାରଣ କରି କୁନ୍ତୀଦେବୀ ମୂର୍ଚ୍ଛିତା

ହୋଇ ତଳେ ପଡ଼ିଗଲେ । ମୂଦୁସୁଲ୍ଲ ଧାଇଁ ଆସି ତାଙ୍କୁ ସାଷ୍ଟାମ କରି ଘରକୁ ନେଇଗଲେ ।

**ବସ୍ତ୍ର ହରଣ ।**

ବାରୁଣାବନ୍ତରୁ ହସ୍ତିନା ପାଞ୍ଚ ଯୋଜନ ଦୂର । ଦୁଷ୍ଟ ଦୁଃଶାସନ ବାମ ହାତରେ ଦ୍ରୌପଦୀଙ୍କର କେଶ ଓ ଡାହାଣ ହାତରେ ଗଦା ବୁଲାଇ ବୁଲାଇ ଆସିଲା ବେଳେ ଦ୍ରୌପଦୀଙ୍କ ପାଦ ଭୂମିରେ ଲାଗୁ ନ ଥାଏ । ଦ୍ରୌପଦୀ କେବଳ ନାରାୟଣଙ୍କୁ ଡାକୁ ଥାନ୍ତି । ପୁର ଜନମାନେ ହାହା-କାର କରୁଥାନ୍ତି ।

ଦ୍ରୌପଦୀ ବଡ଼ ଆକୁଳ ହୋଇ ଦୁଃଶାସନକୁ ଅନୁନୟ କଲେ, "ହେ ବୀର ଦୁଃଶାସନ, ମୋତେ ଯାହା ଦଣ୍ଡ ଦେଉଛ ଦିଅ । ମାତ୍ର ମୋତେ ସଭା ସ୍ଥଳକୁ ନିଅ ନାହିଁ । ସେଠାରେ ଭୀଷ୍ମ ଦ୍ରୋଣାଦି ଗୁରୁଜନ ମାନେ ଅଛନ୍ତି । ମୁଁ ଲଜ୍ଜାରେ ମରିଯିବି ।" ମାତ୍ର ଦୁଃଶାସନ କାହିଁକି ଟିକିଏ ଏ କଥା ଶୁଣିବ । ସେ ତାଙ୍କୁ ଟାଣି ନେଇ ସଭା ତଳେ ଠିଆ କରି ଦେଲା ଓ ଦୁର୍ଯ୍ୟୋଧନକୁ କହିଲା, "ଆପଣଙ୍କର ଆଦେଶ ମତେ ଦ୍ରୌପଦୀକୁ ଧରି ଆଣିଲି । ମାତ୍ର ସେ କହୁଛି ଯେ ସେ ପାକାସ୍ପର୍ଶ ହୋଇଛି । ତେଣୁ ପୁରୁଷ ଦ୍ୱାରା ଅସ୍ପୃଶ୍ୟ ।" ଦୁର୍ଯ୍ୟୋଧନ ଏହା ଶୁଣି ହୋ ହୋ ହୋଇ ହସି ଉଠିଲେ । ଶକୁନି କହିଲା, "ସେ ଏଡ଼େ ନିର୍ଲଜ୍ଜା ନାରୀ । ପଞ୍ଚ ପତି କରି ପୁଣି ସତୀ ବୋଲାଉଛି । ସେ ମୂର୍ତ୍ତିକୁ ଏଠାକୁ ଧରି ଅଣି ତା ପାକାବସନକୁ ଖୋଲ । ସତୀ କି ଅସତୀ ସାକ୍ଷାତରେ ଜାଣିବା ।" ଦ୍ରୌପଦୀ ମନେ ମନେ ବଡ଼ ଆତଙ୍କିତ ହେଲେ । ଏ ଦୁଷ୍ଟ ଦଳ ତ ଚୂଟି ଧରି ଯାହା ଚ୍ଛିଙ୍କା ଚ୍ଛିଙ୍କି କଲେ । ଏବେ ସତେ ବିବସନ କରିଦେବେ ନା କଣ ? ଏହା ଭାବି ଖୁବ୍ ଧୈର୍ଯ୍ୟ ଧରି ସେମାନଙ୍କ କଥାରେ ଭୁଲାଇବାକୁ ଚେଷ୍ଟା କଲେ ।

ଏତିକି ବେଳେ ଦୁର୍ଯ୍ୟୋଧନ ପାଟି କରି ଉଠିଲା "ହେ ଦ୍ରୌପଦୀ, ତୋର ପାଞ୍ଚ ପତି ତ ଏଠାରେ ମୁଣ୍ଡ ପୋତି ବସିଛନ୍ତି । ତୋତେ ତ ରକ୍ଷା କରି ପାରୁ ନାହାନ୍ତି । ତୋ କୃଷ୍ଣ କୁଆଡେ଼ ଗଲା ? ଏତେବେଳେ ଆସି ତୋ ପିଠିରେ ପଡ଼ୁ ନାହିଁ ?" ଦ୍ରୌପଦୀ କୁରୁସଭାକୁ ଅନାଇଁ କହିଲେ,

"ମୋର ପ୍ରଭୁ ଆରତତ୍ରାଣଙ୍କୁ ତୁମେମାନେ ନିନ୍ଦା କର ନାହିଁ । ମୋତେ ପଛେ ମାରି ଦିଅ । ମୋର ପ୍ରଭୁଙ୍କର ନିନ୍ଦା ଏ କାନ ନଶୁଣୁ ।"

ସତ୍ୟ ଯୁଗର ଗୋଟିଏ ଚରିତ ମୁଁ ତୁମମାନଙ୍କୁ କହୁଛି । ଘୋର ବନରେ ଏକ ଶଶା ସିଂହକୁ ଦେଖି ଭୟରେ ଗୋଟାଏ ଗାତରେ ପଶି ଗଲା ବେଳକୁ ଦେଖିଲା ଗାତ ଭିତରେ ଗୋଟାଏ ଶୃଗାଳ । ସେ ରକ୍ଷା ପାଇବାର ଉପାୟ ନ ଦେଖି ଭଗବାନଙ୍କୁ ଡ଼ାକିଲା । ଶୃଗାଳ ତାକୁ ମାରି ଖାଇବାକୁ ବାହାରିବାରୁ ସେ କହିଲା ଯେ ବଣର ଜନ୍ତୁ ମାନେ ଶୃଗାଳକୁ ରାଜା କରିବାକୁ ଠିକ୍ କରି ଡ଼ାକି ନେବା ପାଇଁ ତାକୁ ପଠାଇଛନ୍ତି ଓ ସେ ଯେହେତୁ ରାଜା ହେବ ତେଣୁ ଆଗରେ ଚାଲୁ । ଶୃଗାଳ ଖୁସି ହୋଇ ଆଗରେ ଗଲା ବେଳକୁ ଗାତ ମୁଁହରେ ଥିବା ସିଂହ ତାକୁ ମାଡ଼ି ବସି ନେଇ ଗଲା । ଏହିପରି ଶଶା ବିଚରା ଦୁଇ ବିପଦରୁ ମୁକ୍ତ ହେଲା । ତେଣୁ ତୁମେମାନେ ଭଗବାନଙ୍କୁ ନିନ୍ଦା କର ନାହିଁ । ଅଶରଣର ଶରଣ, ନିରାଶ୍ରୟର ଆଶ୍ରୟଦାତା ସେ ।"

ଦୁର୍ଯ୍ୟୋଧନ ଗର୍ଜି ଉଠିଲା । "ଏ କପଟୀ କେତେ ବଡ଼ି ବଡ଼ି କଥା କହୁଛି । ଦୁଃଶାସନ, ଶୀଘ୍ର ଯାକୁ ଉଲଗ୍ନ କର । ଦେଖିବା, କିଏ ଯାକୁ ରକ୍ଷା କରିବ ?" ଦ୍ରୌପଦୀ ଶେଷ ଚେଷ୍ଟା କରିବାକୁ ଯାଇ କହିଲେ, "ହେ ରାଜା, ମୋର ପାଞ୍ଚ ପତି ଏଠାରେ ଉପସ୍ଥିତ ଅଛନ୍ତି । ମୁଁ ସେମାନଙ୍କୁ ଥରେ ଥରେ ପଚାରି ଦିଏଁ, ସେମାନେ ମୋତେ ରକ୍ଷା କରିବେ କି ନାହିଁ । ତା ପରେ ତୁମର ଯାହା ଇଚ୍ଛା କରିବ ।"

ଦ୍ରୌପଦୀ ଅତି ବିକଳରେ କାନ୍ଦି କାନ୍ଦି ପ୍ରଥମେ ଯୁଧିଷ୍ଠିରଙ୍କୁ ଅନାଇ କହିଲେ, "ତୁମେ ପରା ମହି ମଣ୍ଡଳରେ ଧର୍ମରାଜ ବୋଲାଉଛ ! ତୁମର ପତ୍ନୀକୁ ଏ ମହାସଭା ତଳେ ବିବସ୍ତ୍ର କରାଯାଉଛି । ତୁମେ କି ଏହା ନୀରବରେ ସହ୍ୟ କରିବ ?" ଯୁଧିଷ୍ଠିର ଏହା ଶୁଣି ତଳକୁ ମୁଣ୍ଡ ପୋତିଲେ । ତାପରେ ଦେବୀ ଅର୍ଜ୍ଜୁନଙ୍କୁ କହିଲେ, "ହେ ଦ୍ୱିଜିଶାକୁଷ୍ଣ, ହେ ମହା ଧନୁର୍ଦ୍ଧର ? ତମର ଦ୍ରୌପଦୀର ଏ ଘୋର ନିର୍ଯ୍ୟାତନା ତୁମେ କି

ଦେଖି ପାରୁ ନାହିଁ ? ଆଉ ଥାଉଁ ଥାଉଁ ତୁମେ କଣ ଏ ଅଭାଗୀର କପାଳକୁ ଅନ୍ଧ ହୋଇଗଲ ? କୁହ ମୁଖ ବନ୍ଦ କରିଛ କାହିଁକି ?

ଅର୍ଜୁନ ଅତି ଦୁଃଖରେ କହିଲେ, "ହେ ସୁନ୍ଦରୀ, ତୁମର ଏ ଶୋଚନୀୟ ଅବସ୍ଥା ଦେଖି ଦୁଃଖରେ ମୋ ଛାତି ଫାଟି ଯାଉଛି । ତୁମେ ତ ମୋର ବୀରତ୍ୱ ଜାଣିଛ । ଏ ଦୁର୍ଯ୍ୟୋଧନଙ୍କୁ ନିପାତ କରିବା ପାଇଁ ମୋର ଗୋଟିଏ ଶର ଯଥେଷ୍ଟ । ମାତ୍ର ମୁଁ ନିରୁପାୟ । ଜ୍ୟେଷ୍ଠ ଭ୍ରାତାଙ୍କର ଆଜ୍ଞା ନାହିଁ ।" ନକୁଳ, ସହଦେବ ମଧ୍ୟ ତାହାହିଁ କହିଲେ । ଶେଷରେ ଦେବୀ ଭୀମଙ୍କୁ ଅନାଇ କହିଲେ, "ହେ ବୀରଶ୍ରେଷ୍ଠ, ସିଂହ ନାରୀକୁ ଶୃଗାଳ ଏତେ ହୀନ ମାନ କରୁଛି ? ତୁମେ ଏହା କପରି ସହୁଛ ?" ଭୀମ କହିଲେ, "ହେ ଦେବୀ, ଜ୍ୟେଷ୍ଠ ଭ୍ରାତା ମୋର ସମସ୍ତ ଶକ୍ତି ହରଣ କରିଛନ୍ତି । ମୁଁ ନିରୁପାୟ ।"

ଏହା ଶୁଣି ଦେବୀ ଅତ୍ୟନ୍ତ କ୍ରୋଧରେ କହିଲେ, "ତୁମେମାନେ ସମସ୍ତେ ନିରୁପାୟ । ଧିକ ତୁମର ବୀରତ୍ୱ । ଏତେ ନିର୍ଲଜ ହୋଇ ତୁମେ ପାଞ୍ଚ ଜଣ ବଞ୍ଚିଛ କାହିଁକି । ବିଧବା ନାରୀଠାରୁ ମୁଁ ଆହୁରି ନିଃସହାୟ ହୋଇ ପଡ଼ିଲି । ଲକ୍ଷେ ରାଜା ଜିଣି ମତେ ଆଣିଥିଲ । ଏବେ ଛାର ଦୁଃଶାସନ ମତେ ଉଲଗ୍ନ କରୁଛି । ଅଥଚ କେହି ଜଣେ ହେଲେ ମତେ ସାହା ହେଉ ନାହିଁ । ସଭାରେ ଏତେ ଗୁରୁଜନ ବସିଛନ୍ତି । କେହି ଜଣେ ହେଲେ ଏ ଦୁଷ୍ଟକୁ ବାରଣ କରୁ ନାହାନ୍ତି ?"

ଭୀମ ଆଉ ସମ୍ଭାଳି ହୋଇ ପାରିଲେ ନାହିଁ । ବାଉନ ବାଉନ ଭାର ଗଦାକୁ ବୁଲାଇ ସିଂହରଡ଼ି କରି ଆଗକୁ ମାଡ଼ି ଆସିଲେ । ସଭାରେ ଉପସ୍ଥିତ ବ୍ୟକ୍ତିମାନେ ମହା ଭୟ କଲେ । ଭାବିଲେ, ଆଉ ଦୁଃଶାର ନିସ୍ତାର ନାହିଁ । ଏହିକ୍ଷଣି ଦୁଃଶା ସହିତ ସବୁ କୌରବ ଭାଇଙ୍କୁ, ଭୀମ ମାରି ପକା କରି ଦେବ । ଦୁର୍ଯ୍ୟୋଧନ କହି ଉଠିଲା, "ରେ ଭୀମ ପୂର୍ବଦିନ କଥାପରି ପାଇଲୁକି ? କାହିଁକି ଅକାରଣେ ଗର୍ଜନ ଛାଡୁଛୁ ? ଜାଣିରଖ ତୁମେମାନେ ସମସ୍ତେ ମୋର ଦାସ । ଯୁଧିଷ୍ଠିର ସଭଦ୍ୱାରରେ ବସି ରଥଦଉଡ଼ି ବଳିବ । ଅର୍ଜୁନ ମୋର ଘୋଡ଼ା ଘରେ ଘୋଡ଼ା

କରିବ । ତୁ ପ୍ରତିଦିନ ରୋଷେଇଘରକୁ ପାଣି ଯୋଗାଇବୁ । ନକୁଳ ସିଂହଦ୍ୱାର ଜଗିବ । କେବଳ ସହଦେବ ମୋର ମନ୍ତ୍ରୀହୋଇ ଆଗତ ଭବିଷ୍ୟତ କଥା ସବୁ କହିବ ।"

ଭୀମସେନ ଏହା ଶୁଣି ଆହୁରି ରାଗିଯାଇ ଚମକ ଗଦାବେଳକୁ ଯୁଧିଷ୍ଠିର ତାଙ୍କୁ ରୋକିଲେ ଓ କହିଲେ "ହେ ଭୀମ, କଥା ନ ବୁଝି ତୁ ଅକାରଣ ରୋଷ କରୁଛୁ କାହିଁକି ? ଆମର କର୍ମରେ ବିଧାତା ଯାହା ଲେଖିଛି ତାହା ଆମେ ଅବଶ୍ୟ ଭୋଗ କରିବା । ତୁ ଏ ମୂର୍ଖ ବୁଦ୍ଧିଗ୍ରସ୍ତ । ଦ୍ରୌପଦୀ ପରି ଭାରିଜା ଶହେ ମିଳିବେ । ମାତ୍ର ଭାଇଙ୍କୁ ମାରିଲେ ଆଉ ଭାଇ ପାଇବୁଟି ? ଦ୍ରୌପଦୀର ଧର୍ମ ତାକୁ ରକ୍ଷା କରିବ, ନଚେତ୍ ମାରିବ । ତୁ ସ୍ଥିର ହୋଇ ବସିରହ ।

ଭୀମ ଏହା ଶୁଣି ନିରୂପାୟ ହୋଇ କହିଲେ "ହେ ଦ୍ରୌପଦୀ, ତୁମର ଧର୍ମ ତୁମକୁ ରକ୍ଷାକରୁ । ମାତ୍ର ମୁଁ ଏହି ଶପଥ କରୁଛି, ଦୁଃଶାସନ ଯେଉଁ ହାତରେ ତୁମର କେଶ ଆକର୍ଷଣ କରିଛି, ସେହି ହାତ ମୁଁ ଓପାଡ଼ିଦେବ । ତାର ରକ୍ତରେ ତୁମକୁ ସ୍ନାନ କରାଇବ ଓ ତୁମର ବେଣୀ ବନ୍ଧନ କରା-ଇବ ।" ଏହା କହି କାଳେ ପ୍ରତିଜ୍ଞା ଭୁଲିଯିବେବୋଲି ନିଜର ତୀକ୍ଷ୍ଣ ନଖରେ ନିଜ ଗ୍ରୀବରେ ତିନିଗାର କାଟିଦେଲେ ।

ଦୁର୍ଯ୍ୟୋଧନ ଗୋଟାଏ ଅଟ୍ଟହାସ୍ୟକରି ଦୁଃଶାସନକୁ ଆଦେଶ ଦେଲା । ଆଉ ବିଳମ୍ବ ନକରି ଦ୍ରୌପଦୀକୁ ସମ୍ପୂର୍ଣ୍ଣ ବିବସନ କରି ତାର ଜାନୁ ଯୌବନକୁ ପଦାରେ ପକାଯାଉ । ଦୁଃଶାସନ ସଙ୍ଗେ ସଙ୍ଗେ ଆଦେଶ ପାଳନ କରିବାକୁ ବାହାରିଲା । ଦ୍ରୌପଦୀ ମହାଭୟପାଇ ଏଥର ଅଶରଣର ଶରଣ ସେହି ଭଗବାନ ଶ୍ରୀକୃଷ୍ଣଙ୍କୁ ସ୍ମରଣ କଲେ ।

"ପାଣ୍ଡବଙ୍କ ନିଷ୍ଠୁର ଦେଖିଣ ମହାସତୀ
ଭୟେ ମନେ ସୁମରିଲେ ରଖ ଲକ୍ଷ୍ମୀପତି ।

× × ×

ତୁମ୍ଭେ ନରଖିଲେ ମୁହିଁ ହୋଇଲି ଅନାଥ
ରଖ ରଖ ଜଗନ୍ନାଥ ଦୁଃଖୀର ସଙ୍ଗାତ ।

× + +

ଲଗାଇଲେ ପଦ୍ମପାଦ ତଳେ ଦେଖ ଧ୍ୟାନ
ଦ୍ୱାରକାରେ ଜାଣିଲେ ତା ଶ୍ରୀମଧୁସୂଦନ ।
ସତ୍ୟଭାମା ସଙ୍ଗେ ପଶାଖେଳନ୍ତି ଶ୍ରୀହରି
ଦ୍ରୌପଦୀର ଡାକ ପ୍ରଭୁ ଶ୍ରବଣେ ଶୁଣିକରି ।
ରଖିଲୁ ରଖିଲୁ ଆମ୍ଭେ ବୋଲଣ ବୋଇଲେ
ଆଜାନୁଲମ୍ବିତ ଭୁଜ ବେଗେ ଟେକଦେଲେ ।

ସତ୍ୟଭାମା କହିଲେ, "ପ୍ରଭୁ, କଅଣ ରଖିଲେ, ରଖିଲେ ବୋଲି କହୁଛ ? କାହାକୁ କେଉଁଠି ରଖିଲ ମ ? ମୁଁ ତ ହେଉଛି ଏ ଦାନ ସାରକୁ ମାରିଲି । ତମେ ଆଉ କେଉଁଦାନକୁ କେଉଁଠି ରଖିଲ ? ତମର ତ ଖେଳିବାକୁ ମନ ନାହିଁ । ମନଯାଇ କୁଆଡ଼େ ବୁଲୁଛି ।"

ଶ୍ରୀକୃଷ୍ଣ ହସି ହସି କହିଲେ, "ଦେଖ, ତୁମେ ଠିକ୍ କହିଲ । କୁରୁସଭା ତଳେ ଦୁଷ୍ଟ ଦୁଃଶାସନ ଦ୍ରୌପଦୀଙ୍କୁ ବିବସନ କରୁଛି । ସେହି ଦ୍ରୌପଦୀ ମୋତେ ଆଜି ଆକୁଳରେ "ହେ ଠାକୁର, ରଖ ବୋଲି ଡାକୁଥିଲେ । ମୁଁ ତାଙ୍କୁ ରଖିଲି, ରଖିଲି ବୋଲି କହିଲି ।"

ସତ୍ୟଭାମା କହିଲେ, "କଅଣ ହେଲା, ହସ୍ତିନାକୁ ଦ୍ୱାରକା ଲକ୍ଷେ ଯୋଜନ ଦୂର ? ଏତେ ବାଟରୁ ତମକୁ ଦ୍ରୌପଦୀର ଡାକ ଶୁଭିଲା ? ମତେ ମିଛରେ ଭଣ୍ଡୁଛ କି ? ଆଜିକାଲି ତୁମେ ବହୁତ ମିଛ କହିଲଣି ।"

"ଦେଖ, ମୁଁ ଆଦୌ ମିଛ କହିନାହିଁ । ମୁଁ ତ ସେଠାକୁ ସଙ୍ଗେ ସଙ୍ଗେ ବାହାରିଲି । ତୁମେ ମୋ ସଙ୍ଗେ ଚାଲ ଯିବ । ନିଜ ଆଖିରେ ସତ କି ମିଛ ଦେଖିବ ।" ଗରୁଡ ପୃଷ୍ଠରେ ଆରୋହଣ କରି ଶ୍ରୀକୃଷ୍ଣ ଓ ସତ୍ୟଭାମା ମୁହୂର୍ତ୍ତକ ମଧ୍ୟରେ କୁରୁସଭା ସ୍ଥଳରେ ପହଞ୍ଚି ସମସ୍ତଙ୍କ ଅଦୃଶ୍ୟରେ ଶୂନ୍ୟରେ ରହିଲେ ।

"ମୁକ୍ତକେଶ ଦ୍ରୌପଦୀ ଦେଖିଲେକ ଅନାଇଁ
ଗରୁଡ଼ ପିଠିରେ ବସେ ତ୍ରୈଲୋକ୍ୟ ଗୋସାଇଁ ।
ଚର୍ମନେତ୍ର ଯୋଗେ ଦେବୀ କରିଲେ ଦର୍ଶନ
ନିସ୍ତରିଲି ନିସ୍ତରିଲି ବୋଇଲେ ବଚନ ।
କୋଟି କୋଟି ଜନ୍ମର ମୋ ଯେତେ ପାପ ଥିଲା
ଶ୍ୱେତ ପଦ୍ମ ଡୋଳା ଦେଖି ଦୂର ହୋଇଗଲା ।"

ଶ୍ରୀକୃଷ୍ଣଙ୍କୁ ଦେଖି ଦ୍ରୌପଦୀଙ୍କ ଚକ୍ଷୁରୁ ଆନନ୍ଦାଶ୍ରୁ ଛୁଟିଲା । ସେ ହାତଯୋଡ଼ି ଅଭିମାନ କରି କହିଲେ, "ହେ ପ୍ରଭୁ ପଦ୍ମଲୋଚନ, ତୁମ୍ଭଯୋଗେ ପାଣ୍ଡବମାନେ ସିନା ବଞ୍ଚିଲେକ । ତାଙ୍କର ଯଜ୍ଞ ବେଳେ ତୁମେ ସ୍ନେହରେ ପ୍ରତିହାରୀପଣ କରିଥିଲ । ମଣିମା ମଣିମା ବୋଲି ଡାକୁଥିଲ । ପାଣ୍ଡବଙ୍କର ଓ ଏହି ଦୀନା ଦ୍ରୌପଦୀର ପ୍ରାଣ ତୁମେ । ଏବେ ଆମକୁ ସବୁ ପାଶୋରି ଦେଲ ? ଏ ଦୁଷ୍ଟମାନେ ମୋତେ କେତେ ଦୁଃଖ, କେତେ ନିର୍ଯ୍ୟାତନା ଦେଲେଣି । ପୁଣି ମୋତେ ଉଲଗ୍ନ କରୁଛନ୍ତି । ତା ପୂର୍ବରୁ ତୁମେ ଚକ୍ରମାରି ମୋର ଏ ବେକ କାଟି ପକାଉ ନାହିଁ କାହିଁକି ?"

ଦ୍ରୌପଦୀଙ୍କର ନିର୍ଯ୍ୟାତନା ଦେଖି ସତ୍ୟଭାମା କ୍ରୁଦ୍ଧହୋଇ ଚକ୍ରପେଷି ଶୀଘ୍ର ଦୁଃଶାସନକୁ ବଧ କରିବା ପାଇଁ ଶ୍ରୀକୃଷ୍ଣଙ୍କୁ ଅନୁରୋଧ କଲେ । ମାତ୍ର ଶ୍ରୀକୃଷ୍ଣ କହିଲେ ଯେ ସେ ସମୟ ଆସିନାହିଁ । ଦ୍ରୌପଦୀଙ୍କୁ ପ୍ରବୋଧନା ଦେଇ କହିଲେ, "ହେ ଦେବୀ ଦ୍ରୌପଦୀ, ତୁମକୁ ନିର୍ଯ୍ୟାତନା ଦେଇ ଏମାନେ ଯେଉଁ ମହାପାପ ଅର୍ଜନ କଲେ ତାହା ଅଚିରେ ସେମାନଙ୍କୁ ଧ୍ୱଂସ ପଥରେ ଆଗେଇନେବ । ତୁମେ ମନରୁ ଚିନ୍ତା ଛାଡ଼ । ରାଜସୂୟ ଯଜ୍ଞରେ ତୁମେ ଯେଉଁ ସବୁ ବସ୍ତ୍ର ଦାନ କରିଛ ତାହା ଏବେ ଲକ୍ଷଗୁଣ ହୋଇ ତୁମକୁ ମିଳିବ ।

"ସମ୍ପଦ କାଳେ ଯେ ଯାହା ଦାନ ଦେଇ ଥାଇ
ବିପଦର କାଳେ ଲକ୍ଷେ ଗୁଣରେ ମିଳଇ ।"

ତୁମେ ଦାନ କରିଥିବା ସେ ସବୁ ବସ୍ତ୍ର ଆଦିତ୍ୟଙ୍କ ନିକଟରେ ଗଚ୍ଛିତ ଅଛି । ତୁମେ କେବଳ ଆଦିତ୍ୟ ଦେବଙ୍କୁ ନମସ୍କାର କରି ଧୀରସ୍ଥିର

ହୋଇ ଠିଆହୁଅ । ଲକ୍ଷେ ଦୁଃଶାସନ ତୁମକୁ ବିବସନ କରିପାରିବେ ନାହିଁ ।"

ଦ୍ରୌପଦୀ ତାହାହିଁ କଲେ । ଏଣେ ବିଚିତ୍ର ଘଟଣା ଘଟିଲା । ଦୁଃଶାସନ ଦ୍ରୌପଦୀଙ୍କ ଦେହରୁ ବସ୍ତ୍ର ଟାଣିବାରେ ଲାଗିଛି । ଦ୍ରୌପଦୀ ଆଉ ବାଧା ନଦେଇ ହାତଯୋଡ଼ି ଠାକୁରଙ୍କୁ ଧ୍ୟାନ କରୁଛନ୍ତି । ଦ୍ରୌପଦୀଙ୍କ ଦେହରୁ ବସ୍ତ୍ର ଶେଷ ହେଉନାହିଁ କି ତାଙ୍କର କୌଣସି ଗୁପ୍ତ ଅଙ୍ଗ ପରିଦୃଷ୍ଟ ହେଉନାହିଁ । ଦୁଃଶାସନ ତାଙ୍କର ଲୁଗା ଟାଣି ଟାଣି କ୍ଲାନ୍ତ ହୋଇ ଗଲାଣି । ଦୁଇ ତିନଥର ପଡିଗଲାଣି । କିଛି ସମୟ ହାଲିଆ ହୋଇ ବସି ପୁଣି ଟାଣୁଛି । ଏଣେ ପାଖରେ ପର୍ବତ ପରି ବସ୍ତ୍ର ଜମା ହୋଇ-ଗଲାଣି । ସମସ୍ତେ ଆଶ୍ଚର୍ଯ୍ୟ ହୋଇ ଚାହିଁ ରହିଛନ୍ତି । ଭୀଷ୍ମ ଦ୍ରୋଣାଦି ଗୁରୁଜନମାନେ ଏହା 'ହରିମାୟା' ବୋଲିଜାଣି ଦ୍ରୌପଦୀଙ୍କର ଭକ୍ତିକୁ ମନେ ମନେ ପ୍ରଶଂସା କରୁଛନ୍ତି ।

ଶେଷରେ ଭୀଷ୍ମ ତୁଣ୍ଡ ଖୋଲି କହିଲେ, "ହେ ବାବୁ, ଦୁର୍ଯ୍ୟୋଧନ, ତୁମ ଅନ୍ତଃପୁରରେ ତୁମର ନାରୀମାନେ କେଉଁଯାଏ ବସ୍ତ୍ର ପିନ୍ଧିଥାନ୍ତି କି ? ଦୁଃଶାସନ ପରି ବୀର ଦ୍ରୌପଦୀଙ୍କ ବସ୍ତ୍ର ଟାଣି ଟାଣି ଦରମରା ପରି ହୋଇ ଗଲାଣି । ତଥାପି ବସ୍ତ୍ର ଶେଷ ହେଉନାହିଁ । ଏପରି ବିଚିତ୍ର ଘଟଣା ଦ୍ୱାରା ତୁମର ଟିକିଏ ହେଲେ ଜ୍ଞାନୋଦୟ ହେଉନାହିଁ ? ଏହା କି ସାଧାରଣରେ କେବେ ସମ୍ଭବ ?

ଦ୍ରୌପଦୀ, ଅନାଦି, ଅପର୍ଣ୍ଣା, ପରମ ମାହେଶ୍ୱରୀ ଅଯୋନି ସମ୍ଭୂତା ।

"ଆଦ୍ୟ ଅବତାରେ ସେ କେତୁକା ମୂରତି
ଦ୍ୱିତୀୟ ଅବତାରେ ସେ ପୈକବଳା ପାର୍ବତୀ ।
ତୃତୀୟ ଅବତାରେ ସେ ଦକ୍ଷଘରେ ଜାତ
ଚତୁର୍ଥ ଅବତାର ପୈ ଦ୍ରୁପଦ ଦୁହିତ ।"

ତାଙ୍କୁ ବିବସନ କରିବାକୁ ତୁମେମାନେ କଦାପି ସମର୍ଥ ହେବନାହିଁ । ଏବେ ଦୁଃଶାସନକୁ ଆଦେଶ ଦିଅ, ସେ ଏ ଦୁଷ୍କର୍ମ ବନ୍ଦକରୁ ।"

ତଥାପି ମୂଢମାନଙ୍କର ଚେତା ପଶିଲା ନାହିଁ । ଏହାଦେଖି ଦ୍ରୌପଦୀ ମହା କ୍ରୋଧରେ ହସ୍ତିନା ନଗରକୁ ଚାହିଁଲେ । ଅକସ୍ମାତ୍ କଣଖରେ ନିଆଁ ଲାଗିଯାଇ ହୁ ହୁ ହୋଇ ଜଳଉଠିଲା ଓ ସେହି ନିଆଁ ସାରା ନଅରକୁ ଘୋଟି ଘୋଟି ବ୍ୟାପି ଗଲା । ଦୁଃଶାସନ ତଳେ ପଡ଼ିଯାଇ ପାହାଚ ପଥରରେ ମୁଣ୍ଡ ପିଟିହୋଇଯିବାରୁ ଝର ଝର ରକ୍ତ ବହିଲା । ଦୁର୍ଯ୍ୟୋଧନ ମଧ୍ୟ ଅକସ୍ମାତ୍ ଆସ୍ଥାନରୁ ଟଳି ପଡ଼ିଲା ।

ଏ ସମସ୍ତ ଧ୍ୱଂସଲୀଳା ଦେଖି ଧୃତରାଷ୍ଟ୍ର ଏତେବେଳକୁ ସଞ୍ଜୟଙ୍କୁ ଘଟଣା କଅଣ ବୋଲି ପଚାରିଲେ । ସଞ୍ଜୟ, ଘଟିଯାଇଥିବା ସମସ୍ତ ବିଷୟ ଧୃତରାଷ୍ଟ୍ରଙ୍କୁ ଜଣାଇଲେ । ଧୃତରାଷ୍ଟ୍ର ମହା ବ୍ୟସ୍ତ ହୋଇ ତାଙ୍କୁ ସଭାସ୍ଥଳକୁ ନେଇ ଯିବାକୁ କହିଲେ । ରାଣୀ ଭାନୁମତୀ ମଧ୍ୟ ଏହା ଶୁଣି ସଭାସ୍ଥଳକୁ ଧାଇଁ ଆସି ଦ୍ରୌପଦୀଙ୍କର ଚରଣ ବନ୍ଦନା କରି ତାଙ୍କୁ କ୍ଷମାଭିକ୍ଷା କଲେ । ଧୃତରାଷ୍ଟ୍ର ଗାନ୍ଧାରୀ ମଧ୍ୟ ସଭାସ୍ଥଳରେ ପହଞ୍ଚି "ମୋ ମା' କେଉଁଠି ଅଛି ? ଆମକୁ ସେଠାକୁ ନେଇ ଚାଲ, ବୋଲି କହିଲେ ।

ଧୃତରାଷ୍ଟ୍ର କହିଲେ, "ମା ପାଞ୍ଚାଳୀ, ମୋର କୁଳଲକ୍ଷ୍ମୀ, ମୁଁ ମନ୍ଦ-କ୍ଷଣରେ ଏ ଦୁଷ୍ଟ ପୁତ୍ରମାନଙ୍କୁ ଜନ୍ମ ଦେଇଛି । ଏମାନେ ବହୁତ ଅପରାଧ କଲେଣି । ଏମାନେ କର୍ମଫଳ ନିଶ୍ଚୟ ଭୋଗିବେ । ମା' ମୋର । ଏ ଅନ୍ଧ ବୁଢ଼ାବାପର କଥାମାନି ତୁ ଏମାନଙ୍କୁ କ୍ଷମା କରି ଦେ । ନଚେତ୍ ଏମାନଙ୍କୁ କେହିହେଲେ ରକ୍ଷାକରିପାରିବେ ନାହିଁ । ଏମାନେ ମହାପାପୀ । ତୋର କ୍ରୋଧ ବହ୍ନିରେ ନିଶ୍ଚୟ ଜଳିଯିବେ ।"

ଧୃତରାଷ୍ଟ୍ରଙ୍କ କୋମଳ ବଚନ ଶୁଣି ଦେବୀ ଦ୍ରୌପଦୀ ଶାନ୍ତ ହେଲେ । ସେ ପୁଣି ଅମୃତ ଦୃଷ୍ଟିରେ ଚାହିଁବାରୁ ଅଗ୍ନି ଲିଭିଗଲା । ସମସ୍ତେ ଆଶ୍ୱସ୍ତ ହେଲେ । ଗାନ୍ଧାରୀ, ଭାନୁମତୀ, ଦ୍ରୌପଦୀଙ୍କର କର ଧରିନେଇ ଅନ୍ତପୁରକୁ ବିଜେ କଲେ । ସେଠାରେ ଦ୍ରୌପଦୀଙ୍କୁ ସାଷ୍ଟାଙ୍ଗ କରି ଅର୍ଘ୍ୟଥାଳି ନେଇ ବନ୍ଦାପନା କଲେ ।

ଧୃତରାଷ୍ଟ୍ର ଯୁଧିଷ୍ଠିରଙ୍କର ହାତ ଧରି ପକାଇ କହିଲେ, "ବାବୁ କେଉଁ କୁକ୍ଷଣରେ ମୁଁ ଶତେପୁତ୍ର ଉପୁଜାଇଲି, ସେମାନଙ୍କ ପାଇଁ ଚିନ୍ତା କରି କରି

ମୋର ହନଗଲ । ମୋର ଶହେ ପୁଅ ନହୋଇ ତୋପରି ଗୋଟିଏହେଲେ ଧାର୍ମିକ ପୁଅ ହୋଇ ଥାନ୍ତା କି ? ଯାହା ହେଉ, ତୁ ପରମ ପଣ୍ଡିତ, କ୍ଷମା-ଶୀଳ, ସାକ୍ଷାତ ଧର୍ମଦେବତା । ତୋର ଏ ଦୁଷ୍ଟ ଭାଇଗୁଡ଼ାଙ୍କୁ କ୍ଷମା କରି ଦେ ।”

ଅଜାତଶତ୍ରୁ ଯୁଧିଷ୍ଠିର ଧୃତରାଷ୍ଟ୍ରଙ୍କଠାରୁ ଏ କୋମଳ ବଚନ ଶୁଣି ସଙ୍ଗେ ସଙ୍ଗେ ସବୁ ଦୁଃଖ ପାଶୋରି ଦେଲେ । ଧୃତରାଷ୍ଟ୍ର ଭୀମ ଅର୍ଜୁନ ନକୁଳ ସହଦେବଙ୍କୁ ମଧ୍ୟ ବହୁତ ପ୍ରବୋଧନା ଦେଇ କହି ସେମାନଙ୍କ ମନକୁ ଶାନ୍ତ କଲେ । ସମସ୍ତଙ୍କୁ ରାଜ ନଅରକୁ ନେଇ ସ୍ନାନ ଭୋଜନ କରାଇଲେ । ଦ୍ରୌପଦୀଙ୍କୁ ଡାକି କହିଲେ, “ମା, ତୋର ମନ ଶାନ୍ତ ହେଲା ତ ? ଆମକୁ କ୍ଷମା କଲୁ କି ?” ଦ୍ରୌପଦୀ କହିଲେ, “ହେ ଜ୍ୟେଷ୍ଠ-ତାତ ଏହା ଆମର କର୍ମଫଳ । ନଚେତ୍ ଏତେ ବଡ କାଣ୍ଡ କାହିଁକି ହୋଇଥାନ୍ତା ?” ଧୃତରାଷ୍ଟ୍ର କହିଲେ “ଯେବେ ଆମକୁ କ୍ଷମା କରିଛୁ ତେବେ ବର ମାଗ । ଯାହା ମାଗିବୁ ମୁଁ ତାହା ଦେବି, ନିଜର ବିଚାର ସତ୍ୟ କରୁଛି ।” ଯୁଧିଷ୍ଠିର ଖେଳରେ ଯାହା ସବୁ ହାରିଛନ୍ତି, ସେ ସମସ୍ତ ଫେରାଇ ଦେବାକୁ ଦ୍ରୌପଦୀ ବର ମାଗିଲେ । ଧୃତରାଷ୍ଟ୍ର ଆନନ୍ଦରେ ସେ ସବୁ ଫେରାଇ-ଦେଲେ ବୋଲି କହିଲେ । ଏହାପରେ ଦ୍ରୌପଦୀ ଓ ପାଣ୍ଡବମାନେ ସମସ୍ତଙ୍କ ଠାରୁ ମେଲାଣି ନେଇ ଶାନ୍ତ ମନରେ ଇନ୍ଦ୍ରପ୍ରସ୍ଥ ଫେରିଗଲେ । ତେଣେ ଦୁଃଶାସନର ଟଣାଟଣି ଦ୍ୱାରା ଫିଟିଯାଇଥିବା ଦ୍ରୌପଦୀଙ୍କର ଘନକେଶଗୁଚ୍ଛ ସେହିପରି ମୁକୁଳା ରହିଲା । ଭୀମଙ୍କର ପ୍ରତିଜ୍ଞା ସ୍ମରଣ କରି ସେ ଆଉ ତାକୁ ବାନ୍ଧିଲେ ନାହିଁ ।





ମ
ହା
ଭା
ର
ତ

ସାରଳା

୨୧୯ଶ ଅଧ୍ୟାୟ

## ନାଗାର୍ଜୁନ

ଯଥା ସମୟରେ ନାଗରାଜା ବାସୁକୀଙ୍କର କନ୍ୟା ନାଗବାଳୀଙ୍କର ଗୋଟିଏ ଅତ୍ୟନ୍ତ ତେଜସ୍ୱୀନ ପୁତ୍ର ଜାତ ହେଲା । ଅର୍ଜୁନଙ୍କ ଅନୁରୋଧ କ୍ରମେ ନାଗବାଳୀ ଅର୍ଜୁନଙ୍କନାମ ଓ ତାଙ୍କର ନାମ ମିଶାଇ ପୁଅର ନାମ ଦେଲେ ନାଗାର୍ଜୁନ । ଅଜାଙ୍କ ଘରେ ନାଗାର୍ଜୁନ ଚନ୍ଦ୍ରକଳା ପରି ବଢ଼ିବାକୁ ଲାଗିଲା । ଦିନେ ତାର ଜଣେ ସାଙ୍ଗ ତାକୁ ଥଟ୍ଟାରେ କହିଲା, "ସମସ୍ତେ କହୁଛନ୍ତି ତୁ ବାସୁକୀଙ୍କର ନାତି । ମାତ୍ର ତୋର ବାପାଙ୍କ ନାମ ତ କେହି କହୁ ନାହାଁ ?"

ନାଗାର୍ଜୁନ ଏହା ଶୁଣି ବଡ଼ ଅଭିମାନରେ ମା'ଙ୍କଠାରୁ ବାପାଙ୍କର ସମସ୍ତ ପରିଚୟ ବୁଝିନେଲା । ଏବଂ ତାଙ୍କ ସହିତ ଭେଟିବାକୁ ମଧ୍ୟଲୋକକୁ ବାହାରିଲା । ମା ସନ୍ଧ୍ୟାବଳୀ (ନାଗବାଳୀଙ୍କର ଅନ୍ୟ ନାମ) ତାକୁ ଅମୃତ ଲଡ଼ୁ ଖୁଆଇ ଆନନ୍ଦରେ ଆଶୀର୍ବାଦ କରି ସ୍ୱାମୀଙ୍କ ନିକଟକୁ ପଠାଇ ଦେଲେ ।

ଦୈବକ୍ରମେ ନାଗାର୍ଜୁନ ଆସି ଭଗବାନ ଶଙ୍କରଙ୍କର ଆବାସସ୍ଥଳୀ କଇଲାସରେ ପହଞ୍ଚିଲା । ସେଠାରେ ଶିବଙ୍କର ମହିମା ବିଷୟ ଶୁଣି

ତାଙ୍କୁ ସନ୍ତୁଷ୍ଟ କରିବା ପାଇଁ କଠୋର ତପସ୍ୟା ଆରମ୍ଭ କଲା । ଏପରି ସୁକୁମାର ବୟସରେ ଏଭଳି କଠୋର ତପସ୍ୟା କରିବାର ଦେଖି ଶିବଗଣମାନେ ତାକୁ ଧନ୍ୟ ଧନ୍ୟ କଲେ । ଶିବଙ୍କ ଆଦେଶରେ ତାର ତପସ୍ୟା ଭଙ୍ଗପାଇଁ ବହୁତ ଉପାୟ କରାଗଲା । ମାତ୍ର ସବୁ ବିଫଳ ହେଲା । କ୍ରମେ ତାର ତପସ୍ୟା କଠୋରରୁ କଠୋରତର ହେବାକୁ ଲାଗିଲା ।

ଭଗବାନ ଆଶୁତୋଷ କ ସମ୍ଭାଳ ରହି ପାରନ୍ତି ? ପାର୍ବତୀଙ୍କୁ ସଙ୍ଗରେ ଧରି ନାଗାର୍ଜୁନର ସମ୍ମୁଖରେ ପହଞ୍ଚିଗଲେ ଓ ତାର ଶିର ସ୍ପର୍ଶକରିବାମାତ୍ରେ ତାର ଚକ୍ଷୁ ଖୋଲିଗଲା । ନିଜର ଆରାଧ୍ୟ ଦେବତା ଓ ମାତା ପାର୍ବତୀଙ୍କୁ ସେ ପ୍ରଥମେ ଚିହ୍ନି ପାରିଲା ନାହିଁ ଏବଂ ସେମାନେ ତାର ଏ ବହୁତ ଦୁଃଖ କଷ୍ଟରେ ଅର୍ଜିଲା ତପକୁ କାହିଁକି ଭଙ୍ଗ କଲେ ବୋଲି ଅତି ବିନୟର ସହିତ ପଚାରିଲା ।

ନାଗାର୍ଜୁନ ଯେତେବେଳେ ତାଙ୍କର ପରିଚୟ ପାଇଲା, ତାର ଆନନ୍ଦର ସୀମା ରହିଲା ନାହିଁ । ସେ ହରପାର୍ବତୀଙ୍କ ପାଦପଦ୍ମରେ ଲମ୍ବିହୋଇ ପଡ଼ିଗଲା । ପାର୍ବତୀ ତାକୁ ତଳୁ ଉଠାଇ ପୁତ୍ର ସ୍ନେହରେ କୋଳ କଲେ ଓ ତାର ମୁଖରେ କ୍ଷୀରଦାନ କଲେ । ନାଗାର୍ଜୁନ ଦେବୀଙ୍କଠାରୁ କ୍ଷୀର ପାନକରି ଅଜର ଅମର ହୋଇଗଲା । ସ୍ୱୟଂ ମହାଦେବ ତାକୁ ପାଶୁପତ ସହିତେ ସମସ୍ତ ଦେବଅସ୍ତ୍ର ପ୍ରଦାନ କଲେ ଏବଂ ବିଜୟୀ ଓ କୋଟିକଳ୍ପୀ ହୁଅବୋଲି ବର ମଧ୍ୟ ପ୍ରଦାନ କଲେ । ହର ପାର୍ବତୀଙ୍କ ବର ଲାଭକରି ନାଗାର୍ଜୁନ ସ୍ୱର୍ଗ ମର୍ତ୍ତ୍ୟ ପାତାଳରେ ଅଦ୍ୱିତୀୟ ବୀର ହୋଇଉଠିଲେ ।

ହରପାର୍ବତୀଙ୍କର ଆଦେଶରେ ନାଗାର୍ଜୁନ ହରଉଦ୍ୟାନ ରକ୍ଷାର ଦାୟିତ୍ୱରେ ରହିଲା । ପାର୍ବତୀଙ୍କର ଗୋଟିଏ ପୋଷା ଗଣ୍ଡା ଥିଲା । ସେ ତାକୁ ନାନା ରତ୍ନଅଳଙ୍କାରରେ ମଣ୍ଡିତ କରି ହରଉଦ୍ୟାନରେ ଛାଡ଼ି ଦେଲେ ଓ ତାକୁ ଖୁବ୍ ଯତ୍ନରେ ରଖିବାକୁ ନାଗାର୍ଜୁନକୁ କହିଲେ । ଏହିପରି ଆନନ୍ଦରେ ରହି ନାଗାର୍ଜୁନ ପିତାଙ୍କୁ ଭେଟିବାକଥା ଭୁଲିଗଲା ।

ଏବେ ଯୁଧିଷ୍ଠିରଙ୍କର ପିତୃଶ୍ରାଦ୍ଧ କରିବା ନିମିତ୍ତ ଗଣ୍ଡାମାଂସ ଆବଶ୍ୟକ ହେଲା । ଅର୍ଜ୍ଜୁନ ଗଣ୍ଡା ଶିକାର କରିବାପାଇଁ ବଣକୁ ଗଲେ । ମାତ୍ର ବଣରେ ବହୁତ ବୁଲି ବୁଲି ଗଣ୍ଡା ପାଇଲେ ନାହିଁ । ଶେଷରେ ହରଉଦ୍ୟାନରେ ପଶି ପାର୍ବତୀଙ୍କ ଗଣ୍ଡାକୁ ଦେଖିଲେ ଓ ସଙ୍ଗେ ସଙ୍ଗେ ଶରପେଶି ତାକୁ ମାରିଦେଲେ । ପାଖକୁ ଯାଇ ଦେଖିଲେ ଗଣ୍ଡାଦେହରେ ବହୁତ ରତ୍ନ ଆଭରଣ ରହିଛି । ଗଣ୍ଡାର ମାଲିକକୁ ଦେଖିଲେ ସେ ସବୁ ଅଳଙ୍କାର ତାକୁ ଦେଇ କେବଳ ଗଣ୍ଡାଟି ନେବେ ବୋଲି ସେଠାରେ କିଛି ସମୟ ଅପେକ୍ଷା କଲେ ।

ନାଗାର୍ଜ୍ଜୁନ ସେଠାରେ ପହଞ୍ଚି ଗଣ୍ଡାଟି ମରିପଡ଼ିଥିବାର ଦେଖି ଦୁଃଖରେ ଅଧୀର ହୋଇପଡ଼ିଲା । ତାକୁ କିଏ ହତ୍ୟାକଲାବୋଲି ଚାରି-ଆଡ଼କୁ ଚାହିଁଲା ବେଳକୁ କିରାତ ବେଶଧାରୀ ଅର୍ଜ୍ଜୁନ ଲତା ଉହାଡ଼ରୁ ବାହାରି ନାଗାର୍ଜ୍ଜୁନକୁ କହିଲେ, "ତୁମର ରତ୍ନ ଅଳଙ୍କାର ସବୁ ଗଣ୍ଡା ଦେହରୁ କାଢ଼ିନିଅ । ମୋର କେବଳ ଗଣ୍ଡାଟି ଦରକାର ।" ନାଗାର୍ଜ୍ଜୁନ ଏହାଶୁଣି ଅତ୍ୟନ୍ତ କ୍ରୋଧରେ କହିଲା, "ରେ ଦୁଷ୍ଟ କିରାତ, ତୁ ପାର୍ବତୀଙ୍କର ପୋଷା ଗଣ୍ଡାକୁ ମାରିଲୁ । ଏବେ ତୋତେ ଆଉ କେହି ରକ୍ଷା କରି-ପାରିବେ ନାହିଁ । ତୁ ନିଶ୍ଚୟ ମରିବୁ । ତୋର ଇଷ୍ଟଦେବ ସ୍ମରଣ କର ।"

ଗୋଟାଏ ସାମାନ୍ୟ ପିଲା ମୁଖରୁ ଏପରି କଥା ଶୁଣି ଅର୍ଜ୍ଜୁନଙ୍କର କ୍ରୋଧ ପରିବର୍ତ୍ତେ କୌତୁହଳ ଜାତ ହେଲା । ସେ କହିଲେ, "ହେ ଋଷିବାଳକ, ଗଣ୍ଡା ଦେହରୁ ଅଳଙ୍କାରତକ କାଢ଼ିନେଇ ଶୀଘ୍ର ଚାଲି ଯା । ତୋ ସଙ୍ଗେ ବକ୍ ବକ୍ ହେବାକୁ ମୋର ସମୟ ନାହିଁ । ଶୀଘ୍ର ଗଣ୍ଡାଟି ନେଇ ମୋତେ ଫେରିଯିବାକୁ ହେବ ।

ନାଗାର୍ଜ୍ଜୁନ ଆଉ ବିଳମ୍ବ ନକରି ଅର୍ଜ୍ଜୁନଙ୍କୁ ଲକ୍ଷ୍ୟକରି ଶରମାରିଲା । ଶର ଆସି ଅର୍ଜ୍ଜୁନଙ୍କର ପାଦତଳେ ପଡ଼ିଲା । ଅର୍ଜ୍ଜୁନ ଶରମାରିବାରୁ ତାହା ଆସି ନାଗାର୍ଜ୍ଜୁନର କପୋଳ ଚୁମ୍ବନ କଲା । ପରେ ପରେ ଉଭୟଙ୍କ ମଧ୍ୟରେ ପ୍ରବଳ ଯୁଦ୍ଧ ଲାଗିଗଲା । ନାଗାର୍ଜ୍ଜୁନର ଯୁଦ୍ଧଦେଖି ଅର୍ଜ୍ଜୁନଙ୍କ ଆଶ୍ଚର୍ଯ୍ୟର ସୀମା ରହିଲାନାହିଁ । କିଏ ଏହି ଅଦ୍ଭୁତ ବାଳକ, ଯେକି

ସମସ୍ତ ଦେବଶରକୁ ପ୍ରତିଶର ପ୍ରୟୋଗ କରି ପାରୁଛି ? ନାଗାର୍ଜ୍ଜୁନ ଭାବୁଛି, ଜଣେ ସାମାନ୍ୟ କପାତ ପକ୍ଷରେ ଏତେ ଦେବାସ୍ତ୍ରର ଅଧିକାରୀ ହେବା କିପରି ସମ୍ଭବ ହେଲା ?

ଶେଷରେ ନାଗାର୍ଜ୍ଜୁନ ମହାକ୍ରୋଧରେ ମହାକାଳ ଶରକୁ ପେଷିଲା । ଲକ୍ଷେ ସୂର୍ଯ୍ୟର ତେଜ ଧରି ସେହି ଦେବଶର ଯେତେବେଳେ ମାଡ଼ିଆସିଲା ଅର୍ଜ୍ଜୁନ ଦେଖିଲେ ତାକୁ ପ୍ରତିଶର କରିବା ପାଇଁ ଅସ୍ତ୍ର ତାଙ୍କ ନିକଟରେ ନାହିଁ । ତେଣୁ ସେ ଶ୍ରୀକୃଷ୍ଣ ନାମ ସ୍ମରଣ କରୁ କରୁ ଶରାଘାତରେ ମରି ଢଳି ପଡ଼ିଲେ । ନାଗାର୍ଜ୍ଜୁନ ତାଙ୍କ ନିକଟକୁ ଧାଇଁ ଯାଇଁ ତାଙ୍କ ରକ୍ତରେ ଟିକା ଘେନିଲା ଓ ନିଜ ମାତାଙ୍କୁ ଏ ସମସ୍ତ ଖବର ଦେବାପାଇଁ ପାତାଳ ଭୁବନକୁ ଚାଲିଲା ।

ଚିତ୍ରସେନ ଗନ୍ଧର୍ବ ଶୂନ୍ୟପଥରେ ଯାଉ ଯାଉ ଏ ଦାରୁଣ ଦୃଶ୍ୟ ଦେଖିଲେ ଓ ସଙ୍ଗେ ସଙ୍ଗେ ଯାଇ ଦେବରାଜ ଇନ୍ଦ୍ରଙ୍କୁ ଏ ସମ୍ବାଦ ଜଣାଇଲେ । ଇନ୍ଦ୍ର ଅର୍ଜ୍ଜୁନ ନିଧନ ବାର୍ତ୍ତା ଶୁଣି ଦୁଃଖରେ ମୂର୍ଚ୍ଛାଗଲେ । ପରେ ଚେତାପାଇ ଉଠି ମହାକ୍ରୋଧରେ ନିଜର ସୈନ୍ୟ ସଜକରି ଘଟଣାସ୍ଥଳକୁ ଚାଲିଲେ ।

ଏଣେ ଦେବର୍ଷି ନାରଦ ଯାଇ ଦ୍ୱାରକାରେ ରାମକୃଷ୍ଣଙ୍କୁ ଓ ହସ୍ତିନା, ଇନ୍ଦ୍ରପ୍ରସ୍ଥରେ ଦୁର୍ଯ୍ୟୋଧନ ଓ ଯୁଧିଷ୍ଠିରଙ୍କୁ ଏ ଦୁଃସମ୍ବାଦ ଜଣାଇଦେଲେ । ସମସ୍ତେ ନିଜ ନିଜର ସୈନ୍ୟବଳ ନେଇ ହରଉପବନକୁ ଚାଲିଲେ ।

ନାଗାର୍ଜ୍ଜୁନ ପାତାଳକୁ ଯାଇ ହର ଉପବନରେ ଘଟିଯାଇଥିବା ସବୁ ବିଷୟ ନିଜର ମାତାଙ୍କ ଆଗରେ ବର୍ଣ୍ଣନା କଲା । "ମା, ଜଣେ କପାତ, ଦେଖିବାକୁ ଭାରି ସୁନ୍ଦର । ସେ ପାର୍ବତୀଙ୍କ ପୋଷା ଗଣ୍ଡାକୁ ମାରିଦେଲା । ମୋ ସଙ୍ଗେ ବହୁତ ଯୁଦ୍ଧକଲା । ସବୁ ଦେବଅସ୍ତ୍ର ତାକୁ ଜଣା । ମାତ୍ର ପିତା ଶଙ୍କର ଓ ମାତା ପାର୍ବତୀଙ୍କ ବର ଲାଭକରି ମୁଁ ତ ଅଜର ଅମର ହୋଇଯାଇଛି । ସମସ୍ତ ଦେବ ଅସ୍ତ୍ରର ମଧ୍ୟ ଅଧିକାରୀ ହୋଇଛି । ମୋତେ ସେ କୁଆଡ଼ୁ ଜିଣନ୍ତା ? ବହୁତ ପ୍ରତିଜ୍ଞା ସେ କରୁଥିଲା । ଭାରି ବଡ଼େଇ କରି

କହୁଥିଲା । 'ମୁଁ ଅଗ୍ନିଦେବତାଙ୍କ ପାଇଁ ଖାଣ୍ଡବ ବନ ଦହନ କଲି । ପାଞ୍ଚାଳ ଦେଶରେ ରାଧାଚକ୍ର ଭେଦକରି ଲକ୍ଷେ ରାଜାଙ୍କ ମୁହଁରେ କାଳି ବୋଳିଲି । ସମୁଦ୍ରରେ ଶର ବନ୍ଧ ବାନ୍ଧି ହନୁମାନର ଗର୍ବ ଭାଙ୍ଗିଲି । ଧନୁର୍ଦ୍ଧରରେ ପୃଥିବୀ ଧାରଣକଲି ।' ଏମିତି କେତେ କଣ ବକି ଗଲା । ଶେଷକୁ ମହାକାଳ ଶର ପେଷି ମୁଁ ତାକୁ ମାରିଦେଲି ।"

ସନ୍ଧ୍ୟାବଳୀ ଏହା ଶୁଣୁ ଶୁଣୁ ତାଙ୍କର ମୁଖ କଳା ପଡ଼ିଗଲାଣି । ନିଜର ପୁତ୍ର ଯେଉଁ କିରାତକୁ ବଧ କରିଛି ସେ ସେ ନିଶ୍ଚିତଭାବେ ସ୍ୱାମୀ ଅର୍ଜୁନ ଏହି ଆଶଙ୍କା କରି ସେ ତାଙ୍କର ସଯତ୍ନ ପାଳିତ ଅର୍ଜୁନବୃକ୍ଷ ନିକଟକୁ ଦୌଡ଼ିଗଲେ ଓ ଦେଖିଲେ ଗଛଟି ସମ୍ପୂର୍ଣ୍ଣ ଝାଉଁଳି ଯାଇଛି । ସେ ଛାତିରେ ହାତ ବାଡ଼େଇ ଅତି ବିକଳହୋଇ କାନ୍ଦି ଉଠିଲେ । ଏହା ଦେଖି ନାଗାର୍ଜୁନ ଓ ପୁରଜନମାନେ ବଡ଼ ଆଶ୍ଚର୍ଯ୍ୟ ହେଲେ । କଥା କଅଣ, କାହିଁକି ରାଜଜେମା ହଠାତ୍ ଏପରି କରୁଣ ଭାବରେ କାନ୍ଦି ଉଠିଲେ ? କେହି କିଛି ବୁଝି ନପାରି ପରସ୍ପର ମୁହଁକୁ ଚାହୁଁଥାନ୍ତି । କିଛି ସମୟ ପରେ ସନ୍ଧ୍ୟାବଳୀ ପୁଅକୁ ଧିକ୍କାର କରି କାନ୍ଦି କାନ୍ଦି କହିଲେ, "ଆରେ ହତଭାଗା, ତୋତେ ମୁଁ କେଉଁ କୁକ୍ଷଣରେ ଜନ୍ମ ଦେଇଥିଲି । ତୋର ନିଜର ପିତା, ପୃଥିବୀର ଅଦ୍ୱିତୀୟ ବୀର ଅର୍ଜୁନଙ୍କୁ ତୁ ନିଜ ହାତରେ ମାରିଲୁ ? ଆରେ, ଧନୁର୍ଦ୍ଧରରେ ତାଙ୍କଛଡ଼ା ଆଉ କିଏ ପୃଥିବୀ ଧାରଣ କରି ପାରନ୍ତା ? ଖାଣ୍ଡବ ବନ ଆଉ କିଏ ଦହନ କରି ପାରନ୍ତା ? କିଏ ଆଉ ହନୁମାନର ଦର୍ପ ଭାଙ୍ଗି ପାରନ୍ତା ? ପିତାଙ୍କ ସହିତ ଦେଖା-କରିବାକୁ ଯାଇ ଶେଷରେ ତୁ ତାଙ୍କୁ ହତ୍ୟାକଲୁ । ପୁଅହୋଇ ମା' ମୁଣ୍ଡରୁ ସିନ୍ଦୁର ପୋଛିଦେଲୁ ।"

ନାଗାର୍ଜୁନ ଏହାଶୁଣି ତାଟକା । ସେ କଣ କେବେ ଭାବିଥିଲା, ଯେଉଁ କିରାତ ରୂପୀ ମଦଟାରଙ୍କୁ ସେ ଦୈବୀବଳରେ ବଧକଲା, ସେ ସ୍ୱୟଂ ତାର ଜନ୍ମଦାତା ପିତା ! ଯାହାଙ୍କୁ ସେ ହତ୍ୟାକଲା ତାଙ୍କୁହିଁ ଦେଖିବାକୁ ସେ ଏତେ ଆଗ୍ରହରେ ମଧ୍ୟଭୁବନକୁ ଯାଇଥିଲା ! ମାତାଙ୍କର ଆକୁଳ କ୍ରନ୍ଦନ ଦେଖି ସେ ନିଜେ ମଧ୍ୟ କାନ୍ଦି ପକାଇଲା ।

ସନ୍ଧ୍ୟାବଳୀ କିଛି ସମୟପରେ ସାମାନ୍ୟ ପ୍ରକୃତିସ୍ଥ ହୋଇ ପୁଅକୁ ସବୁ ଅଜ୍ଞାତ ଘଟଣା କହିଲେ, "ବାବୁରେ, ତୋର ଅଜା ଯୁଧିଷ୍ଠିର ମହାରାଜାଙ୍କ ରାଜସୂୟ ଯଜ୍ଞକୁ ନିମନ୍ତ୍ରିତ ହୋଇ ଯିବା ସମୟରେ ସେହି ମହାବୀର ଅର୍ଜୁନ ଏଠାରେ ନିଜ ଧନୁର୍ବଳରେ ପୃଥିବୀ ଧାରଣ କରି ରହିଥିଲେ । ଏହିଠାରେ ମୋତେ ବିବାହ କରିଥିଲେ । ତୁ ଯେତେବେଳେ ମୋ ଗର୍ଭରେ ଦୁଇମାସର ହୋଇଥିଲୁ ସେ କର୍ତ୍ତବ୍ୟର ଆହ୍ୱାନ ପାଇ ଏ ଅଗ୍ରଗିରିକୁ ଛାଡ଼ି ଚାଲି ଯାଇଥିଲେ । ଗଲାବେଳେ କହିଯାଇଥିଲେ, "ପୁଅ ହେଲେ ତୁମ ନାମ ଓ ମୋ ନାମକୁ ମିଶାଇ ପୁଅର ନାମ ଦେବ ।" ସେଥିପାଇଁ ତୋ ନାମ ନାଗାର୍ଜୁନ ବୋଲି ମୁଁ ଦେଇଥିଲି । ଆଉ ପୁଣି ଗଲାବେଳେ ନିଜ ରକ୍ତରେ ଏ ଅର୍ଜୁନ ବୃକ୍ଷଟିକୁ ସୃଷ୍ଟି କରି ଏହାକୁ ଅତି ଯତ୍ନରେ ପାଳିବାକୁ କହିଥିଲେ ଓ ଏ ବୃକ୍ଷ ଝାଉଁଳି ଗଲେ ତାଙ୍କ ବିପତ୍ତି ପଡ଼ିଲା ବୋଲି ଜାଣିବାକୁ କହିଯାଇଥିଲେ । ଏବେ ଏ ବୃକ୍ଷଟି ଝାଉଁଳି-ପଡ଼ି ସମ୍ପୂର୍ଣ୍ଣ ଶୁଷ୍କ ହୋଇଯାଇଛି । ତେଣୁ ତୋରି ହାତରେ ତାଙ୍କର ମୃତ୍ୟୁ ହୋଇଥିବାରେ ଆଜି କିଛି ସନ୍ଦେହ ନାହିଁ । ଏବେ ଚାଲି ସେଠାକୁ । ଦୈବ ଉପରେ କାହାର ହାତ ନାହିଁ । ମୁଁ ନିଶ୍ଚୟ ତାଙ୍କର ଚିତାନଳରେ ପ୍ରବେଶ କରିବି ।"

ମାତା ପୁତ୍ର ହର ଉଦ୍ୟାନରେ ପହଞ୍ଚି ଦେଖିଲେ ଅସଂଖ୍ୟ ସୈନ୍ୟରେ ଚତୁର୍ଦ୍ଦିଗ ପୂରିଯାଇଛି । ଶ୍ରୀକୃଷ୍ଣ ବଳରାମ ଇନ୍ଦ୍ର, ଯୁଧିଷ୍ଠିର ଆଦି ଗୃହଭାଇ, ଦୁର୍ଯ୍ୟୋଧନ ଆଦି କୌରବ, ସମସ୍ତେ ଏକତ୍ରିତ ହୋଇ ଅର୍ଜୁନ ହତ୍ୟାକାରୀକୁ ଖୋଜୁଛନ୍ତି । ଏହା ଦେଖି ସନ୍ଧ୍ୟାବଳୀ ଭୟରେ ନାଗାର୍ଜୁନକୁ ଶିବଙ୍କ ନିକଟକୁ ପଠାଇ ଦେଲେ ।

ଶିବ, ନାଗାର୍ଜୁନଠାରୁ ସମସ୍ତ ଘଟଣା ଶୁଣି ମହାକ୍ରୋଧରେ ଶିବଗଣଙ୍କୁ ସଙ୍ଗରେ ନେଇ ନିଜ ଉଦ୍ୟାନକୁ ବାହାରିଲେ । ଏକ ପକ୍ଷରେ ଭଗବାନ ଶଙ୍କର ଓ ଶିବଗଣ ଏବଂ ଅପର ପକ୍ଷରେ ଶ୍ରୀକୃଷ୍ଣ, ବଳରାମ, ଇନ୍ଦ୍ରାଦି ଦେବତା ଏବଂ ଅନ୍ୟ ସମସ୍ତେ ମିଶି ଭୀଷଣ ଯୁଦ୍ଧରେ ମାତିଗଲେ ।

ଏଣେ ସନ୍ଧ୍ୟାବଳୀ ଅର୍ଜ୍ଜୁନଙ୍କର ଶବକୁ କୋଳରେ ଧରି ଯେଉଁ କରୁଣ ବିଳାପ କଲା ତାହା ଦେଖିଲେ ପଥର ମଧ୍ୟ ତରଳି ଯିବ । ସେଠାରେ କାହା ଆଖିରେ ଆଉ ଲୁହ ରହିଲା ନାହିଁ । ସ୍ୱୟଂ ପୃଥ୍ୱିଷ୍ଟିର ଓ ଶ୍ରୀକୃଷ୍ଣ ମଧ୍ୟ ଯୁଦ୍ଧ ଛାଡ଼ି କାନ୍ଦି କାନ୍ଦି ଲୋଟିଗଲେ । ସମସ୍ତେ ଏପରି ଅଧୈର୍ଯ୍ୟ ହେଲେ ଯେ କୌଣସି ଉପାୟ ଚିନ୍ତା କରିବାକୁ ମଧ୍ୟ କାହାର ଶକ୍ତି ରହିଲା ନାହିଁ ।

ଯୁଦ୍ଧ କ୍ରମେ ଭୀଷଣରୁ ଭୀଷଣତର ହେବାକୁ ଲାଗିଲା । ଶ୍ରୀକୃଷ୍ଣଙ୍କର ମହାଦୁଃଖ, ପରେ ମହାକ୍ରୋଧରେ ପରିଣତ ହେଲା । ସେ ପୁନର୍ବାର ଯୁଦ୍ଧ କ୍ଷେତ୍ରରେ ଅବତୀର୍ଣ୍ଣ ହେଲେ ଏବଂ ଶତ୍ରୁପକ୍ଷ ଧ୍ୱଂସ କରିବାକୁ ଶେଷରେ ସୁଦର୍ଶନଚକ୍ର ଧାରଣ କଲେ । ଦେବର୍ଷି ନାରଦ ସେପର୍ଯ୍ୟନ୍ତ ଏ ବିରାଟ କଳିକୌତୁକକୁ ଆନନ୍ଦରେ ଉପଭୋଗ କରୁଥିଲେ । ମାତ୍ର ଶ୍ରୀକୃଷ୍ଣଙ୍କ ହାତରେ ସୁଦର୍ଶନଚକ୍ର ଦେଖି ଯୁଦ୍ଧର ଭୟାବହ ପରିଣତିକୁ ଅନୁମାନ କଲେ ଓ ସଙ୍ଗେ ସଙ୍ଗେ ବ୍ରହ୍ମାଙ୍କ ନିକଟକୁ ଧାଇଁଯାଇ ଏ ସମ୍ବାଦ ଦେଲେ । ବ୍ରହ୍ମା ଅବିଳମ୍ବେ ମରାଳ ବାହାନରେ ଆସି ଶ୍ରୀକୃଷ୍ଣ ଓ ମହାଦେବ, ଏ ଦୁହିଁଙ୍କ ମଝିରେ ଠିଆହୋଇଗଲେ । ବ୍ରହ୍ମାଙ୍କୁ ଦେଖି ଶ୍ରୀକୃଷ୍ଣଙ୍କର ଚକ୍ର ଓ ମହାଦେବଙ୍କର ତ୍ରିଶୂଳ ଅବନତ ହୋଇଗଲା । ମାତ୍ର ଶ୍ରୀକୃଷ୍ଣ ଜିଦ୍ ଧରିଲେ, ଅର୍ଜ୍ଜୁନ ନବଞ୍ଚିଲେ ସେ ସୁଦର୍ଶନ ଚକ୍ର ନିଶ୍ଚୟ ପ୍ରୟୋଗ କରି ଶତ୍ରୁ ପକ୍ଷକୁ ଧ୍ୱଂସ କରିବେ ଓ ଶେଷରେ ଅର୍ଜ୍ଜୁନଙ୍କର ଅନୁଗାମୀ ହେବେ । ମହାଦେବ କହିଲେ, "ହେ ଶ୍ରୀକୃଷ୍ଣ, ମୋତେ ଶିବପଦରେ ଅଧିଷ୍ଠିତ କରି ପୁଣି ମୋର ଶିବ ପଦର ଅବମାନନା କରାଯାଉଛି । ଏହା ଉଚିତ ନୁହେଁ । ଅର୍ଜ୍ଜୁନ, ପାବଂଶି ପାଳିତ ଗଣ୍ଡା ବଧ କରି ଘୋର ଅନ୍ୟାୟ କଲା ଓ ତାର ପ୍ରତିଫଳ ପାଇଲା ।" ମାତ୍ର ଶ୍ରୀକୃଷ୍ଣ, ଅର୍ଜ୍ଜୁନଙ୍କର ଜୀବନ ବ୍ୟତିରେକେ ଅନ୍ୟ କୌଣସି କଥାରେ ଶାନ୍ତ ହେବେ ନାହିଁ ବୋଲି ସ୍ପଷ୍ଟ କହିଦେଲେ ।

ଶେଷରେ ବ୍ରହ୍ମା, ଯମଦେବତାଙ୍କୁ ସ୍ମରଣ କଲେ । ଯମଦେବତା ଆସି ପହଞ୍ଚିବାରୁ ବ୍ରହ୍ମା ତାଙ୍କୁ ପରିସ୍ଥିତି ବୁଝାଇ କହିଲେ, "ହେ ଜନ୍ତୁନାଥ, ହରିହରଙ୍କର ସଂଗ୍ରାମରେ ଏ ବିଶ୍ୱ ଧ୍ୱଂସ ହେବ । ପୁଣି ଅର୍ଜ୍ଜୁନ ମହା

ପଟ୍ରେପକାଶୀ । ପୃଥିବୀର ଭାରନିବାରଣ ପାଇଁ ତାର ଜନ୍ମ । ସେହି ଦେବକାର୍ଯ୍ୟ ଏପର୍ଯ୍ୟନ୍ତ ସମ୍ପୂର୍ଣ୍ଣ ହୋଇନାହିଁ । ତେଣୁ ଅର୍ଜୁନର ଆତ୍ମାକୁ ତୁମେ ମୁକ୍ତିଦିଅ । ତୁମର ଅନୁଗ୍ରହରେ ସେ ବଞ୍ଚିଉଠୁ ।"

ଯମଦେବ ଏହି ସୁଯୋଗ ଅପେକ୍ଷାରେ ଥିଲେ । ସେ ବ୍ରହ୍ମାଙ୍କୁ ସହିତ ହାତଯୋଡ଼ି କହିଲେ, "ହେ ପିତାମହ, ମୋର ଦୁଃଖ କି ଆପଣଙ୍କୁ ଅଗୋଚର ? ବିମାତାର ଶାପରୁ ମୋର ଶରୀରରେ ଗଳିତ କୁଷ୍ଠ ବ୍ୟାଧି ହୋଇଯାଇଛି । ସତ୍ୟ, ତ୍ରେତା, ଦ୍ୱାପର ତିନି ଯୁଗଧରି ସେହି ଦୁରାରୋଗ୍ୟ ବ୍ୟାଧିର ଯନ୍ତ୍ରଣା ମୁଁ ଭୋଗୁଛି । ଏ କଷଣରୁ ସ୍ୱୟଂ ମହାଦେବ ମୋତେ ଉଦ୍ଧାର କରିପାରିବେ ।"

ବ୍ରହ୍ମାଙ୍କ ଅନୁରୋଧରେ ମହାଦେବ ନିଜର ଶ୍ରୀଚରଣ, ଯମଦେବତାଙ୍କ ଶରୀରରେ ସ୍ପର୍ଶ କରାଇଲେ । ସଙ୍ଗେ ସଙ୍ଗେ ତିନିଯୁଗର ବ୍ୟାଧି ସମ୍ପୂର୍ଣ୍ଣ ଆରୋଗ୍ୟ ହୋଇଗଲା । ଯମଦେବତା ଅତ୍ୟନ୍ତ ଆନନ୍ଦିତ ହୋଇ ଅର୍ଜୁନଙ୍କୁ ଜୀବଦାନ ଦେଲେ । ଅର୍ଜୁନ ନିଦ୍ରାରୁ ଉଠିଲାପରି ଝାଡ଼ିଝୁଡ଼ିହୋଇ ଉଠିବାରୁ ସମସ୍ତେ ଆନନ୍ଦରେ ନାଚି ଉଠିଲେ । ପରେ ପରେ ଯମ ଦେବତା ପାଣ୍ଡବଙ୍କର ପାଳିତ ଗଣ୍ଡାକୁ ମଧ୍ୟ ଜୀବଦାନ ଦେଇ ନିଜପୁରକୁ ଫେରିଗଲେ । ମହାଦେବ, ନାଗାର୍ଜୁନକୁ ଆଣି ଅର୍ଜୁନଙ୍କର କୋଳରେ ଦେଲେ । ଅର୍ଜୁନ ସମସ୍ତ ବିଷୟ ଶୁଣି ଅତି ଆନନ୍ଦରେ ପୁତ୍ରର ମୁଖ ଚୁମ୍ବନ କଲେ ଓ କହିଲେ, "ବାବୁରେ, ଯାହାହେଉ, ମୁଁ ଯେ ତୋରଠାରୁ ପରାଜୟ ଲାଭକଲି, ଏହା ମୋ ପକ୍ଷରେ ଗୌରବର ବିଷୟ । ପୁତ୍ରଠାରୁ ପିତା ସବୁବେଳେ ପରାଜୟ ହିଁ ଆଶା କରିଥାଏ । ସନ୍ଧ୍ୟାବଳୀଙ୍କୁ ଚାହିଁ କହିଲେ "ଦେବୀ, ଏପରି ପୁତ୍ରର ଜନନୀ ହୋଇଥିବାରୁ ତୁମେ ପରମ ଭାଗ୍ୟବତୀ । ପ୍ରଭୁ ଶ୍ରୀକୃଷ୍ଣଙ୍କର ଅନୁଗ୍ରହରୁ ମୁଁ ପ୍ରାଣ ପାଇ ତୁମମାନଙ୍କ ସହିତ ମିଳିତ ହେଲି ! ତାଙ୍କୁ କେଉଁ ଭାବରେ ବା କୃତଜ୍ଞତା ଜଣାଇବି ? ଦାସ ଅର୍ଜୁନର ଶରୀର, ମନ, ପ୍ରାଣ ସବୁ ଯେ ତାଙ୍କର ।" ତାପରେ ଶ୍ରୀକୃଷ୍ଣଙ୍କୁ ଚାହିଁ କହିଲେ, "ହେ ପ୍ରଭୁ ପାଣ୍ଡବ ରକ୍ଷାକାରୀ, କିଙ୍କର ଅର୍ଜୁନ ପାଦପଦ୍ମରେ ପ୍ରଣତି ନିବେଦନ କରୁଛି ।" ଏହା କହି ଶ୍ରୀକୃଷ୍ଣଙ୍କ ପଦତଳେ ଲମ୍ବିହୋଇ ପଡ଼ିଗଲେ । ଶ୍ରୀକୃଷ୍ଣ ତାଙ୍କୁ ସଙ୍ଗେ ସଙ୍ଗେ ତତ୍କ୍ଷଣ ଉଠାଇ ଦୃଢ଼ ଆଲିଙ୍ଗନ ପାଶରେ ଆବଦ୍ଧ କରିପକାଇଲେ । ଦୁହିଁଙ୍କ ଚକ୍ଷୁରୁ ଆନନ୍ଦାଶ୍ରୁ ଝରିଯାଉଥିଲା ।

# ପାଣ୍ଡବ ବନବାସ

କୌରବ ଓ ପାଣ୍ଡବମାନେ ମିଳମିଶି କଚ୍ଛନ୍ଦନ ଆନନ୍ଦରେ ଚଳଲେ । ମାତ୍ର ଏହା ଶକୁନିକୁ ଭଲ ଲାଗୁ ନଥାଏ । ସେମାନଙ୍କ ମଧ୍ୟରେ ପୁଣି କୌଣସି ପ୍ରକାରେ ବିଭେଦ ସୃଷ୍ଟି କରିଦେବାକୁ ସେ ସୁଯୋଗ ଖୋଜୁଥାଏ ।

ଥରେ ଦେବତାମାନେ ମେରୁପର୍ବତରେ ବିଜେ କରିଥିବା ସମୟରେ ବସୁଧାମାତା ଆସି ବ୍ରହ୍ମାଙ୍କ ନିକଟରେ ଗୁହାରି କଲେ ଯେ କୀଚକ ଓ ତାର ଶହେ ଭାଇଙ୍କର ଭାର ସେ ସହ୍ୟ କରିପାରୁନାହାନ୍ତି । ସେମାନେ ଦର୍ପରେ ଚାଲିଲେ ତାଙ୍କ ମୁହଁରୁ ରୁଧିର ବହୁଛି । ତେଣୁ ଏହାର କିଛି ପ୍ରତିକାର କରାଯାଉ । ବ୍ରହ୍ମା ଖଳ ଓ ଦୁର୍ବଳ ଦୁଇ ଦେବଦୂତଙ୍କୁ ଡାକି ଆଦେଶ ଦେଲେ ଯେ ଜଣେ ଯୁଧିଷ୍ଠିରଙ୍କ ଶରୀରରେ ଆଉ ଜଣେ ଦୁର୍ଯ୍ୟୋଧନ ଶରୀରରେ ପ୍ରବେଶ କରି ଉଭୟଙ୍କୁ ପୁଣି ପଶାଖେଳରେ ପ୍ରବୃତ୍ତ କରାନ୍ତୁ ଓ ଯୁଧିଷ୍ଠିରଙ୍କୁ ପୁଣି ହରାଇ ପାଣ୍ଡବମାନଙ୍କୁ ବନବାସୀ କରାନ୍ତୁ । ତାହାହେଲେ ଯାଇ କେବଳ ଭୀମ ହାତରେ କୀଚକ ଓ ତାର ଶହେ ଭାଇ ମରିବେ । ଦେବଦୂତ ଦୁଇଜଣ ସଙ୍ଗେ ସଙ୍ଗେ ବ୍ରହ୍ମାଙ୍କ ଆଦେଶ ପାଳନ କଲେ ।

ଦେବଦୂତ ଶରୀରରେ ପ୍ରବେଶ କରିବାରୁ ଯୁଧିଷ୍ଠିରଙ୍କୁ ଉଚାଟ ଲାଗିଲା । ସେ ହସ୍ତିନା ଯାଇ ଧୃତରାଷ୍ଟ୍ର ଓ ଦୁର୍ଯ୍ୟୋଧନଙ୍କୁ ଭେଟିଲେ । ଦୁର୍ଯ୍ୟୋଧନ ତାଙ୍କୁ ସ୍ୱାଗତ ସମ୍ଭାଷଣ କରି ପାଖରେ ବସାଇ କଥାବାର୍ତ୍ତା ହେଉଥିବା ସମୟରେ ଶକୁନି ବେଳ କାଳ ଉଣ୍ଡି ପଶାପାଲି ଆଣି ଦୁହିଁଙ୍କ ମଝିରେ ଥୋଇଦେଲେ ।

ଯୁଧିଷ୍ଠିର ଓ ଦୁର୍ଯ୍ୟୋଧନଙ୍କ ମଧ୍ୟରେ ପୁଣି ପଶାଖେଳ ଆରମ୍ଭ ହେଲା । ଏତିକିବେଳେ ଯୁଧିଷ୍ଠିର କହିଲେ, "ମାମୁଁ, ଏ ପଶାକାଠିରେ

ଖେଳିବା ନାହିଁ । ଅନ୍ୟ ପଶାକାଠି ଆଣ ।” ଏହା କହୁ କହୁ ଅକସ୍ମାତ୍ ଦୁଇଟି ପଶାକାଠି ଆସି ଶୂନ୍ୟରୁ ପଡ଼ିଲା ବ୍ରହ୍ମାଙ୍କ ଆଦେଶରେ କଳି ଓ କାଳ ଦୁଇ ଦେବଦୂତ ପଶାକାଠି ହୋଇ ପଡ଼ିଲେ ।

ଏଥର ବାଜି ରହିଲା ଯେ ଖେଳରେ ଯିଏ ହାରିବ ସେ ବାରବର୍ଷ ବନବାସ ଓ ଏକବର୍ଷ ତେରଦିନ ଅଜ୍ଞାତ ବାସ କରିବ । ଅଜ୍ଞାତବାସ ଜଣା ପଡ଼ିଗଲେ ପୁଣି ବାରବର୍ଷ ବନବାସ କରିବ ।

ଖେଳ ଚାଲିଲା । ଏଥର ଖେଳରେ ମଧ୍ୟ ଯୁଧିଷ୍ଠିର ହାରିଲେ । କୌରବମାନଙ୍କର ମହା ଆନନ୍ଦ । ଯୁଧିଷ୍ଠିର ବନବାସ ଗଲେ ଆଉ ଭାଇମାନେ କି ଏଠାରେ ରହିବେ ? ସେମାନେ ମଧ୍ୟ ତାଙ୍କ ସଙ୍ଗରେ ଯିବେ । ଏଥର କୌରବମାନେ ନିଷ୍କଣ୍ଟକ ହୋଇ ରାଜ୍ୟଭୋଗ କରିବେ । ଏହା ଭାବି ଦୁର୍ଯୋଧନଙ୍କ ଗୋଡ଼ ଆନନ୍ଦରେ ତଳେ ଲାଗୁନଥାଏ ।

ଏଣେ ପାଣ୍ଡବମାନେ କର୍ମକୁ ଆଦରି ଦ୍ରୌପଦୀଙ୍କୁ ସଙ୍ଗରେ ଧରି ବନକୁ ବାହାରିଲେ । ସେମାନଙ୍କର ତପସ୍ୱୀ ବେଶକୁ ଦେଖି ପୁରଜନ ଓ ପ୍ରଜାମାନେ ଦୁଃଖରେ ଅଶ୍ରୁମୋଚନ କଲେ । ଯୁଧିଷ୍ଠିର ସମସ୍ତଙ୍କୁ କୋମଳ ବଚନ କହି ପ୍ରବୋଧନା ଦେଉଥାନ୍ତି । ଭୀମ କ୍ରୋଧରେ ଫାଟି ପଡୁଥାନ୍ତି । କୌରବ ଶହେ ଭାଇଙ୍କର ବେକ ନିଶ୍ଚୟ ମୋଡ଼ିବେ ବୋଲି ବାରମ୍ବାର ପ୍ରତିଜ୍ଞା କରୁଥାନ୍ତି । ଦୁଃଶାସନର ହାତକୁ ଉପାଡ଼ିବେ, ତାର ରକ୍ତରେ ପାଞ୍ଚାଳୀର ବେଣୀବନ୍ଧନ କରିବେ । ଦୁର୍ଯୋଧନ ଦ୍ରୌପଦୀଙ୍କର ଜାନୁ ଯୌବନ ଦେଖିବାକୁ ଚାହିଁଥିଲା । ଗଦା ପ୍ରହାର କରି ତାର ଜାନୁକୁ ଭାଙ୍ଗିବେ । ଏହିପରି କହି ଭୀମ ବାଟରେ ଦାନ୍ତ କଡ଼ମଡ଼ କରୁଥାନ୍ତି । ବନକୁ ଗଲାବେଳେ ସେ ନିଜର ଦୁଇ ବିପୁଳ ବାହୁକୁ ଠେକି ଠେକି ଗଲେ । ସେହି ଦୁଇ ବାହୁରେ ସେ କୌରବଙ୍କୁ ଧ୍ୱଂସ କରିବେ । ଯୁଧିଷ୍ଠିର ମୁହଁରେ ବସ୍ତ୍ର ଘୋଡ଼ାଇ କରି ଗଲେ । ବନବାସରୁ ଫେରି ସେ ଆଉ ହସ୍ତିନା ମୁଖ କଦାପି ଚାହିଁବେ ନାହିଁ । ଅର୍ଜ୍ଜୁନ ବାଲି ବିଞ୍ଚି ବିଞ୍ଚି ଗଲେ । ବନବାସରୁ ଫେରିବା ପରେ ଯୁଦ୍ଧବେଳେ ବାଲି ପରି ଅସଂଖ୍ୟ ଶରମାରି ସେ କୌରବ

ଧ୍ୱଂସ ବଳ କରିବେ । ନକୁଳ ପାଉଁଶ ଛୁଅଁ ଛୁଅଁ ଗଲେ । ବନବାସ ପରେ ଫେରି ହସ୍ତିନାକୁ ଜାଳି ପାଉଁଶ କରିବେ । ସହଦେବ ହସ୍ତିନାକୁ କେବଳ ଗୃହିଁ ଗୃହିଁ ଗଲେ । ବନବାସରୁ ଫେରିଲେ ହସ୍ତିନାନବର ଯୁଦ୍ଧରେ ଧ୍ୱଂସହେବ ! ହୁଏତ ଆଉ ଏ ସୁନ୍ଦର ନବରକୁ ଜୀବନରେ ଦେଖିବାର ସୁଯୋଗ ସେ ପାଇବେ ନାହିଁ ।

ପାଣ୍ଡବମାନେ ବନଗମନ କରିବା ପରେ କୌରବମାନେ ହସ୍ତିନାରେ ଅନେକଦିନ ପର୍ଯ୍ୟନ୍ତ ଆମୋଦ ପ୍ରମୋଦରେ ମାତିଲେ । ସ୍ୱପ୍ନରେ ମଧ୍ୟ ସେମାନେ ଭାବିଲେ ନାହିଁ ଯେ ସେମାନଙ୍କର କାଳ ପୂରିଆସୁଛି ।

